ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା ( ଓଡ଼ିଆ ) — ୩୦

# ଶ୍ରୀଗୀତଗୋବିନ୍ଦ

( ଜଗନ୍ନାଥ ମିଶ୍ର ବିରଚିତ ଓଡ଼ିଆ ପଦ୍ୟାନୁବାଦ )

ସମ୍ପାଦନା

**ଶ୍ରୀମତୀ ପ୍ରମିଳା ମିଶ୍ର**, ଏମ୍. ଏ.

ସମ୍ପାଦକା, ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି ନିର୍ଦ୍ଦେଶାଳୟ

ଓଡ଼ିଶା, ଭୁବନେଶ୍ୱର

ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା ( ଓଡ଼ିଆ ) —୩୨

# ଶ୍ରୀଗୀତଗୋବିନ୍ଦ

( ଜଗନ୍ନାଥ ମିଶ୍ର ବିରଚିତ ଓଡ଼ିଆ ଗଦ୍ୟାନୁବାଦ )

ସମ୍ପାଦନା

ଶ୍ରୀମତୀ ପ୍ରମିଳା ମିଶ୍ର, ଏମ୍. ଏ.

ସମ୍ପାଦିକା, ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି ନିର୍ଦ୍ଦେଶାଳୟ

ଓଡ଼ିଶା, ଭୁବନେଶ୍ୱର

ରାଜ୍ୟ ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି (ସଂସ୍କୃତି)
ନିର୍ଦ୍ଦେଶାଳୟ ଦ୍ୱାରା ପ୍ରକାଶିତ ।

ପ୍ରଥମ ସଂସ୍କରଣ—୧୦୦୦
୧୯୮୩ ମସିହା

ମଦନମୋହନ ପ୍ରିଣ୍ଟିଂ ପ୍ରେସ୍
ଟାଙ୍ଗି, କୋଟସାହି, କଟକରେ ମୁଦ୍ରିତ

ମୂଲ୍ୟ—

Orissan Oriental Text Series (Oriya)—30

ORIYA PROSE COMMENTARY

OF

# SRIGITAGOVINDA

BY

JAGANNATHA MISHRA

*Edited By*

**SMT. PRAMILA MISHRA,** M.A.
EDITOR, DIRECTORATE OF TOURISM
SPORTS & CULTURE, ORISSA, BHUBANESWAR.

# ସୂଚନା

ଶ୍ରୀ ଜୟଦେବଙ୍କ ଗୀତଗୋବିନ୍ଦର ବୈଷ୍ଣବୀୟ ଭାବ ସମ୍ବଳିତ ଅଲୌକିକ ଶୃଙ୍ଗାର ରସ, ଗାୟନ କଳାକୌଶଳ, ସ୍ୱଳଳିତ ପଦ ବିନ୍ୟାସ ତଥା ଅନୁପମ ଛନ୍ଦ ମାଧୁରୀ ସାରା ଜଗତରେ ଅଗଣିତ ରସିକ ବିଦ୍ୱାନ୍ ଓ କବି କୋବିଦମାନଙ୍କୁ ମୁଗ୍ଧ ଓ ଅନୁପ୍ରାଣିତ କରିଥିଲା । ଫଳରେ ଅଶେଷ ଜନକଣ୍ଠରେ ନାନାଭାବରେ ନାନା ସ୍ଥଳରେ ଏବଂ ନାନା କାଳରେ ଏହା ଗୀତ ହେବା ସଙ୍ଗେ ସଙ୍ଗେ ପ୍ରଣୀତ ହେବାର ଅଳ୍ପକାଳ ପରଠାରୁ ବୈଷ୍ଣବ ଭକ୍ତ କବିଗଣ ଏକାନ୍ତ ଉଦ୍‌ବୁଦ୍ଧ ହୋଇ ଗୀତ-ଗୋବିନ୍ଦର ଅନୁରୂପ କାବ୍ୟ ରଚନାରେ ପ୍ରୟାସୀ ହୋଇ ଆସିଛନ୍ତି । ବିଭିନ୍ନ ଭାରତୀୟ ତଥା ବୈଦେଶିକ ଭାଷାରେ ତାର ଅସଂଖ୍ୟ ଟୀକା, ଅନୁବାଦାଦି ରଚିତ ହୋଇଅଛି । କେବଳ ସଂସ୍କୃତ ଭାଷାରେ ଓଡ଼ିଶା ଓ ଓଡ଼ିଶା ବାହାରେ ଏ ପର୍ଯ୍ୟନ୍ତ ପଚାଶ ଖଣ୍ଡରୁ ଅଧିକ ଟୀକା ମିଳିଥିବା ଜଣାଯାଏ । ଓଡ଼ିଶାରେ ଓଡ଼ିଆ ଭାଷାରେ ଭିନ୍ନ ଭିନ୍ନ ସମୟରେ ପଦ୍ୟ ଓ ଗଦ୍ୟରେ ବହୁ ଟୀକା ଓ ଅନୁବାଦ ପ୍ରଣୀତ ହୋଇଅଛି । ତନ୍ମଧ୍ୟରେ କବି ବୃନ୍ଦାବନ ଦାସ, ଧରଣୀଧର ଦାସ, ବଳରାମ ଦାସ, ମିଶ୍ରକବି ଶ୍ରୀଚନ୍ଦନ, ଶ୍ୟାମସୁନ୍ଦର ଭଞ୍ଜ, କୃଷ୍ଣ ଦାସ, ଉଦ୍ଧବ ଦାସ ପ୍ରଭୃତିଙ୍କର ତଥା କେତେକ ଅଜ୍ଞାତନାମା କବିଙ୍କର ମିଳିଥିବା ପଦ୍ୟାନୁବାଦ ଉଲ୍ଲେଖଯୋଗ୍ୟ । ଉକ୍ତ ଅନୁବାଦମାନ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ବିଶେଷ ପରିପୁଷ୍ଟ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ତୁଳନାତ୍ମକ ବିଶ୍ଳେଷଣ ଦ୍ୱାରା ମୂଳ ଗୀତଗୋବିନ୍ଦର ପ୍ରକୃତ ଶ୍ଳୋକ ସଂଖ୍ୟା ଓ ରାଗରାଗିଣୀ ପ୍ରଭୃତି ସମ୍ବନ୍ଧରେ ବିଶେଷ ତଥ୍ୟାବଳୀ ଉପଲବ୍ଧ ହୁଏ ।

ପଦ୍ୟାନୁବାଦ ବ୍ୟତୀତ ଖ୍ରୀଷ୍ଟୀୟ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ଗୀତଗୋବିନ୍ଦର ଯେଉଁ କେତୋଟି ଗଦ୍ୟାନୁବାଦ ବା ଟୀକାର ସନ୍ଧାନ ମିଳିଅଛି ତନ୍ମଧ୍ୟରେ ଟୀକାକାର ପଣ୍ଡିତ ଜଗନ୍ନାଥ ମିଶ୍ରଙ୍କର ଆଲୋଚ୍ୟ ଅନୁବାଦ ପ୍ରାଚୀନତମ ବୋଲି ଅଦ୍ୟାବଧି ଜଣାଯାଉଅଛି ।

## ଟୀକାକାର ପରିଚୟ—

ଜଗନ୍ନାଥ ମିଶ୍ରଙ୍କର ଜନ୍ମ ଓ ବଂଶ ପରିଚୟାଦି ସମ୍ବନ୍ଧରେ ଏ ପର୍ଯ୍ୟନ୍ତ କୌଣସି ବିବରଣୀ ଉପଲବ୍ଧ ହୋଇନାହିଁ । ପ୍ରାଚୀନ ଓଡ଼ିଶାର ସାରସ୍ୱତ ଇତିହାସ ଆଲୋଚନା କଲେ ଏକାଧିକ ପଣ୍ଡିତ, କବି ଏବଂ ଆଳଙ୍କାରିକ ଜଗନ୍ନାଥ ମିଶ୍ରଙ୍କର

ସନ୍ଧାନ ମିଳେ । ଆନୁମାନିକ ଖ୍ରୀଷ୍ଟୀୟ ପଞ୍ଚଦଶ ଶତକର ପ୍ରଥମାର୍ଦ୍ଧରେ ପ୍ରସିଦ୍ଧ ଧର୍ମଶାସ୍ତ୍ରବିତ୍ ବିଦ୍ୟାକର ବାଜପେୟୀଙ୍କର ପୁତ୍ର ଜଗନ୍ନାଥ ମିଶ୍ର ବାଜପେୟୀ ସଂସ୍କୃତଭାଷାରେ 'ଅଗ୍ନିଷ୍ଟୋମ ପଦ୍ଧତି' ଗ୍ରନ୍ଥ ପ୍ରଣୟନ କରିଥିବା ଜଣାଯାଏ । ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତକର ପ୍ରାରମ୍ଭରେ ଆଳଙ୍କାରିକ ଜଗନ୍ନାଥ ମିଶ୍ର ସଂସ୍କୃତରେ ବିଖ୍ୟାତ ଅଳଙ୍କାର ଗ୍ରନ୍ଥ 'ରସକଳ୍ପଦ୍ରୁମ' ରଚନା କରିଥିଲେ । କିନ୍ତୁ ଗୀତଗୋବିନ୍ଦର ପ୍ରସ୍ତୁତ ଟୀକା ଶେଷରେ ଟୀକାକାର ଜଗନ୍ନାଥ ତାଙ୍କର ରଚନା ପରିସମାପ୍ତିର ସମୟ ଉଲ୍ଲେଖ କରିଛନ୍ତି—

"ଶାକେ × × ବାଣେ ସନ୍ମୃଗେନ୍ଦ୍ରମାସେ
ଶୀତେ ଭାନୁତିଥୌ ଗ୍ରହେ

ଟୀକାକୃତଂ ଗୀତଗୋବିନ୍ଦଗୀତଂ
ଜଗନ୍ନିବାସେନ ଵିଲୋଖିତଂ ଵୈ ।"

ଏଥିରେ 'ଶାକେ' ପରେ ପ୍ରଥମ ଦୁଇଟି ଅକ୍ଷର ଅର୍ଥାତ୍ ଏକକ ଓ ଦଶକ ସ୍ଥାନର ସଂଖ୍ୟା ନଷ୍ଟ ହୋଇ ଯାଇଥିବାରୁ ୧୫୦୦ ଶକାବ୍ଦ ବା ୧୫୭୮ ଖ୍ରୀଷ୍ଟାବ୍ଦ ପରେ ଏହା ରଚିତ ହୋଇଥିବା ସ୍ପଷ୍ଟ । ଐତିହାସିକ ସ୍ୱର୍ଗତ କେଦାରନାଥ ମହାପାତ୍ର ମାସ ବାର ତିଥି ଇତ୍ୟାଦିର ଗଣନା ଅନୁସାରେ ଏହାର ସମୟ ୭-୮-୧୫୯୮ ଅଥବା ୨୮-୮-୧୬୫୩ ଖ୍ରୀଷ୍ଟାବ୍ଦ ବୋଲି ମତବ୍ୟକ୍ତ କରିଛନ୍ତି[୧] । ଏଥିରୁ ଆଲୋଚ୍ୟ ଟୀକାକାରଙ୍କର ଜନ୍ମ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ କିମ୍ବା ସପ୍ତଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ହୋଇଥିବା ସୁନିଶ୍ଚିତ ।

ପରବର୍ତ୍ତୀ ସମୟରେ ଉଦ୍ଧବ ଦାସ ନାମକ କୌଣସି ଜଣେ କବି ଜଗନ୍ନାଥ ମିଶ୍ରଙ୍କର ଗଦ୍ୟ ଟୀକା ଅବଲମ୍ବନରେ ଅତି ସରଳ ସୁବୋଧ ନବାକ୍ଷରୀ ବୃତ୍ତରେ ଗୀତଗୋବିନ୍ଦର ପଦ୍ୟାନୁବାଦ କରିଛନ୍ତି । ସେ ଟୀକାକାର ଜଗନ୍ନାଥ ମିଶ୍ରଙ୍କର ଶିଷ୍ୟ ଥିଲେ ଏବଂ ଗୁରୁଦେବଙ୍କର ମୃତ୍ୟୁପରେ ସ୍ୱପ୍ନାଦିଷ୍ଟ ହୋଇ ଉକ୍ତ ପଦ୍ୟାନୁବାଦକୁ ରଚନା କରିଥିବା କଥା 'ଅର୍ଥଗୋବିନ୍ଦ' ଶୀର୍ଷକ ସ୍ୱରଚିତ ଅନୁବାଦର ପୁଷ୍ପିକାରେ ଉଲ୍ଲେଖ କରିଛନ୍ତି—

× × ×

ଇତି ଶ୍ରୀ ଏ ଗୀତଗୋବିନ୍ଦ । ଦ୍ୱାଦଶ ସର୍ଗ ପରିବନ୍ଧ ॥
ସଂପୂର୍ଣ୍ଣ ଗୀତ ଅର୍ଥ ଏହି । ଅର୍ଥ ଗୋବିନ୍ଦ ଏ ବୋଲାଇ ॥

---

୧. ଶ୍ରୀ ଜୟଦେବ ଓ ଗୀତଗୋବିନ୍ଦ—୧୭୬ ପୃଷ୍ଠା

ମୂର୍ଖ ନିନ୍ଦିବ ଏହା କହି । ସୁଜନେ ନ ହସିବ କେହି ॥
ହାସ୍ୟ ନ କରିବ ପଣ୍ଡିତେ । ଶୁଣିବ ମୂର୍ଖ ଅନ୍ଧ ଚିତେ ॥
ଏଥକୁ ଭର୍ତ୍ସନ ମୁଁ ନୋହି । ଯେଣୁ ଗୁରୁଙ୍କ ଆଜ୍ଞା ହୋଇ ॥
ଶ୍ରୀ ଜଗନ୍ନାଥ ମିଶ୍ର ଆସି । ନେତ୍ରେ ମୋହର ମାନସେ ବସି ॥
ବୋଇଲେ ଶୁଣ ମୋର ପୁତ୍ର । ଜୟଦେବର କର ଅର୍ଥ ॥
ମୁଁ ଅର୍ଥ କରିଅଛି ଯାହା । ତୁ ଗୀତ କରି କର ତାହା ॥
ତେଣୁ ମୁଁ ଏଥେ ମନ ଦେଲି । ଶ୍ରୀ ଜୟଦେବ ଅର୍ଥ କଲି ॥
ଏହା ଜାଣିବା ମାତ୍ର ଜନେ । ମୁଁ କି ଜାଣଇ ଅଳ୍ପ ଜ୍ଞାନେ ॥
ମୋହର ଗୁରୁଦେବ ଥିଲେ । ଦ୍ୱାଦଶ ସ୍କନ୍ଧ ଅର୍ଥ କଲେ ॥
ମୁଁ ପୁତ୍ର ହୋଇଲି ଭାଜନ । କମାର କୂଳେ ମୋର ଜନ୍ମ ॥
ପାଠ ପଠନ ମୋର ନାହିଁ । ସ୍ୱଭାବେ ମୂର୍ଖଜନ ମୁହିଁ ॥"[୧]

କବିଙ୍କର ଉକ୍ତ ସ୍ୱୀକାରୋକ୍ତିରୁ ତାଙ୍କର ଗୁରୁ ଜଗନ୍ନାଥ ମିଶ୍ର ଗୀତଗୋବିନ୍ଦର ଆଲୋଚ୍ୟ ଗଦ୍ୟାନୁବାଦ ପ୍ରଣେତା ଏବଂ ଏହା ବ୍ୟତୀତ ସେ ଦ୍ୱାଦଶସ୍କନ୍ଧ ଭାଗବତ ମଧ୍ୟ ଅନୁବାଦ କରିଥିଲେ ବୋଲି ସ୍ପଷ୍ଟ ଜଣାଯାଏ ।

## ଓଡ଼ିଆ ଗଦ୍ୟ ଓ ଗୀତ ଗୋବିନ୍ଦ ଟୀକା—

ଅଷ୍ଟମ ଶତାବ୍ଦୀ ପରେ ଅର୍ଥାତ୍ ସିଦ୍ଧ ଓ ନାଥ ସାହିତ୍ୟ ପରେ ପରେ ଓଡ଼ିଆ ଗଦ୍ୟ ସାହିତ୍ୟର ବିକାଶ ବିଶେଷ ଭାବରେ ପରିଲକ୍ଷିତ ହୁଏ । ଦଶମ ଏକାଦଶ ଶତାବ୍ଦୀରେ ଖୋଦିତ ଅଭିଲେଖମାନଙ୍କରେ ମିଳୁଥିବା ଓଡ଼ିଆ ଗଦ୍ୟାଂଶ ବ୍ୟତୀତ ଖ୍ରୀଷ୍ଟୀୟ ଦ୍ୱାଦଶ ତ୍ରୟୋଦଶ ଶତାବ୍ଦୀରେ ରଚିତ ଶିଶୁବେଦ ଅନ୍ତର୍ଗତ ଗଦ୍ୟଭାଗ, ଗୁଣିଗାରେଡ଼ି, ଝିଙ୍କାଫୁଙ୍କା ପ୍ରଭୃତିର ରଚନାଶୈଳୀ ଓ ପ୍ରଚଳିତ ଲୋକଗଳ୍ପ ଇତ୍ୟାଦିରେ ବ୍ୟବହୃତ ଭାଷା- ବିଷୟବସ୍ତୁ ତଥା ରଚନାଶୈଳୀ ପଞ୍ଚଦଶ ଶତାବ୍ଦୀର ଶେଷାର୍ଦ୍ଧରୁ ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧ ମଧ୍ୟରେ ପରିମାର୍ଜିତ ଏବଂ ରସପୂର୍ଣ୍ଣ ଭାଷାରେ ରଚିତ ଭୂକାଉଣା ବ୍ରହ୍ମଗୀତାଦି ଗଦ୍ୟକାବ୍ୟ ତଥା ପରବର୍ତ୍ତୀ ସମୟର ମାଦଳା ପାଞ୍ଜି ପ୍ରଭୃତି ରଚନା ଓଡ଼ିଆ ଗଦ୍ୟ ସାହିତ୍ୟର କ୍ରମବିକାଶରେ କେତୋଟି ଉଲ୍ଲେଖଯୋଗ୍ୟ ନିଦର୍ଶନ । ଏହାପରେ ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀ

---

୧. ରାଜ୍ୟ ସଂଗ୍ରହାଳୟସ୍ଥ ପୋଥି ବିଭାଗରେ ରକ୍ଷିତ ଥିବା OL/599 ନମ୍ବର ତାଳପତ୍ର ପୋଥିର ୨୩୦/୩୧ ପତ୍ରରୁ ଉଦ୍ଧୃତ ।

ମଧ୍ୟରେ ସଂକ୍ଷିପ୍ତ ତଥା ସରଳ ଭାଷାରେ ବର୍ଣ୍ଣିତ ଅନନ୍ତବ୍ରତ, ରବିନାରାୟଣବ୍ରତ, କୁକୁଟୀବ୍ରତ, ଗୁରୁବାର ବ୍ରତ ଓ ସୋମନାଥ ବ୍ରତ ପ୍ରଭୃତିର ବ୍ରତକଥା ସହ ଉନ୍ନତ କଳ୍ପନା ବିଳାସ, ବହୁ ପାଣ୍ଡିତ୍ୟଭରା ଏବଂ ମାଧୁର୍ଯ୍ୟାଦି ଗୁଣ ସଂପନ୍ନ ନାରାୟଣାନନ୍ଦ ଅବଧୂତସ୍ୱାମୀ କୃତ ରୁଦ୍ରସୁଧାନିଧି, ମହନ୍ତ ବିପ୍ର ସମ୍ପେଶ୍ୱରଙ୍କର ପ୍ରଣବବ୍ୟାହୃତି ଗୀତା, ବିଭିନ୍ନ ଅନୁବାଦକମାନଙ୍କ ଦ୍ୱାରା ଅନୂଦିତ ବତିଶସିଂହାସନ, ହିତୋପଦେଶ, ଶୁଦ୍ଧିଚନ୍ଦ୍ରିକା, ଶୁଦ୍ଧିଦୀପିକା, ଚମ୍ପୂକଚକଡ଼ା, ଶବର ଗୀତା ପ୍ରଭୃତି ରଚିତ ହୋଇ ଓଡ଼ିଆ ଗଦ୍ୟ ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରିଛି । ଭାଷା, ଭାବ, ଶୈଳୀ ପ୍ରଭୃତି ଦୃଷ୍ଟିରୁ ସେଗୁଡ଼ିକର ଉପାଦେୟତା ସଂପୂର୍ଣ୍ଣ ଗୁରୁତ୍ୱପୂର୍ଣ୍ଣ ।

ଖ୍ରୀଷ୍ଟୀୟ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ଗୀତଗୋବିନ୍ଦର ଗଦ୍ୟାନୁବାଦ କରିବାରେ ବହୁ ବ୍ୟକ୍ତି ପ୍ରୟାସ କରିଛନ୍ତି । ପଣ୍ଡିତ ଜଗନ୍ନାଥଙ୍କ ପରେ ଯେଉଁ କେତୋଟି ଗଦ୍ୟାନୁବାଦ ବା ଟୀକାର ସନ୍ଧାନ ମିଳିଅଛି ତନ୍ମଧ୍ୟରେ ବାଣୀଭୂଷଣ ଅନନ୍ତ ରଥ ଓ ପଣ୍ଡିତ ବାସୁଦେବ ମିଶ୍ରଙ୍କର ଅନୁବାଦ ଉଲ୍ଲେଖ-ଯୋଗ୍ୟ । 'ଗୀତଗୋବିନ୍ଦ ଟୀକା ସାର' ନାମକ ଆଉ ଏକ ଗଦ୍ୟାନୁବାଦରେ ଟୀକାକାରଙ୍କର ନାମ ଉଲ୍ଲେଖ ହୋଇନାହିଁ । ଏହାଛଡ଼ା ସଂଗ୍ରହାଳୟ ପୋଥି-ଭଣ୍ଡାରରେ ଗୀତଗୋବିନ୍ଦର ଆଉ କେତୋଟି ଅଜ୍ଞାତନାମା ଗଦ୍ୟାନୁବାଦର ତାଳପତ୍ର ପୋଥି ସଂରକ୍ଷିତ ହୋଇଅଛି । ଭାଷା ଓ ଉପସ୍ଥାପନ ଶୈଳୀ ଆଲୋଚନା କଲେ ସେଗୁଡ଼ିକ ସବୁ ଅଷ୍ଟାଦଶ ଶତାବ୍ଦୀର ପରବର୍ତ୍ତୀ ବୋଲି ମନେହୁଏ ନାହିଁ । ଓଡ଼ିଆ ଗଦ୍ୟ ସାହିତ୍ୟର ଇତିହାସରେ ଉକ୍ତ ଟୀକା ବା ଅନୁବାଦଗୁଡ଼ିକର ଭୂମିକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

ପଣ୍ଡିତ ଜଗନ୍ନାଥ ମିଶ୍ର ସମସ୍ତ ରସଲିପ୍‌ସୁ ଓଡ଼ିଆ ପ୍ରାଣକୁ କୃଷ୍ଣଲୀଳା-ରସରେ ଆପ୍ୟାୟିତ କରି ଆନନ୍ଦମୟ କରିବା ସଙ୍ଗେସଙ୍ଗେ ମୁକ୍ତିମାର୍ଗରେ ପରିଚାଳିତ କରିବା ନିମିତ୍ତ ଆଗ୍ରହୀ ହୋଇ ଗୀତଗୋବିନ୍ଦର କାନ୍ତକୋମଳ ପଦାବଳୀକୁ ସରଳ ସୁବୋଧ ଓଡ଼ିଆ ଗଦ୍ୟରେ ପ୍ରକାଶ କରିଛନ୍ତି ବୋଲି ଟୀକାର ପ୍ରାରମ୍ଭରେ ସଂସ୍କୃତ ଭାଷାରେ ରଚିତ ମଙ୍ଗଳାଚରଣରେ ଉଲ୍ଲେଖ କରିଛନ୍ତି । ଏଥିରେ ସେ ଗୀତ-ଗୋବିନ୍ଦର ନବ୍ୱେଟି ଚଉସ୍ତରିଗୋଟି ଶ୍ଳୋକର ବ୍ୟାଖ୍ୟା ପ୍ରସ୍ତୁତ କରିଥିଲେ ମଧ୍ୟ ଏକସ୍ତରିତମ ଶ୍ଳୋକ ଅର୍ଥାତ୍ "ରଚୟ କୁଚୟୋଃ ପତ୍ରଂ... ..."ର ବ୍ୟାଖ୍ୟା ପରେ "ଇତି ଶ୍ରୀ ଗୀତଗୋବିନ୍ଦମହାକାବ୍ୟେ କବିରାଜଜୟଦେବକୃତୌ ସ୍ୱାଧୀନଭର୍ତ୍ତୃକା-ବର୍ଣ୍ଣନେ ସୁପ୍ରୀତପୀତାମ୍ବରୋ ନାମ ଦ୍ୱାଦଶ ସର୍ଗଃ" ବୋଲି ଗୀତଗୋବିନ୍ଦର ସମାପ୍ତି ଉଲ୍ଲେଖ କରିବା ପରେ ଅନ୍ୟ ଦୁଇଟି ଶ୍ଳୋକର ଅନୁବାଦ ପ୍ରଦାନ କରିଛନ୍ତି ।

## ପ୍ରଥମ ସର୍ଗ

୧ । ମେଘୈର୍ମେଦୁରମମ୍ବରଂ···
୨ । ବାଗ୍‌ଦେବତା ଚରିତ
୩ । ଯଦି ହରିସ୍ମରଣେ···
୪ । ବାଚଃ ପଲ୍ଲବୟତ୍ୟ ··
୫ । ବେଦାନୁଦ୍ଧରତେ ଜଗନ୍ତି
୬ । ପଦ୍ମାପୟୋଧରତଟୀ
୭ । ବସନ୍ତେ ବାସନ୍ତୀକୁସୁମ···
୮ । ଦରବିଦଳିତମଲ୍ଲୀବଲ୍ଲି···
୯ । ଉନ୍ମୀଲନ୍ମଧୁଗନ୍ଧଲୁବ୍ଧ
୧୦ । ଅନେକନାରୀପରିରମ୍ଭ
୧୧ । ବିଶ୍ୱେଷାମନୁରଞ୍ଜନେନ
୧୨ । ଆଦ୍ୟୋଽଙ୍କବସଦ୍‌ଭୁଜଙ୍ଗ···

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ ସାମୋଦ ଦାମୋଦରେ ନାମ ପ୍ରଥମ ସର୍ଗଃ ।

## ଦ୍ୱିତୀୟ ସର୍ଗ

୧୩ । ବିହରତି ବନେ ରାଧା
୧୪ । ଗଣୟତି ଗୁଣଗ୍ରାମଂ ଭ୍ରାମଂ···
୧୫ । ହସ୍ତସ୍ରସ୍ତବିଳାସବଂଶ···
୧୬ । ଦୃଗ୍‌ବିଲୋକଃ ସ୍ତୋକସ୍ତବକ

ଇତି ଶ୍ରୀ ଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ ଅକ୍ଲେଶକେଶବୋ ନାମ ଦ୍ୱିତୀୟ ସର୍ଗଃ ।

## ତୃତୀୟ ସର୍ଗ

୧୭ । କଂସାରିରପି ସଂସାରବାସନା
୧୮ । କ୍ଷତସ୍ତସ୍ୟାମନୁମୃତ୍ୟ ··
୧୯ । ହୃଦି ବିସଲତାହାରୋ···
୨୦ । ପାଣୌ ମା କୁରୁ ··
୨୧ । ଭ୍ରୂଚାପେ ନିହିତଃ କଟାକ୍ଷ···
୨୨ । ତାନି ସ୍ପର୍ଶସୁଖାନି ତେ···
୨୩ । ଭ୍ରୂ ପଲ୍ଲବଂ ଧନୁରପାଙ୍ଗ

ଇତି ଶ୍ରୀ ଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ ବିରହିଣୀ ବର୍ଣ୍ଣନେ ମୁଗ୍ଧମଧୁସୂଦନୋ ନାମ ତୃତୀୟ ସର୍ଗଃ

## ଚତୁର୍ଥ ସର୍ଗ

୨୪ । ଯମୁନାତୀରବାନୀରନିକୁଞ୍ଜେ···
୨୫ । ଆବାସୋ ବିପିନାୟତେ···
୨୬ । ସ୍ମରାତୁରାଂ ଦୈବତବୈଦ୍ୟ···
୨୭ । କନ୍ଦର୍ପଜ୍ୱରସଂଜ୍ୱରାକୁଳ···
୨୮ । କ୍ଷଣମପି ବିରହଃ ପୁରା ନ···

ଇତି ଶ୍ରୀ ଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ ବିରହିଣୀ ବର୍ଣ୍ଣନେ ସ୍ନିଗ୍ଧମାଧବୋ ନାମ ଚତୁର୍ଥ ସର୍ଗଃ ।

## ପଞ୍ଚମ ସର୍ଗ

୨୯ । ଅହମିହ ନିବସାମି ଯାହି···
୩୦ । ପୂର୍ବଂ ଯତ୍ର ସମଂ ତ୍ୱୟା
୩୧ । ବିକିରତି ମୁହୁଃ ଶ୍ୱାସାନାଶା
୩୨ । ତ୍ୱଦ୍‌ବାମେନ ସମଂ
୩୩ । ଆଶ୍ଳେଷାଦନୁ ଚୁମ୍ବନାଦନୁ···
୩୪ । ସଭୟଚକିତଂ ବିନ୍ୟସ୍ୟନ୍ତୀଂ ··

ଇତି ଶ୍ରୀ ଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ ଅଭିସାରିକା ବର୍ଣ୍ଣନେ ସାକାଂକ୍ଷପୁଣ୍ଡରୀକାକ୍ଷୋ ନାମ ପଞ୍ଚମ ସର୍ଗଃ ।

## ଷଷ୍ଠ ସର୍ଗ



ଇତିଶ୍ରୀ ଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ ବାସକସଜ୍ଜା ବର୍ଣ୍ଣନେ ସୋତ୍କଣ୍ଠବୈକୁଣ୍ଠୋ ନାମ ଷଷ୍ଠ ସର୍ଗଃ ।

## ସପ୍ତମ ସର୍ଗ



ଇତିଶ୍ରୀ ଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ ବିପ୍ରଲବ୍‌ଧା ବର୍ଣ୍ଣନେ ନାଗରନାରାୟଣୋ ନାମ ସପ୍ତମ ସର୍ଗଃ ।

## ଅଷ୍ଟମ ସର୍ଗ



ଇତିଶ୍ରୀ ଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ ଖଣ୍ଡିତା ବର୍ଣ୍ଣନେ ବିଲକ୍ଷଲକ୍ଷ୍ମୀପତିର୍ନାମ ଅଷ୍ଟମ ସର୍ଗଃ ।

## ନବମ ସର୍ଗ



ଇତିଶ୍ରୀ ଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ କଳହାନ୍ତରିତା ବର୍ଣ୍ଣନେ ମନ୍ଦମୁକୁନ୍ଦୋ ନାମ ନବମସର୍ଗଃ

## ଦଶମ ସର୍ଗ



ଇତିଶ୍ରୀ ଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ ମାନିନୀ ବର୍ଣ୍ଣନେ ଚତୁର ଚତୁର୍ଭୁଜୋ ନାମ ଦଶମ ସର୍ଗଃ

## ଏକାଦଶ ସର୍ଗ



ଇତିଶ୍ରୀ ଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ ସାନନ୍ଦ ଗୋବିନ୍ଦୋ ନାମ ଏକାଦଶ ସର୍ଗଃ ।

## ଦ୍ୱାଦଶ ସର୍ଗ

୬୬ । ପତିବନ୍ତି ମୁଖୀବୃନ୍ଦେ...
୬୭ । ପ୍ରତ୍ୟୂଷେ ପୁଲକାଙ୍କୁରେଣ...
୬୮ । ଦୋର୍ଭ୍ୟାଂ ସଂଯମିତଃ...
୬୯ । ମାସାନ୍ତେ ରଭସେନ ସଂଗୁଳ
୭୦ । ତସ୍ୟାଃ ପାଟଳପାଣିଜାଙ୍କିତ...
୭୧ । ଉରପ୍ର କୁଚପ୍ରୋଃ ପନ...
ଇତିଶ୍ରୀ ଗୀତଗୋବିନ୍ଦେ ମହାକାବ୍ୟେ
ଜୟଦେବକୃତୌ ସ୍ୱାଧୀନଭର୍ତ୍ତୃକା ବର୍ଣ୍ଣନେ
ସୁପ୍ରୀତପୀତାମ୍ବରୋ ନାମ ଦ୍ୱାଦଶ ସର୍ଗଃ ।

'ଯଦ୍ ଗାନ୍ଧର୍ବକଳାସୁ......
ମାଧ୍ୱୀମାଧ୍ୱୀକଶଙ୍କା

ଏତଦ୍‌ବ୍ୟତୀତ ଚତୁର୍ଥ ସର୍ଗର ତୃତୀୟ ଶ୍ଳୋକ ପରେ 'ସା ରୋମାଞ୍ଚିତ ଶୀତ୍‌କାରଗତ ' ଶ୍ଳୋକଟି ଟୀକାରେ ଉଲ୍ଲେଖ କରିଥିଲେ ମଧ୍ୟ ତାହାର ବ୍ୟାଖ୍ୟା କରିନାହାନ୍ତି ।

ଗୀତଗୋବିନ୍ଦ ରଚନାର ମଧୁରଲାଳିତ୍ୟ, ଛନ୍ଦ ଓ ସ୍ୱର ସାଧାରଣମନକୁ ଆକୃଷ୍ଟ କରି ମଜ୍ଜାଇ ରଖୁଥିବାରୁ ଗୀତ ଓ ଶ୍ଳୋକର ପ୍ରକୃତ ଅର୍ଥ ନ ବୁଝି ମଧ୍ୟ ବହୁସ୍ଥଳରେ ତାହା ଗୀତ ହୁଏ । ପଦସମୂହର ବାସ୍ତବ ଅର୍ଥ ବୁଝି ସ୍ୱାଧୀନଭାବରେ ଟୀକା କରିବା ବଡ଼ କଷ୍ଟକର ହୋଇଥିଲେ ହେଁ ପଣ୍ଡିତ ଜଗନ୍ନାଥ ଅଧିକାଂଶ ଶ୍ଳୋକ ଓ ଗୀତର ଭାବକୁ ସର୍ବଜନବୋଧ କରିବାଲାଗି ସୁପ୍ରଚଳିତଭାବରେ ପଲ୍ଲବିତ କରି ତାହାର ବିଶଦାର୍ଥ ପ୍ରଦାନ କରିବାରେ ସମର୍ଥ ହୋଇଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ କେତୋଟି ମାତ୍ର ଏଠାରେ ଉଦ୍ଧାର କରଗଲା । ପ୍ରଥମ ସର୍ଗର "ଛଳୟସି ବିକ୍ରମଣେ ବଳିମଦ୍ଭୁତବାମନ " ଟୀକାର କେତେକାଂଶ—

"× × ହେ ଜଗଦୀଶ, ତ୍ରୈଲୋକ୍ୟ ବିକ୍ରମକାଳେ ତୁମ୍ଭେ ଅଦ୍ଭୁତ ବାମନ ରୂପଧରି ଚରଣପାତେ ତିନି ଭୁବନକୁ ଆଚ୍ଛାଦି ବଳିକି ଛଳିଲ । ସେ ବାମନ ରୂପ—ତୁମ୍ଭର ଯେମନ୍ତ ତାହା କହିବା । ଅତ୍ୟନ୍ତ ଖର୍ବ ଦ୍ୱାଦଶାଙ୍ଗୁଳ ପ୍ରମାଣ ଦେହ । ସେ ଦେହ ନାଭିପଦ୍ମରୁ ମାଡ଼ିଲେଗାକି ବାହାର ହୋଇଁ ପଞ୍ଚାଶ କୋଟି ଯୋଜନ ଯେ ପୃଥିବୀ ତାହାକୁ ଆବରଣ ଯେ ବ୍ରହ୍ମାଣ୍ଡ କହିଦ ତଦ୍ୱଂ ବାଜ ପ୍ରକୃତି ଭୁବନ ପର୍ଯ୍ୟନ୍ତ

ଗନ୍ଧ କଲ । ସେ ପ୍ରକୃତ ଭୁବନ ପର୍ଯ୍ୟନ୍ତ ଗନ୍ଧ କଲ । ସେ ପ୍ରକୃତ ଭୁବନ ଯେତେ ଅନ୍ତରେ ଅଛି ତାହା କହିବା । ଆଦୌ ସପ୍ତଦ୍ୱୀପାବଳୀ ପୃଥିବୀ । ତାହାଙ୍କୁ ଆବରଣୀ ଯେତେ ବିସ୍ତାର ତହିଁକି ଦଶଗୁଣ ପ୍ରମାଣେ ବେଢ଼ିଅଛି କାରୁଣ୍ୟ ଜଳ । ସେ ଜଳକୁ ଦଶଗୁଣ ପ୍ରମାଣେ ଆବୋରିଛି ପବନ । ପବନଙ୍କୁ ଦଶଗୁଣପ୍ରମାଣେ ଆବୋରିଛି ଗଗନ । ଗଗନକୁ ଦଶଗୁଣ ପ୍ରମାଣେ ଆବୋରିଛି ମନ । ମନକୁ ଦଶଗୁଣ ପ୍ରମାଣେ ଆବୋରିଛି ଅହଂକାର । ଅହଂକାରକୁ ଦଶଗୁଣ ପ୍ରମାଣେ ଆବୋରିଛି ମହତ୍ତତ୍ତ୍ୱ । ଏହାକୁ ବୁଦ୍ଧି ବୋଲି । ଏହି ବୁଦ୍ଧି ତତ୍ତ୍ୱକୁ ଦଶଗୁଣରେ ପ୍ରକୃତି । ଏତେଦୂର ପର୍ଯ୍ୟନ୍ତ କମ୍ପିଲ୍ ସେ ପାଦଘାତ ଶବ୍ଦେ । ଏଣୁକରି ଅଦ୍ଭୁତ ବୋଲି । × ×”

ନବମ ସର୍ଗର ପ୍ରଥମ ଗୀତ 'ହରିରଭିସରତି ମାନିନୀ ମାନମୟେ'ର କେତେକାଂଶ—“× × ହେ ସଖି, ତୁମ୍ଭେ ମାନିନୀ ହୋଇ ମାଧବ ଯେ ଲକ୍ଷ୍ମୀକାନ୍ତ ତାହାଙ୍କୁ ଅଭିମାନ ନ କର । ମାଧବେ କଂଭୂତେ । ସେ ମାଧବ କେମନ୍ତ ଅଟନ୍ତି । ମାନମୟେ । ପ୍ରଚୁରଂ ମାନଂ ଯସ୍ମିନ୍ ମାନମୟଃ । ତସ୍ମିନ୍ ମାନମୟେ । ହେ ସଖି ନାନା ଶାସ୍ତ୍ରମାର୍ଗେ କରି ଅଶେଷ ପ୍ରମାଣ ଯାହାକୁ କରି ଯେ ଯେମନ୍ତ ପ୍ରମାଣେ ବୋଧପାଇ ତାହାକୁ ସେହି ପ୍ରମାଣ ଅଟନ୍ତି । ସେହି ମାଧବ । ଏଣୁକରି ସେ ମାନମୟ । ତାହାଙ୍କ ବିଷୟେ ଅଭିମାନ ନ କର । × × × ହେ ସଖି ଦେଖ, ବହଇ ମଧୁର ପବନେ । ମଧୁ ପବନେ ଯେ ବସନ୍ତ ପବନ ସେ ବହୁଛି । ହେ ସଖି, ଅଥବା ମଧୁପବନ ଯେ ଅମୃତମୟଂ ପାଞ୍ଚପ୍ରକାର । ପ୍ରାଣ ଅପାନ ବ୍ୟାନ ଉଦାନ ସମାନ ଏ ପାଞ୍ଚପ୍ରାଣ ହୋଇଁ । ତୁମ୍ଭଙ୍କୁ କହୁଛନ୍ତି ସେ ହରି—ଏମନ୍ତ ପ୍ରାଣ ଥାଉଁ ତୁମ୍ଭେ ହରିଙ୍କି କିମ୍ପା ନ ଭଜ । ଏ ପବନ ନ ବହିଲେ ତୁମ୍ଭେ କ ଭଜ ପାରିବ ? ହେ ସଖି ତୁମ୍ଭେ ହରିଙ୍କି ବେଗେ ଭଜ । × × × ହେ ରାଧେ, ସଖୀ ଭବନେ ସଖୀନାଂ ଭବନେ କଂଭୂତେ । ଭୂତାପିନାଂ ଭବନେ ସ୍ଥାନେ । ଭୂମିରାପୋ ଅନଳୋ ବାୟୁରାକାଶ-ଶବ୍ଦସ୍ପର୍ଶ ରୂପରସଗନ୍ଧ ମନୋବୁଦ୍ଧ୍ୟହଂକାରଚିତ୍ତ ଦଶ ଇନ୍ଦ୍ରିୟ । ଏମାନଙ୍କର ଅଧିଷ୍ଠାନ ଦେବତା ଯେ ଦିକ୍ ପବନ ସୂର୍ଯ୍ୟ ବରୁଣ ଅଶ୍ୱିନୀ ବହ୍ନି ଦ୍ରୋପେନ୍ଦ୍ରମିତ୍ର ପ୍ରଜାପତି ଇତ୍ୟାଦି କରି ଏ ସଖୀମାନଙ୍କର ଭବନେ କି ଏ ଦେହମନ୍ଦିର ନାମ ଶରୀର । ଏଥି ହରି ବ୍ୟତିରେକେ ଆଉ କେ ସୁଖଅଛି । ଏଠାରେ ଅଧିକ ଯେ ସୁଖ କହିବା ସେ ଦୁଃଖ ଅଫଳଂ ମିଥ୍ୟାଭୂତଂ । ମିଥ୍ୟା ବୋଲି ।”

ଏତଦ୍‌ବ୍ୟତୀତ ଗୀତଗୋବିନ୍ଦର ପ୍ରଥମସର୍ଗରେ ଥିବା ବହୁ ଆଲୋଚିତ ତଥା ବିବଦମାନ ବାକ୍ୟାଂଶ 'ପଦ୍ମାବତୀଚରଣଚାରଣଚକ୍ରବର୍ତ୍ତୀ'ର ମଧ୍ୟ ଅର୍ଥ କରିବାକୁ ଯାଇ ସେ ସୁଚିନ୍ତିତ ଓ ଯଥାର୍ଥ ମତ ବ୍ୟକ୍ତ କରିଛନ୍ତି— “× × ପୁଣି ସେ ଜୟଦେବ କେମନ୍ତ ଅଟଇ । ପଦ୍ମାବତୀ ଚରଣଚାରଣ ଚକ୍ରବର୍ତ୍ତୀ—ଶ୍ରୀକାନ୍ତାସ୍ତୁ ପଦ୍ମାବତ୍ୟାଖ୍ୟାଚରଣନ୍ୟାସ୍ତାରଣେ ନାନାପ୍ରକାର ନର୍ତ୍ତନେ ଚକ୍ରବର୍ତ୍ତୀ । ଆପଣାର ପତ୍ନୀ

ଯେ ପଦ୍ମାବତୀ ତାହାଙ୍କୁ ବାସୁଦେବର ସନ୍ତୋଷଣାର୍ଥେ, ନାନା ପ୍ରକାରେ ନୃତ୍ୟ କରାଇବାରେ ଚକ୍ରବର୍ତ୍ତୀ ଅଟଇ । ଏଣୁ ଶୃଣୁତ । ଏ ପ୍ରବନ୍ଧ ଗ୍ରନ୍ଥ ଶୁଣ । ସକଳ ଦୁଃଖରୁ ତରିବ ।"

ଅଥଚ ପରବର୍ତ୍ତୀ ଗଦ୍ୟଟୀକାକାର ବାଣୀଭୂଷଣ ଅନନ୍ତରଥ ଉକ୍ତ ଶ୍ଳୋକର ଅର୍ଥ କରିବାକୁ ଯାଇ କୌଣସି ସିଦ୍ଧାନ୍ତରେ ପହଞ୍ଚିପାରିନାହାନ୍ତି ଏବଂ ଲେଖିଛନ୍ତି— "× × ବାଗ୍‌ଦେବତା ଯେ ସରସ୍ୱତୀ ତାହାଙ୍କର ଯେଉଁ ଚରିତ ଯେ ଶାସ୍ତ୍ର ତେଣେକରି ରଞ୍ଜିତ ହୋଇଅଛି ଚିତ୍ତସଦ୍ମ ଗୃହ ଯାହାଙ୍କର ଏବଂ ଭୂତା ଯେ ପଦ୍ମାବତୀ ଲକ୍ଷ୍ମୀ ତାହାଙ୍କର ଚରଣ ଯେ ପାଦପଦ୍ମ ତାହାର ଯେଉଁ ସ୍ମରଣ ଯେ ସେବା ତହିଁରେ ଚକ୍ରବର୍ତ୍ତୀ ଅଟନ୍ତି କ ଯୋଗ୍ୟ ଅଟନ୍ତି

ଅଥବା, ବାଗ୍ ଦେବତା ଯେ ଶ୍ରୀକୃଷ୍ଣ ତାହାଙ୍କର ଯେଉଁ ଚରିତ ଯେ ଗୁଣାନୁବାଦ ତେଣେକରି ବରିଜ ହୋଇଛି ଚିତ୍ତସଦ୍ମ ଯାହାଙ୍କର ଏବଂ ଭୂତ ଯେ ଶ୍ରୀରାଧା ପଦ୍ମାବତୀ ତାହାଙ୍କର ଯେଉଁ ପାଦପଦ୍ମ ସେବା ତେଣେ କରି ଚକ୍ରବର୍ତ୍ତୀ ହୋଇଅଛନ୍ତି ନୃତ୍ୟକାର ହୋଇଅଛନ୍ତି । × × "

ବାସୁଦେବ ମିଶ୍ର ବିରଚିତ ବାଳବୋଧିନୀ ଗଦ୍ୟ ଟୀକାରେ ମଧ୍ୟ ଉକ୍ତ ଶ୍ଳୋକାଂଶର ବ୍ୟାଖ୍ୟା ନିମ୍ନୋକ୍ତ ଭାବରେ ହୋଇଅଛି— "× × ପଦ୍ମାବତ୍ୟା-ଶ୍ଚରଣଚାରଣାଃ ଚରଣ ସେବକାଃ ତେଷାଂ ଚକ୍ରବର୍ତ୍ତୀ ମୁଖ୍ୟଃ । ପଦ୍ମାବତୀ ଯେ ଲକ୍ଷ୍ମୀ ତାହାଙ୍କର ଚରଣ ସେବକ ଯେ ତାହାଙ୍କ ମଧ୍ୟରେ ସେ ଜୟଦେବ କବି ମୁଖ୍ୟ ସେବକ ଅଟଇ ।"

କିନ୍ତୁ ଅଷ୍ଟାଦଶ ଶତାବ୍ଦୀରେ ଜଣେ ଅନାମଧେୟ ଟୀକାକାର ଜଗନ୍ନାଥ ମିଶ୍ରଙ୍କର ଉକ୍ତ ଟୀକାର ଅନୁରୂପ ଅର୍ଥ କରିବା ସଙ୍ଗେସଙ୍ଗେ ଏହି ଶ୍ଳୋକାଂଶକୁ ଅନୁବାଦ କରିବାକୁ ଯାଇ ଆହୁରି ସୁନ୍ଦର ରୀତିରେ ବିଶ୍ଳେଷଣ କରିଛନ୍ତି— "× × ପଦ୍ମାବତୀ ଯେ ଆପଣା ଭାର୍ଯ୍ୟା ତାହାଙ୍କର ପାଦ ଦୁହିଁଙ୍କର ଯେଉଁ ସ୍ମରଣ ଯେ ନୃତ୍ୟ ବିଶେଷ-ମାନେ ସେମାନଙ୍କର ଚକ୍ର ଯେ ସମୂହ ତାହାଙ୍କର ପ୍ରବର୍ତ୍ତକ ଅଟନ୍ତି । ଅଥବା ଚକ୍ରବର୍ତ୍ତୀ ବୋଇଲେ ନୃତ୍ୟଶିକ୍ଷା ବିଷୟରେ ସାର୍ବଭୌମ ପ୍ରାପ୍ତ ଅଟନ୍ତି । ଆପଣା ଭାର୍ଯ୍ୟାକୁ ନୃତ୍ୟ କରାଇବାର କେଣେ ହେଲୁ ଅବା ବୋଲିବ । ଶ୍ରୀ ଜୟଦେବଙ୍କୁ ଶ୍ରୀମୁଖ ଆଜ୍ଞା ଦେଇଅଛନ୍ତି, ତୁମେ ଯେତେ ଧର୍ମମାନଙ୍କୁ ମୋ ବିଷୟରେ କରୁଛ ସେ ସମସ୍ତ ଧର୍ମକୁ ଆପଣା ଭାର୍ଯ୍ୟା ସହିତରେ କର ବୋଲି ମୋ ଶ୍ରୀକୃଷ୍ଣ ଆଜ୍ଞା ଦେବାରୁ ପ୍ରତିଦିନ ପୂଜା ସ୍ଥାନରେ ଭାର୍ଯ୍ୟାଙ୍କ ତୁଲେ ସହିତ ହୋଇ କରନ୍ତି ।[୧]"

---

୧. ଆଲୋଚନା ଶ୍ରୀ ନୀଳମଣି ମିଶ୍ର ପୃ-୧୧୨ ।

ଭାବର ଶ୍ଳୀଳତା ବା ଗାମ୍ଭୀର୍ଯ୍ୟ ଅନେକାଂଶରେ ରଚନାର ପ୍ରକାଶଭଙ୍ଗୀ ଓ ପଦନିର୍ବାଚନ ଉପରେ ନିର୍ଭର କରୁଥିବାରୁ ଗୀତଗୋବିନ୍ଦର ବହୁ ଶୃଙ୍ଗାର-ରସାତ୍ମକ ଶ୍ଳୋକ ତଥା ଗୀତକୁ ଚଳନ୍ତି ଭାଷାରେ ଅନୁବାଦ କରିବାବେଳେ ଟୀକାକାର ମିଶ୍ର ତତ୍ସମ ପଦମାନ ବ୍ୟବହାର କରି ଅତି ସଂକ୍ଷିପ୍ତାକାରରେ ଉପସ୍ଥାପନ କରିଛନ୍ତି ।

ସର୍ବୋପରି ଜଣେ ସଫଳ ଅନୁବାଦକ ଭାବରେ ପଣ୍ଡିତ ଜଗନ୍ନାଥ ମିଶ୍ରଙ୍କ ଗଦ୍ୟ ଟୀକା ପ୍ରଥମ ଗଦ୍ୟାନୁବାଦ ଏବଂ ସାଧାରଣ ବୋଧଗମ୍ୟ ଭାଷାରେ ହୋଇଥିବା ଦୃଷ୍ଟିରୁ ଏହାର ବୈଶିଷ୍ଟ୍ୟ ଉଲ୍ଲେଖଯୋଗ୍ୟ ।

## ପାଣ୍ଡୁଲିପି ବିବରଣୀ—

ପ୍ରସ୍ତୁତ ସଂସ୍କରଣଟି ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥିଭଣ୍ଡାରରେ ସଂରକ୍ଷିତ cy/୧୨୪ ନମ୍ବର କାଗଜ ପ୍ରତିଲିପି ଉପରେ ମୁଖ୍ୟତଃ ପର୍ଯ୍ୟବସିତ । ସେଥିପାଇଁ ଏହାକୁ 'କ' ବୋଲି ନାମିତ କରାଯାଇଅଛି । ଏହାଛଡ଼ା ଉତ୍କଳ ବିଶ୍ୱବିଦ୍ୟାଳୟ ଗ୍ରନ୍ଥାଗାରସ୍ଥିତ ତାଳପତ୍ରପୋଥି ଭଣ୍ଡାରରେ ରକ୍ଷିତଥିବା L/141 ନମ୍ବର ତାଳପତ୍ର ପୋଥିର ସ୍ଥଳବିଶେଷରେ ପାଠୋଦ୍ଧାର କରାଯାଇଥିବାରୁ ଏହାକୁ 'ଖ' ପୋଥି ଭାବରେ ଉଲ୍ଲେଖ କରାଯାଇଛି ।

ଉଭୟ ପାଣ୍ଡୁଲିପିରେ ଟୀକା ଶେଷରେ କବିରାଜ ଜୟଦେବଙ୍କ ପିତାମାତାଙ୍କ ନାମ ସମ୍ବଳିତ ପୁଷ୍ପିକା ଓ ଟୀକା ରଚନାର ସମସ୍ତ ଖଣ୍ଡିତାକାରରେ ଲେଖାହେବା ପରେ ନିମ୍ନୋକ୍ତ ସ୍ତୁତି ବାଚକ ଶ୍ଳୋକ, ପୋଥି ନକଲର ସମୟ ତଥା ନକଲକାରଙ୍କ ନାମାଦିର ଉଲ୍ଲେଖ ଅଛି—

ମାୟାବିଭ୍ରମବିଗ୍ରହେଣ ହରିଣା ବୃନ୍ଦାବନେ ରାଧୟା
ଯା ଲୀଳା ପରିଭାବିତା ମିତନଦୀକୁଞ୍ଜେଽତିରମ୍ୟେ ରହଃ ।
ଧାତାନିର୍ମିତଦୁଃଖସିନ୍ଧୁ ସକଳଜନସ୍ୟୋଦ୍ଧରଣାର୍ଥଂ କୃତିନ୍
ଭୂୟାଦ୍ଧା ବିମଳାଃ ବିନାପ୍ୟ ମଳିନାଂ ସଂସାରିଣାଂ ଶ୍ରେୟସେ ।
ରାମଚନ୍ଦ୍ରସ୍ୟ ନୃପତେ ସ୍ୱର୍ଗପ୍ରାଙ୍କେ ଅର୍କବାସରେ ମାସି ଭାଦ୍ର
ଦ୍ୱିତୀୟାଂ ଅଲେଖି ପୁସ୍ତକଂ ମୟା ଲିଖିତଂ ଶ୍ରୀନିବାସାଭିଧମ୍ ॥

ଶ୍ରୀ ରାଧାକୃଷ୍ଣାଭ୍ୟାଂ ନମଃ । ହରେ ପାପାନ୍ ହରସି ।
ଏଥିରୁ 'କ' ପାଣ୍ଡୁଲିପି 'ଖ' ତାଳପତ୍ର ପୋଥିର ପ୍ରତିଲିପି ହୋଇଥିବା ମନେହୁଏ ।

## ସଂପାଦକୀୟ—

ଗୀତଗୋବିନ୍ଦର ବିଭିନ୍ନ ଟୀକା ଓ ଅନୁବାଦ ମଧ୍ୟରେ ପ୍ରାଚୀନତମ ଗଦ୍ୟାନୁବାଦ ଦୃଷ୍ଟିରୁ ପ୍ରସ୍ତୁତ ସଂସ୍କରଣର ସଂପାଦନା ଓ ପ୍ରକାଶନର ଆବଶ୍ୟକତା ଅନୁଭୂତ ହେଲା । ଏଥିରେ ପ୍ରଥମ ପରାମର୍ଶଦାତା ହେଲେ ରାଜ୍ୟସଂଗ୍ରହାଳୟ ପୋଥିବିଭାଗର ସଂରକ୍ଷକ ଶ୍ରୀଯୁକ୍ତ ନୀଳମଣି ମିଶ୍ର । ବିଭାଗୀୟ ନିର୍ଦ୍ଦେଶକଙ୍କର ସାମୟିକ ନିର୍ଦ୍ଦେଶାବଳୀ ବ୍ୟତୀତ ସଂପାଦନାର ବିଭିନ୍ନ ପର୍ଯ୍ୟାୟରେ ସହାୟତା କରିଛନ୍ତି ସହକର୍ମୀ ଡକ୍ଟର ଭଗବାନ ପଣ୍ଡା, ସହକାରୀ ସଂପାଦକ ଶ୍ରୀ ସୁରେଶ ଚନ୍ଦ୍ର ଜେନା ଓ ପ୍ରତିଲିପିକାର ଶ୍ରୀ ଭଗିରଥୀ ସାହୁ । ଅତି ଅଳ୍ପ ସମୟ ମଧ୍ୟରେ ସଂପାଦନା ଓ ମୁଦ୍ରଣ କାର୍ଯ୍ୟ ସଂପନ୍ନ ହୋଇଥିବାରୁ ଏଥିରେ ସାମାନ୍ୟ କେତେକ ତ୍ରୁଟି ରହିଯାଇଛି । ତଥାପି ପ୍ରକାଶନ ସଂସ୍ଥାର ଉଦ୍ଦିଷ୍ଟ ଆଭିମୁଖ୍ୟ ପୂରଣ କରିବାରେ ଏହି ପ୍ରକାଶନ ଯେ ନିଶ୍ଚିତ ସହାୟକ, ଏହା ଅନସ୍ୱୀକାର୍ଯ୍ୟ ।

ସ୍ୱାଃ **ପ୍ରମିଳା ମିଶ୍ର**

# ଶ୍ରୀଗୀତଗୋବିନ୍ଦ

## ( ଜଗନ୍ନାଥ ମିଶ୍ର ବିରଚିତ ଓଡ଼ିଆ ଗଦ୍ୟାନୁବାଦ )

**ଶ୍ରୀ ଗଣେଶାୟ ନମଃ**

ଅବିଘ୍ନମସ୍ତୁ

ଶ୍ଳୋକ

**ମେଘୈର୍ମେଦୁରମମ୍ବରଂ ବନଭୁବଃ ଶ୍ୟାମାସ୍ତମାଳଦ୍ରୁମୈ-**
**ର୍ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂ ରାଧେ ଗୃହଂ ପ୍ରାପୟ ।**
**ଇତ୍ଥଂ ନନ୍ଦନିଦେଶତଶ୍ଚଲିତୟୋଃ ପ୍ରତ୍ୟଧ୍ୱକୁଞ୍ଜଦ୍ରୁମଂ**
**ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃ କେଳୟଃ । ୧ ।**

ଲମ୍ବୋଦରପଦଯୁଗଳଂ ବୃନ୍ଦାରକବୃନ୍ଦବନ୍ଦିତଂ ବନ୍ଦେ ।
ଭକ୍ତଜନକଳ୍ପବଲ୍ଲୀଂ ଜୟଜଗଦମ୍ବାଂ ମମ ପ୍ରକାଶଗୁରୁମ୍ ॥

ଯା ଲୀଲା ଽଚରିତାବତା ଭଗବତା ବୃନ୍ଦାବନେ ରାଧୟା
ତତ୍କାମଜ୍ୱରଭୁଷ୍ଟକାନ୍ତକରଣେ ଯାଂ ସୁଧାପୂର୍ଣ୍ଣୟା ।
ଧାରାକାର୍ଣ୍ଣିକିବାଂଶସ୍ୱିନ୍ନଜଳଲମ୍ବୋତ୍ତରଣୋଽଂ ଝଟିତ୍ ।
ଭୂୟାଯା ବିମଲାଂବନାୟ ମନସାଂ ସଂସାରିଣାଂ ସର୍ବଦା ॥

ଶ୍ରୀମଦ୍‌ବିପ୍ରଜଗନ୍ନିବାସରଚିତା ଟୀକାଟବର୍ଗପ୍ରଦା ।
ନତ୍ୱା ନର୍ମକଳାବିଳାସବିଷୟଂ ରାଧାରମାନାଥୟୋଃ ॥

ଶ୍ରୀମଦ୍ ଚନ୍ଦ୍ରସୂତାଳତାସୁ ଚ ରହୋ ବୃନ୍ଦାଽଟବୀରମ୍ୟ ବନେ
ଟେକ୍ଷା ସସ୍ମିତମୋଚନା ଭଗବତ୍ତ ଶ୍ରୀ ଗୀତଗୋବିନ୍ଦତଃ ॥

ଅଥ ଶ୍ରୀ ଜୟଦେବଟୀକା ଭାଷାପ୍ରବନ୍ଧେନ ଲିଖ୍ୟତେ । ତତ୍ରାଦୌ ଆଭଙ୍ଗ ଦ୍ୟାବନେବ ଶ୍ଳୋକାର୍ଥଂ ସୂଚୟନ୍ତି ।

ମେଘୈରିତି—ତତ୍ର ଏକସ୍ମିନ୍ ଦିବସେ ଗୋପନଗରାନ୍ନନ୍ଦୋଽପି[1] ଶ୍ରୀକୃଷ୍ଣେନ ସହ ବୃନ୍ଦାବନଂ ଗୋଚାରଣାର୍ଥଂ ଗତବାନ୍ କିୟଦ୍ଦୂରେ ଜଳାର୍ଥିନୀଂ ରାଧାଂ ଵୀକ୍ଷ୍ୟ ମାଧବୋଽପି ତାଂ ରନ୍ତୁକାମୋ ମେଘାହ୍ଵାନଂ ଚକ୍ରେ । ତତୋ ମାଧବପ୍ରେରିତା ମେଘା[2] ବିଦ୍ୟୁନ୍ମଣ୍ଡଳମଣ୍ଡିତାଃ ଗର୍ଜମାନାଃ ସନ୍ତୋଷଗମନେ[3] ମିଳିତାଃ ସ୍ଵଭାବତୋ ବେଳାବସାନେ ଯମୁନାତଟେ ତମାଳତରୁଗହନେନ ଭୂରନ୍ଧକାରା ଇବାସୀତ୍ । ତତୋ ଶଙ୍କାକୁଳୋ ନନ୍ଦସ୍ତାଂ ବେଗବତ୍ତୀଂ[4] ରାଧିକାମାହ-ହେ ରାଧେ, ପଶ୍ୟ ପଶ୍ୟ ।

ନନ୍ଦ ବୋଲୁଛନ୍ତି---ହେ ରାଧେ ! ଦେଖ, ଦେଖ । ମେଘେ କରି ଅମ୍ବର ଯେ ଆକାଶ ସେ ମେଦୁରଂ ଅତି ସ୍ନିଗ୍ଧ ହୋଇଂ ଢାଙ୍କି ହୋଇଲା । ଏଣେ ବନଭୂମିମାନେ ତମାଳଦ୍ରୁମୈଃ ଶ୍ୟାମାଃ ତମାଳ ବୃକ୍ଷମାନେ ଏ ମେଘ ସ୍ଵକାଶେ ଅତ୍ୟନ୍ତ ଶ୍ୟାମଳ କଳା ଦିଶିଲେ । ତେଣୁକରି ଏ ବନଭୂମିମାନେ ଅନ୍ଧକାର ପ୍ରାୟ ଦିଶିଲେ । ହେ ରାଧେ, ନକ୍ତଂ ଭୀରୁରୟଂ । ଅୟଂ ବାଳକୋ ନକ୍ତଂ ଭୀରୁଃ । ଏ ବାଳକ ରାତ୍ରିକୁ ବଡ଼ ଭୟ କରଇ । ତସ୍ମାତ୍ କାରଣାତ୍ ତ୍ଵମିମଂ ଗୃହଂ ପ୍ରାପୟ । ଏ କାରଣୁ ଏ ବାଳକକୁ ନେଇଁ ତୁମ୍ଭେ ଗୃହଂ ପ୍ରବେଶ କର । ଇତ୍ଥଂ ଅନେନ[5] ପ୍ରକାରେଣ ନନ୍ଦ-ନିଦେଶତଃ କୁଞ୍ଜଦ୍ରୁମଂ ପ୍ରତିମାର୍ଗେଣ ଚଳିତୟୋଃ ରାଧାମାଧବୟୋଃ । ଏ ପ୍ରକାରେ ନନ୍ଦର ଆଜ୍ଞା ପ୍ରମାଣେ କୃଷ୍ଣଙ୍କୁ ଘେନି ଯାଉଁଥିଲେ ସେ ରାଧା ସେ ପ୍ରତିମାର୍ଗେ କୁଞ୍ଜଲତା ଗୃହକୁ ଚଳିଗଲେ ଯେ ରାଧାମାଧବ ତାହାଙ୍କର ଯମୁନାକୂଳେ କୋଉଁ ହୋଇ ଯେତେ କେଳିମାନ ହୋଇଲେ ସେମାନେ ଜୟନ୍ତି ଜଗତକୁ ଜୟଯୁକ୍ତ କରନ୍ତୁ ।

**ବାଗ୍ଦେବତାଚରିତଚିତ୍ରିତଚିତ୍ତସଦ୍ମା**
**ପଦ୍ମାବତୀଚରଣଚାରଣଚକ୍ରବର୍ତ୍ତୀ ।**
**ଶ୍ରୀବାସୁଦେବରତିକେଳିକଥାସମେତ-**
**ମେତଂ କରୋତି ଜୟଦେବକବିଃ ପ୍ରବନ୍ଧମ୍ । ୨ ।**

କବି ବଦନ୍ତି-ହେ ବୈଷ୍ଣବା ଶୃଣୁତ---ଜୟଦେବ କବି ବୋଲୁଛନ୍ତି ହେ ବୈଷ୍ଣବମାନେ[6] ଶୁଣ, ଜୟଦେବନାମା କବିଃ ପ୍ରବନ୍ଧଂ କରୋତି । ଜୟଦେବ ନାମ ଯେ କବି ସେ ପ୍ରବନ୍ଧକୁ କରୁଛି । ପ୍ରବନ୍ଧଂ କିଂଭୂତଂ ସେ ପ୍ରବନ୍ଧ[7] କେମନ୍ତ ଅଟଇ । ଶ୍ରୀବାସୁଦେବରତିକେଳିକଥାସମେତଂ । ଶ୍ରୀ ଯେ ରାଧା ତାହାଙ୍କର ସଙ୍ଗତେ ବାସୁଦେବଙ୍କର ରତିକେଳି କଥା ତାହା ଘେନି କଲ୍ପିଲା କଥାକୁ ଗ୍ରନ୍ଥ

---

୧-ଙ. ନଗରାନ୍ନନ୍ଦୋଽପି
୨-କ. 'ମେଘା' ନାହିଁ
୩-ଖ. ସନ୍ତୋଷ ଗଗନେ
୪-ଖ. ଭରଗବନ୍ତୀଂ
୫-କ. ଅନେକ
୬-ଖ. ବୈଷ୍ଣବ ଜନମାନେ
୭-କ. ଜୟଦେବ କବି

କରୁଛି । ସ ଜୟଦେବକବି କିଂ ଭୂତଃ ? ସେ ଜୟଦେବ କବି କେମନ୍ତ ଅଟନ୍ତି । ବାଗ୍‌ଦେବତାଚରିତଚିତ୍ରିତଚିତ୍ତସଦ୍ମା । ସେ ଜୟଦେବର ଯେ ଚିତ୍ତ ସେହି ଯେ ଉତ୍ତମ ଘର ହେଲା । ସେ ଘର କାନ୍ଥମାନଙ୍କରେ ବାଗ୍‌ଦେବତା ଯେ ସରସ୍ୱତୀ ତାହାଙ୍କର ସକଳ ଚରିତ୍ର ଚିତ୍ରିତ ପ୍ରାଏ ଲେଖିଲା ହୋଇଛି । ଏଣୁକରି ମନକୁ ଧ୍ୟାନ କଲେ ସରସ୍ୱତୀର ସକଳ ବ୍ୟାପାର ଯାହାଙ୍କ ଦିଶଇ । ପୁଣି ସେ ଜୟଦେବ କେମନ୍ତ ଅଟନ୍ତି । ପଦ୍ମାବତୀଚରଣଚାରଣ ଚକ୍ରବର୍ତ୍ତୀ—ପଦ୍ମାନାମ୍ନୀ ପଦ୍ମାବତ୍ୟାଶ୍ଚରଣୟୋଶ୍ଚାରଣେ ନାନାପ୍ରକାରନର୍ତ୍ତନେ ଚକ୍ରବର୍ତ୍ତୀ । ଆପଣାର ପତ୍ନୀ ଯେ ପଦ୍ମାବତୀ ତାହାଙ୍କୁ ବାସୁଦେବର ସନ୍ତୋଷଣାର୍ଥେ ନାନାପ୍ରକାରେ ନୃତ୍ୟ କରାଇବାରେ ଚକ୍ରବର୍ତ୍ତୀ ଅଟନ୍ତି । ଏଣୁ ଶୃଣୁତ । ଏ ପ୍ରବନ୍ଧ ଗ୍ରନ୍ଥ ଶୁଣ । ସକଳ ଦୁଃଖରୁ ତରିବ ।

**ଯଦି ହରିସ୍ମରଣେ ସରସଂ ମନୋ ଯଦି ବିଳାସକଳାସୁ କୁତୂହଳଂ ।**
**ମଧୁରକୋମଳକାନ୍ତପଦାବଳୀଂ ଶୃଣୁ ତଦା ଜୟଦେବସରସ୍ୱତୀମ୍ । ୩ ।**

କବିର୍ବଦତି—ଜୟଦେବ କବି ବୋଲୁଅଛନ୍ତି ହେ ବୈଷ୍ଣବ ସମୂହ, ଯୁଷ୍ମାକଂ ଯଦି ହରିସ୍ମରଣେ ହରିକଥା ସ୍ମରଣ କୀର୍ତ୍ତନେ କରି ସରସଂ ଭକ୍ତିରସଯୁକ୍ତଂ ମନଃ କୁତୂହଳମିଚ୍ଛନ୍ତି, ଅତ୍ୟନ୍ତ ଚଞ୍ଚଳ ମନକୁ ଯେବେ ବିଷ୍ଣୁଭକ୍ତି ରସେ ଯୁକ୍ତ କରି ନିର୍ମଳ ନିଶ୍ଚଳ କରିବାକୁ ଇଚ୍ଛା କର ତଦା ଯଦି ବିଳାସକଳାସୁ ରାଧାମାଧବୟୋଶ୍ଚତୁଃଷଷ୍ଟି କାମକଳା ଭକ୍ତିଯୋଗ ଦ୍ୱାରା ଶ୍ରବଣେ କୁତୂହଳମିଚ୍ଛନ୍ତି, ଯେବେ ରାଧାମାଧବଙ୍କର ରତିକେଳି ଚତୁଃଷଷ୍ଟି କାମକଳା ଭକ୍ତି ଯୋଗମାର୍ଗେ ଶ୍ରବଣ କରି ମନକୁ ନିର୍ମଳ ଆନନ୍ଦ କୌତୁକ କରି ଇଚ୍ଛା କରିବ ତଦା ଜୟଦେବ ସରସ୍ୱତୀଂ ଶୃଣୁତ । ତେବେ ଜୟଦେବ କବିର ବଚନ ଶୁଣ । ସେ ଜୟଦେବ କବିର ବଚନ କେମନ୍ତ ଅଟଇ । ମଧୁରକୋମଳକାନ୍ତପଦାବଳୀଂ । ମଧୁରଂ ନବରସମଧୁଯୁକ୍ତଂ କୋମଳଂ ମୃଦୁବଚନଯୁକ୍ତକାବ୍ୟପ୍ରବନ୍ଧଂ କାନ୍ତ ରମଣୀୟଂ ପଦାବଳୀଂ ପଦାନାଂ ପଂକ୍ତି ଏବଂ ବିଶିଷ୍ଟାଂ ଜୟଦେବସରସ୍ୱତୀଂ ଏମନ୍ତ ଯେ ଜୟଦେବର ବଚନ ତାହା ଶୁଣ ।

**ବାଚଃ ପଲ୍ଲବୟତ୍ୟୁମାପତିଧରଃ ସନ୍ଦର୍ଭଶୁଦ୍ଧିଂ ଗିରାଂ**
**ଜାନୀତେ ଜୟଦେବ ଏବ ଶରଣଃ ଶ୍ଲାଘ୍ୟୋ ଦୁରୂହଦ୍ରୁତେ ।**
**ଶୃଙ୍ଗାରୋତ୍ତରସତ୍‌ପ୍ରମେୟରଚନୈରାଚାର୍ଯ୍ୟଗୋବର୍ଦ୍ଧନଃ**
**ସ୍ପର୍ଦ୍ଧୀ କୋଽପି ନ ବିଶ୍ରୁତଃ ଶ୍ରୁତିଧରୋ ଧୋୟୀ କବିଃ କ୍ଷ୍ମାପତିଃ ॥ ୪ ॥**

କବି ବଦତି—କବି ବୋଲୁଅଛନ୍ତି ହେ ବୈଷ୍ଣବ ଜନମାନେ ଶୁଣ । ଜୟଦେବର ମହିମା କେମନ୍ତ ଅଟଇ ! କବିକ୍ଷ୍ମାପତିଃ କବିମାନଙ୍କ ଉପରେ ରାଜା ଅଟନ୍ତି । ପଶ୍ଚାତ୍

ସ୍ପର୍ଦ୍ଧୀ କୋଽପି ନ । ଯେଣୁକରି ତାହାଙ୍କୁ ହିଂସାବାଦ କରିବାକୁ କେହି ସକ୍ଷମ ନୋହିଲେ ତାହା କହିବା । ଉମାପତିଧରନାମାଃ କବିଃ ବାଚଃ ପଲ୍ଲବୟତି । ଅତ୍ୟନ୍ତକୋମଳାଂ ବାଚଂ ବଦତି । ଉମାପତିଧର ନାମେ ଯେ କବି ସେ ଅତ୍ୟନ୍ତ କୋମଳ ବଚନମାନ କହିବାରେ କବି ବୋଲି ପାରଇ । ପୁନଃ ଗିରାଂ ବଚସାଂ ସନ୍ଦର୍ଭଶୁଦ୍ଧିଂ ରଚନାଂ ନ ଜାନାତି । କବିଭି ମାନଙ୍କର ଭାବ ଶୁଦ୍ଧି ବଚନ ନ ଜାଣଇ । ଜାନାତେ ଜୟଦେବ ଏବ । ସେ ଭାବ ଜୟଦେବ ହିଁ ଜାଣେ । ଶରଣ ଶ୍ଳାଘ୍ୟୋ ଦୁରୂହଦ୍ରୁତେଃ । ଶରଣନାମାଃ କବିଃ ସର୍ବତ୍ର ଶ୍ଳାଘ୍ୟ ପୂଜ୍ୟ ଏବ । ଶରଣ ନାମେ କବି ସେ ସମସ୍ତଠାରେ ଶ୍ଳାଘ୍ୟ ପୂଜ୍ୟ ଅଟଇ । ପୁନଃ ଦୁରୂହ ଦ୍ରୁତେଃ । ଦୁଃଖେନ କୃତ୍ଵା ଦୁରୂହ ତଦ୍ଦ୍ରୁତ । ଅତି ଦୁଃଖେ କରି ଯେ ଭାବକୁ ବିତର୍କ ବିଗ୍ରହ କବିତ୍ୱ କରିବାରେ ସେ ଭାବ ନ ଜାଣନ୍ତି । ଆଉ ସମସ୍ତ ଭାବଗର୍ଭ ଜାଣଇ । ଗୋବର୍ଦ୍ଧନନାମାଃ କବିଃ ଶୃଙ୍ଗାରୋତ୍ତରସତ୍ପ୍ରମେୟରଚନୈରାଚାର୍ଯ୍ୟ । ଗୋବର୍ଦ୍ଧନ ନାମେ ଯେ କବି ସେ ଶୃଙ୍ଗାର ରସ ଉତ୍ତର ସତ୍କାର ପ୍ରବନ୍ଧ ପ୍ରମାଣ ରଚନ କବିତ୍ୱ କରିବାରେ ଆଚାର୍ଯ୍ୟ ଅଟଇ । ସେହି ପୁଣି ଜୟଦେବ କବିଙ୍କ ନ ସ୍ପର୍ଦ୍ଧେ । ହିଂସା କରିବାକୁ ନ ପାରଇ । ଧୋୟୀ ନାମାଃ କବିଃ ଖ୍ୟାତଃ ଶ୍ରୁତିଧରଃ । ଧୋୟୀଂ ନାମ ଯେ କବି ସେ ବଡ଼ ଶ୍ରୁତିଧର ଅଟଇ । ପର କବିର ଶ୍ଳୋକ ଚରଣେ ଶୁଣିଲେ ସର୍ବଚରଣ ଆଣି ପାରଇ । ଏଣୁକରି ତାହାଙ୍କୁ ଶ୍ରୁତିଧର ବୋଲି ସମସ୍ତେ ଜାଣନ୍ତି । ସେହି ପୁଣି ଜୟଦେବଙ୍କୁ ହିଂସା କରିବାକୁ ନ ପାରଇ । ଏଣୁ କରି ଜୟଦେବହିଁ ସେ କବିମାନଙ୍କର ରାଜା ।

## ଗୀତ

(ମାଳବଗୌଡ଼ାରାଗେଣ ଗୀୟତେ)

**ପ୍ରଳୟପୟୋଧିଜଳେ ଧୃତବାନସି ବେଦମ୍ ।**

**ବିହିତବହିତ୍ରଚରିତ୍ରମଖେଦମ୍ ।**

**କେଶବ ! ଧୃତମୀନଶରୀର ଜୟ ଜଗଦୀଶ ହରେ । (ଧ୍ରୁବପଦମିଦମ୍)**

ହେ କେଶବ, ହେ ଜଗଦୀଶ, ହେ ହରେ, ଭକ୍ତ ଆର୍ତ୍ତି ହର ତ୍ୱଂ ଜୟ ଜୟ । ହେ ଧୃତ ମୀନ ଶରୀର, ଅଙ୍ଗୀକୃତ ମତ୍ସ୍ୟ ରୂପ ବେଦାନ୍ତ ଜନିତ ବୁଦ୍ଧି ଅତିଶୟ ତ୍ୱଂ ଭବ । ସ୍ୱମାୟୟା ଶତ୍ରୁସଂହରଣେ ସ୍ୱଭକ୍ତପରିପାଳନେ ସଦା ହୃଷ୍ଟୋ ଭବ । ଯସ୍ତ୍ୱଂ ପ୍ରଳୟପୟୋଧିଜଳେ । ପ୍ରଳୟବେଗେନ ନଷ୍ଟ ସ୍ଥାବରଜଙ୍ଗମେ ମହାର୍ଣ୍ଣବଜଳେ ବେଦଂ ଧୃତବାନ୍ ।

ଅନାଥ ହୋଇଥିଲେ ଯେ ବେଦ ତାହାଙ୍କୁ ତୁମ୍ଭେ ଧଇଲ । ତୁମ୍ଭେ ପୁଣି ସ୍ୱପ୍ରକାଶ । ତୁମ୍ଭର ଦେହ ଦୃଶ୍ୟ ନାହିଁ । ତଥାପି ତୁମ୍ଭର ସଂସାର ଲୀଳା ଅର୍ଥକୁ

* ଧୋୟୀ (ପୋଥିପାଠ)

କାରଣ ସେ ବେଦ ତୁମ୍ଭର ବଚନ ତାହାଙ୍କ ମୀନ ଦେହ ହୋଇ ଧଇଲ । ସେ ମୀନ ଦେହ କେମନ୍ତ ଅଟଇ । ଅଖେଦଂ ଖେଦ ଦୁଃଖ ରହିତଂ । ସେ ଦେହ ବେଦ ବହିବାରେ କିଛି ହିଁ ଦୁଃଖ ନ ପାଇଲା । ଯେଣୁକରି ତୁମ୍ଭେ ଆପଣାର ମାୟାବଳେ (ବହିବ ଚରିତ୍ର ବହିତଂ)[1] ବହିବ ସେ ବୋହିତ ବଣିକାର ନାବ । ସେ ଯେମନ୍ତ[2] ଭାର ବହିବାରେ ଖେଦ ନ ପାଏ । ସକଳ ବସ୍ତୁ ବଣିକାର ସହିତ କୂଳରେ ନେଇ ଥୁଅଇ । ସେହିମନ୍ତ କରି ତୁମ୍ଭେ ମୂର୍ତ୍ତି ମସ୍ୟ ବେଦକୁ ଧରି ସଂସାର ରକ୍ଷା କଲ । ହେ ହରେ, ଏବେ ତୁମ୍ଭର ଭକ୍ତଜନମାନଙ୍କୁ ସେହିମନ୍ତ କରି ଭବ ସମୁଦ୍ରରୁ ଜନ୍ମ ମରଣ ଦୁଃଖରୁ ପାର କର ।

**କ୍ଷିତିରତିବିପୁଳତରେ ତବ ତିଷ୍ଠତି ପୃଷ୍ଠେ**
**ଧରଣୀଧାରଣକିଣଚକ୍ରଗରିଷ୍ଠେ ।**
**କେଶବ ! ଧୃତକଚ୍ଛପରୂପ, ଜୟ ଜଗଦୀଶ ହରେ ॥ ୨ ॥**

ହେ କେଶବ, ହେ କେଶୀନିସୂଦନ ସେ ତବ ଅତି ବିପୁଳତରେ ପୃଷ୍ଠେ କ୍ଷିତି-ସ୍ଥିତି ତିଷ୍ଠତି । ହେ କେଶବ ତୁମ୍ଭର ପିଠି କେତେ ବିସ୍ତାର ତାହା କେହି କହି ନ ପାରଇ । ଅତି ଶବ୍ଦ ପଦାନ୍ତରେ ଅଗୋଚର ଅଟଇ । କି ପଦାନ୍ତର କରିବା । ଧରଣୀ ଧରଣେ କରି କିଣ କର୍କଶ ମୃତ ଶୋଣିତ ଚର୍ମ ଗ୍ରନ୍ଥି ଯୁକ୍ତେ ମରିଛିର ରକ୍ତ ଚର୍ମଗିରି ଏମାନେ ଗଣ୍ଠି ଗଣ୍ଠି ହୋଇ ଫଳ[3] କର୍କଶ ହୋଇଛନ୍ତି । ପୁଣି କି ପଦାନ୍ତର କରିବା, ଚକ୍ର ଗରିଷ୍ଠେ[4] ତୁମ୍ଭ ଉପରେ ଅଛି ସେ ଚକ୍ର ତହୁଁ ଆଣ୍ଠ ଅଟଇ । ଏମନ୍ତ ପିଠିରେ ଏ ପଞ୍ଚାଶତ୍ କୋଟି ଯୋଜନ ସେ ପୃଥ୍ୱୀ ତାହାକୁ ବହୁଛ ତିଳ ପ୍ରମାଣ କରି । ତିଳ ଗୋଟିଏ ଯେମନ୍ତେ ଉଶ୍ବାସ ସେହିମନ୍ତ ହୋଇ ତୁମ୍ଭ ପିଠିରେ ପୃଥ୍ୱୀ ଅଛି । ଏମନ୍ତ କୂର୍ମ ରୂପକୁ ଧଇଲ ଯେ ଜନୋପକାରେ ତୁମ୍ଭେ ହେ ଜଗଦୀଶ, ହେ କୂର୍ମ ! ତୁମ୍ଭେ ଜୟଯୁକ୍ତ ହୋଇ ଭକ୍ତ ପ୍ରତିପାଳନେ ସଦା ଭବ ।

**ବସତି ଦଶନଶିଖରେ ଧରଣୀ ତବ ଲଗ୍ନା ।**
**ଶଶିନି କଳଙ୍କକଳେବ ନିମଗ୍ନା ।**
**କେଶବ ! ଧୃତଶୂକରରୂପ, ଜୟ ଜଗଦୀଶ ହରେ ॥ ୩ ॥**

ହେ ଜଗଦୀଶ, ହେ ହରେ, ତବ ଦଶନଶିଖରେ ଧରଣୀ ଲଗ୍ନା ସତି ବସତି । ହେ କେଶବ, ତୁମ୍ଭର ଦନ୍ତାଗ୍ର ଧରଣୀ ଲାଗି କରି ବସିଲ ପ୍ରାୟେ ଦିଶୁଛି ।

---

୧-କ. ରେ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।
୨-କ. ଧଡ଼ାନ୍ତି ନାହିଁ । ଖ. କେମନ୍ତ ।
୩-କ. ଫଳ
୪-ଖ. ରେ ଏହା ପରେ ଅଧିକ ପାଠ ଅଛି ଚକ୍ରାକାରେଣ ଗରିଷ୍ଠଃ ।

କି ପଟାନ୍ତର କରିବା । ଯଥା ଶଶିନି ଚନ୍ଦ୍ରେ ନିମଗ୍ନା କଳଙ୍କ କଳେବ । ଚନ୍ଦ୍ରମା ଦେହରେ ଯେମନ୍ତ ମଗ୍ନ ଶଙ୍କର ହୋଇଁ ଲଗି ଦିଶୁଥାଇ କଳଙ୍କ କଳା ସେହିମତ ହୋଇଁ ଧରଣୀ ବସିଛି । ହେ ହରେ, ଧୃତ ଶୂକର ରୂପ, ଧରିଲ ଏମନ୍ତ ଶୂକର ରୂପକୁ ଯେ ତୁମ୍ଭେ ତ୍ୱଂ ଜୟ ଜୟ । ସମଭୟସ୍ମୁକାଶାତ୍ ଜଗଦ୍ରକ୍ଷ । ସମଭୟରୁ ଜଗତକୁ ରକ୍ଷା କର ।

**ତବ କରକମଳବରେ [1]ନଖମଦ୍ଭୁତଶୃଙ୍ଗମ୍ ।**
**ଦଳିତହିରଣ୍ୟକଶିପୁତନୁଭୃଙ୍ଗମ୍ ।**
**କେଶବ ! ଧୃତନରହରିରୂପ, ଜୟ ଜଗଦୀଶ ହରେ ।। ୪ ।।**

ହେ କେଶବ ! ତବ କରକମଳାନାଂ ବରଃ ଶ୍ରେଷ୍ଠଃ । ତୁମ୍ଭର ହସ୍ତ ପଦ୍ମମାନଙ୍କରେ ଶ୍ରେଷ୍ଠ ଅତ୍ୟନ୍ତ କୋମଳ । ସେ କରପଦ୍ମ ଉପରେ ପାଖୁଡ଼ାମାନଙ୍କର ପ୍ରାୟେ ଅଙ୍ଗୁଳିମାନେ ତାହାଙ୍କ ଉପରେ ନଖମାନେ ଦିଶିଲେ କି ପଟାନ୍ତର କରିବା । ଅଦ୍ଭୁତ ଶୃଙ୍ଗମ୍ । ଶୃଙ୍ଗ ମାନଙ୍କର ପ୍ରାୟେ ହୋଇଲେ । ଅତଏବ ଅଦ୍ଭୁତଂ । କମଳ ପାଖୁଡ଼ା ଉପରେ ଶୃଙ୍ଗ ଏଣୁକରି ଅଦ୍ଭୁତ ବୋଲି । ତୁମ୍ଭେ ପୁଣି ସେ ନଖମାନଙ୍କରେ କରି ଦଳିଲ, ବିଦାରଣ କଲ । ହିରଣ୍ୟକଶିପୋ ସ୍ତନୁଭୃଙ୍ଗଂ । ତନୁନା ଭୃଙ୍ଗ ତନୁଭୃଙ୍ଗ । ଦେହମାନଙ୍କୁ ଭ୍ରମରେ କରି ବଧ କଲ । ପୁଷ୍ପମାନଙ୍କୁ ଯେମନ୍ତ ଭ୍ରମର ଧ୍ୱଂସ କରଇ । ଏଣୁକରି ତାହାର ଦେହ ଭୃଙ୍ଗ ପୁଷ୍ପକୁ ଦଳିଲ । ହେ ଜଗଦୀଶ ! ଧୃତନରହରିରୂପ ତ୍ୱଂ ଜୟ ଜୟ । ଧରିଲ ନରସିଂହ ରୂପକୁ ଯେ ତୁମ୍ଭେ । ହେ ନରହରିରୂପେଣ । ସେ ନରହରି ରୂପେ ତୁମ୍ଭେ ଜଗତକୁ ଜୟଯୁକ୍ତ କରି ସମାଧି ଭୟରୁ ଧ୍ରୁ ଭକ୍ତମାନଙ୍କୁ ପାର କର ।

**ଛଳୟସି ବିକ୍ରମଣେ [3]ବଳିମଦ୍ଭୁତବାମନ ।**
**ପଦନଖନୀରଜନିତଜନପାବନ ।**
**କେଶବ ! ଧୃତବାମନରୂପ, ଜୟ ଜଗଦୀଶ ହରେ ।। ୫ ।।**

ହେ କେଶବ ! ବିକ୍ରମଣେ[4] ତବ । ବିକ୍ରମାବତାରେ ଅଦ୍ଭୁତ ବାମନ ରୂପେଣ ତ୍ୱଂ ବଳିଂ ଛଳୟସି । ହେ ଜଗଦୀଶ ! ତ୍ରୈଲୋକ୍ୟବିକ୍ରମକାଳେ ତୁମ୍ଭେ ଅଦ୍ଭୁତ

---

୧-ଖ. କମଲେ
୨-ଖ. ତେ ତଦ
୩-କ. ବିକ୍ରମେଣ
୪-କ. ବିକ୍ରମେଣ

ବାମନ ରୂପ ଧରି ତିନିପାଦେ ତିନି ଭୁବନକୁ ଆକ୍ରମି ବଳିକି ଛଳିଲ । ସେ ବାମନ ରୂପ ତୁମ୍ଭର ଯେମନ୍ତ ତାହା କହିବା । ଅତ୍ୟନ୍ତ ଖର୍ବ ଦ୍ୱାଦଶାଙ୍ଗୁଳ ପ୍ରମାଣ ଦେହ । ସେ ଦେହ ନାଭିପଦ୍ମରୁ ପାଦଟିଏ ବାହାର ହୋଇ ପଞ୍ଚାଶ କୋଟି ଯୋଜନ ଯେ ପୃଥିବୀ ତାହାକୁ ଆବରଣ ଯେ ବ୍ରହ୍ମାଣ୍ଡ କଟାହ ତହିଂବାହା ପ୍ରକୃତ ଭୁବନ ପର୍ଯ୍ୟନ୍ତ ଏକ କଲ । ସେ ପ୍ରକୃତି ଭୁବନ ଯେତେ ଅନ୍ତରେ ଅଛି ତାହା କହିବା । ଆଦେ ସପ୍ତଦ୍ୱୀପାବଳୀ ପୃଥିବୀ । ତାହାକୁ ଆବରଣ ଯେତେ ବିସ୍ତାର ତହିଁକି ଦଶଗୁଣ ପ୍ରମାଣେ ବେଢ଼ିଅଛି କାରୁଣ୍ୟ ଜଳ । ସେ ଜଳକୁ ଦଶଗୁଣ ପ୍ରମାଣ ଆବୋରିଛି ଅନଳ । ଅନଳକୁ ଦଶଗୁଣ ପ୍ରମାଣେ ଆବୋରିଛି ପବନ । ପବନକୁ ଦଶଗୁଣ ପ୍ରମାଣେ ଆବୋରିଛି ଗଗନ । ଗଗନକୁ ଦଶଗୁଣ ପ୍ରମାଣେ ଆବୋରିଛି[1] ମନ । ମନକୁ ଦଶଗୁଣ ପ୍ରମାଣେ ଆବୋରିଛି ଅହଂକାର । ଅହଂକାରକୁ ଦଶଗୁଣ ପ୍ରମାଣେ ଆବୋରିଛି[2] ମହତ୍ତତ୍ତ୍ୱ । ଏହାକୁ ବୁଦ୍ଧି ବୋଲି । ଏହି ବୁଦ୍ଧି ତତ୍ତ୍ୱକୁ ଦଶଗୁଣରେ ପ୍ରକୃତି । ଏତେଦୂର ପର୍ଯ୍ୟନ୍ତେ କର୍ମିଲ ସେ ପାଦଘାତ ଭେଦେ । ଏଣୁକରି ଅଦ୍ଭୁତ ବୋଲି । ସେ ପାଦପଦ୍ମ ପୁଣି କେବଳ ଖମୀରଜନିତ ଜନପାବନ, ସେ ପାଦପଦ୍ମର ନଖ ଲାଗି ବ୍ରହ୍ମାଣ୍ଡ ଖଣ୍ଡ ଭଙ୍ଗ ଯେ ମାର୍ଗ କାରୁଣ୍ୟ ଜଳ ବ୍ରହ୍ମାଣ୍ଡ ଭିତରକୁ ପଶିଛି । ସେ ଆକାଶରେ ମନ୍ଦାକିନୀ, ମର୍ତ୍ତ୍ୟରେ ଗଙ୍ଗା, ପାତାଳେ ଭୋଗବତୀ ବୋଲାଇ । ତ୍ରୈଲୋକ୍ୟସ୍ଥିତ ଜନମାନଙ୍କୁ ପବିତ୍ର କରୁଛି । ସ୍ୱର୍ଗ ମାନଙ୍କେ ସକଳ କଳୁଷ ନାଶ କରୁଛି । ହେ କେଶବ ! ଧରିଲ ଯେ ଏମନ୍ତ ବାମନ ରୂପ ତୁମ୍ଭେ ଏ ରୂପ ଧ୍ୟାନ ଶ୍ରବଣେ କରି ଏ ସଂସାରରେ ଭକ୍ତଜନମାନଙ୍କୁ ନିସ୍ତାର କର । ହେ ହରି ତୁମ୍ଭେ ଜୟ ଜୟ ।

**କ୍ଷତ୍ରିୟରୁଧିରମୟେ ଜଗଦପଗତପାପମ୍ ।**
**ସ୍ନପୟସି ପୟସି ଶମିତଭବତାପମ୍ ।**
**କେଶବ ! ଧୃତଭୃଗୁପତିରୂପ, ଜୟ ଜଗଦୀଶ ହରେ ॥ ୬ ॥**

ହେ କେଶବ ! ପରଶୁରାମ ଅବତାରେ ତୁମ୍ଭର ପିତା ଯେ ଜମଦଗ୍ନି ତାହାଙ୍କର ଆଦେଶରେ ମାତାଙ୍କର ମୁଣ୍ଡ କାଟିଲ । କ୍ଷତ୍ରିୟ ସହସ୍ରାର୍ଜୁନ ନାମେ ରାଜା ତହିଁର ତାପେ ତୁମ୍ଭେ ସଙ୍କଳ୍ପ କରି ଏକବିଂଶବାର ପର୍ଯ୍ୟନ୍ତ ପୃଥିବୀରେ ଭ୍ରମଣ କରି ଦେଶ ଦେଶ ହୋଇ କରି ଯେତେ ଯେତେ କ୍ଷତ୍ରିୟ ଥିଲେ ଭୂମିରେ ତାହାଙ୍କୁ ଧରି ଆଣି କୁରୁକ୍ଷେତ୍ରେ ଶିରଚ୍ଛେଦନ କରି ତାହାଙ୍କ ରୁଧିରେ ସାତଗୋଟା କୁଣ୍ଡ କରି ତହିଁରେ ସ୍ନାନକରି

---

୧-୯. ଆବରଣ

୨-୯. ଆବରଣ

ପିତୃଲୋକମାନଙ୍କୁ ତର୍ପଣ କରି ତୃପ୍ତି କଲ । ତୁମ୍ଭ ସ୍ନାନ କଲାରେ ସେ ରକ୍ତ କାରୁଣ୍ୟଜଳ ହୋଇଲା । ସେ ଜଳ ଜଗଦପଗତପାପଂ । ଜଗତରେ ଯେତେ ପ୍ରାଣୀ ଅଛନ୍ତି ସେମାନଙ୍କର ପାପ ନାଶ କରଇ ଦର୍ଶନ ସ୍ପର୍ଶ ମାତ୍ରକେ । ପୁଣି ସେ ଜଳ କେମନ୍ତ ଅଟଇ । ଶମିତ ଭବତାପଂ । ଭବ ଯେ ସଂସାର ତହିଁର ଜନ୍ମ ମରଣ ଖଣ୍ଡଇ ।[୧] ଅର୍ଥାତ୍ ଯେ ମୋକ୍ଷ ତାହା ଦିଅଇ । ହେ ଜଗଦୀଶ ଧରିଲ ଯେ ଏମନ୍ତ ଭୃଗୁପତି ରୂପ ତୁମ୍ଭେ ଏ ରୂପ ସୁମରଣେ ସକଳ କଲ୍ମଷ ହର । ହେ ହରେ ତ୍ୱଂ ଜୟ ଜୟ ।

**ବିତରସି ଦିକ୍ଷୁ ରଣେ ଦିକ୍‌ପତିକମନୀୟମ୍ ।**
**ଦଶମୁଖମୌଳିବଳିଂ ରମଣୀୟମ୍ ।**
**କେଶବ ! ଧୃତରାମଶରୀର, ଜୟ ଜଗଦୀଶ ହରେ ॥ ୭ ॥**

ହେ କେଶବ ! ତୁମ୍ଭେ ଭୂମିଭାର ନିବାରଣେ କୌଶଲ୍ୟା ଗର୍ଭେ ଜନ୍ମ ହୋଇଁ ଯେ କର୍ମ କଲ ବିତରସି ଦିକ୍ଷୁ ରଣେ । ସଂଗ୍ରାମେ ଦିକ୍ଷୁ । ଦିଗ୍ଦିଗାଧିପତିଭ୍ୟଃ । ଇନ୍ଦ୍ରୋବହ୍ନିର୍ଯମନୈର୍ଋତବରୁଣବାୟୁକୁବେରଈଶାନାନ୍ତବ୍ରହ୍ମାଦିଭ୍ୟଃ । ଦଶମୁଖବଳିଂ ରମଣୀୟଂ । ଏ ଦିକ୍‌ପତିମାନଙ୍କର ମନକୁ ରମଣୀୟ ମନୋହର ଯେମନ୍ତ ହୋଇ ତାହା କଲ । ଦଶମୁଖ ଯେ ରାବଣ ତାହାର କୁଣ୍ଡଳ କିରୀଟ ଉଷ୍ଣୀଷ ଭୂଷଣାଲଂକୃତ ମୁଣ୍ଡମାନେ ଗୋଟି ଗୋଟି କରି କାଟି ତାହାଙ୍କୁ ଦେଖାଇଲ ଉପହାର କରି । ହେ କେଶବ ! ଧରିଲ ଯେ ଏମନ୍ତ ଶ୍ରୀରାମରୂପ ତୁମ୍ଭେ ଏ ରୂପ ଧ୍ୟାନ ଶ୍ରବଣ କଲା ସ୍ୱଭକ୍ତଜନମାନଙ୍କୁ କୈବଲ୍ୟ ଦିଅ । ହେ ହରେ ତ୍ୱଂ ଜୟ ଜୟ ।

**ବହସି ବପୁଷି ବିଶଦେ ବସନଂ ଜଳଦାଭମ୍ ।**
**ହଳହତିଭୀତିମିଳିତଯମୁନାଭମ୍ ।**
**କେଶବ ! ଧୃତହଳଧରରୂପ, ଜୟ ଜଗଦୀଶ ହରେ ॥ ୮ ॥**

ହେ କେଶବ ! ବିଶଦେ ବପୁଷି ତ୍ୱଂ ଜଳଦାଭଂ ବସନଂ ବହସି । ହେ ଜଗଦୀଶ କୋଟି ଚନ୍ଦ୍ର ପ୍ରକାଶକ ଯେ ତୁମ୍ଭର ଦେହ ଅତ୍ୟନ୍ତ ଶୁକ୍ଳ । ସେ ଦେହେଁ କରି ଜଳଦ ଯେ ମେଘ ତାହାର ଆଭା ପ୍ରାୟେ ବସନକୁ ବହିଲ । ପୁଣି ସେ ବସନକୁ କି ପଟାନ୍ତର କରିବା । ହଳହତିଭୀତିମିଳିତଯମୁନାଭଂ । ତୁମ୍ଭେ ଯେତେବେଳେ ବୃନ୍ଦାବନେ ଗୋବର୍ଦ୍ଧନ ପର୍ବତ ଉପରେ ବସି ଗୋପୀମାନଙ୍କୁ ଘେନି ନୀଳାରସେ ପୁଣି କାଦମ୍ବରୀ ପାନେ ବିଭୋଳ ହୋଇ ଯମୁନା ନଦୀକୁ ଡାକିଲ ସ୍ନାନ କରିବା ନିମନ୍ତେ ସେ ଯମୁନା ପର୍ବତକୁ ନ ଗଲାରେ ହଳ ଘେନି ଶତଧାର

୧-ଝ. ମରଣ ତାପ ଖଣ୍ଡଇ ।

କରିବାକୁ ବସୁଥିଲ । ସେ ନଦୀ ହଳଘାତର ଭୟରେ ପାଦପଦ୍ମତଳେ ମିଳିଲା ଯେ ଯମୁନା ତାହାର ପ୍ରାୟେ ବସ୍ତ୍ରର ପ୍ରଭା ଅଛି । ହେ ଜଗଦୀଶ ଧରିଲ ଯେ ଏମନ୍ତ ହଳଧର ରୂପ ତୁମ୍ଭେ ଏ ରୂପ ଧ୍ୟାନ ଶ୍ରବଣ କରନ୍ତା ଭକ୍ତଜନମାନଙ୍କୁ ନିସ୍ତାର କର । ହେ ହରେ ତ୍ୱଂ ଜୟ ଜୟ ।

**ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତମ୍ ।**
**ସଦୟହୃଦୟଦର୍ଶିତପଶୁଘାତମ୍ ।**
**କେଶବ ! ଧୃତବୁଦ୍ଧଶରୀର, ଜୟ ଜଗଦୀଶ ହରେ ॥ ୯ ॥**

ହେ କେଶବ ! ଧରିଲ ବୁଦ୍ଧ ଶରୀରକୁ ଯେ ତୁମ୍ଭେ ବୌଦ୍ଧବଂଶେ ଜନ ଘରେ ଜାତ ହୋଇ, ଯଜ୍ଞବିଧିଂ ନିନ୍ଦସି । ନିନ୍ଦାଂ କୁରୁଷେ ଯତଃ ଯଜ୍ଞବିଧୌ । ଯେଣୁକରି ଯଜ୍ଞବିଧିରେ, ଶ୍ରୁତି ଜାତଂ । କର୍ମ ଶ୍ରୁତି ଯେ ବେଦ ତହୁଁ ଜାତ ହୋଇଲା ଯେ କର୍ମକାଣ୍ଡ । ସେ କର୍ମମାର୍ଗକୁ ଅହହ ଧିକ୍‌କୃତ୍ୟ ନିନ୍ଦାଂ କୃତ୍ୱା ନିନ୍ଦସି । ନିନ୍ଦା କର । ଯେଣୁ ସେ ଯଜ୍ଞରେ ପଶୁଘାତ କରନ୍ତି । ତୁମ୍ଭେ ଯେଣୁକରି ସମସ୍ତ ପ୍ରାଣୀମାନଙ୍କର ହୃଦୟରେ ପୂର୍ଣ୍ଣ ବ୍ରହ୍ମ ସ୍ୱରୂପ ହୋଇଁ ପ୍ରକାଶ ହୋଇଅଛ । ତେଣୁକରି ତୁମ୍ଭେ ସଦୟ ହୃଦୟ ଦର୍ଶିତ ପଶୁଘାତଂ ପ୍ରତି ସଦୟଃ । ଦୟୟା ସହ ବର୍ତ୍ତମାନଂ ହୃଦୟଦର୍ଶିତଂ । ତୁମ୍ଭେ ପୁଣି ଦୟା ସହିତ ଚିତ୍ତ ଜଗତକୁ ଦେଖାଇଲ । ବୋଇଲ ହେ ପ୍ରାଣୀମାନେ ଆତ୍ମା ହିଂସା କଲେ ନାଶ ଯିବନି । ହେ ଜଗଦୀଶ, ଏମନ୍ତ ବୋଧ ଜ୍ଞାନଦାତା ଶରୀରକୁ ଧରି ଜଗତକୁ ଅଜ୍ଞାନ ଭାବରୁଁ ପାରିକର । ହେ ହରେ ତ୍ୱଂ ଜୟ ଜୟ ।

**ମ୍ଲେଚ୍ଛନିବହନିଧନେ କଳୟସି କରବାଳମ୍ ।**
**ଧୂମକେତୁମିବ କିମପି କରାଳମ୍ ।**
**କେଶବ ! ଧୃତକଲ୍‌କିଶରୀର, ଜୟ ଜଗଦୀଶ ହରେ ॥ ୧୦ ॥**

ହେ କେଶବ ! କଳ୍କି ଶରୀର ଧରି ଜଗତକୁ ନିସ୍ତାର କଲ ଯେଣୁକରି ମ୍ଲେଚ୍ଛାନାଂ ନିବହ । ମ୍ଲେଚ୍ଛ ନିବହ ତସ୍ମିନ୍ ନିଧନେ କରବାଳଂ କଳୟସି । ପାପୀ ପ୍ରାଣୀ ସମୂହଂ ନିଧନାର୍ଥେ କରବାଳ ଯେ ଖଡ୍‌ଗ ତାହା ଧରିଲ । ସେ ଖଡ୍‌ଗ କେମନ୍ତ ଅଟଇ । ଧୂମକେତୁ ମିବ କିମପି କରାଳଂ । ଧୂମକେତୁ ଯେ ଉଲ୍‌କା ତାହାର ପ୍ରାୟେ । ଅଥବା ଅଗ୍ନିର ପ୍ରାୟେ । ତସ୍ୟାନୁମାନ କିମପି । ସେ ଖଡ୍‌ଗକୁ କି ଅନୁମାନ କରିବା । କରାଳଂ ଭୟଙ୍କର ଅଟଇ । ହେ ଜଗଦୀଶ ! ତୁମ୍ଭର ଏ କଲ୍‌କି

ରୂପ ଧ୍ୟାନ ଶ୍ରବଣକଲା ପ୍ରାଣୀମାନଙ୍କୁ ସଂସାର ଭୟରୁ ପାର କର । ହେ ହରେ ତ୍ୱଂ ଜୟଜୟ । )[୧]

**ଶ୍ରୀଜୟଦେବକବେରିଦମୁଦିତମୁଦାରମ୍ ।**
**ଶୃଣୁ ସୁଖଦଂ ଶୁଭଦଂ ଭବସାରମ୍ ।**
**କେଶବ ! ଧୃତଦଶବିଧରୂପ, ଜୟ ଜଗଦୀଶ ହରେ ।। ୧୧ ।।**

କବିବରଦତ୍ତ—ଜୟଦେବ କବି ବୋଲୁଛନ୍ତି—ହେ ବୈଷ୍ଣବ ଜନମାନେ ଶୁଣ । ଶ୍ରୀଜୟଦେବକବେରିଦମୁଦିତଂ । ଜୟଦେବ କବିର ଏ ବୋଇଲା ବଚନ । ଏ ପୁଣି କେମନ୍ତ ଅଟଇ । ଉଦାରଂ ଉତ୍କୃଷ୍ଟ । ସମସ୍ତ କବିଙ୍କ ବଚନମାନଙ୍କର ଶ୍ରେଷ୍ଠ ଅଟଇ । ପୁଣି କେମନ୍ତ ଅଟଇ । ସୁଖଦଂ ମୋକ୍ଷ ଦିଅଇ । ପୁଣି କେମନ୍ତ ଅଟଇ । ଶୁଭଦଂ ସମସ୍ତ ଶୁଭ କର୍ମମାନ ଦିଅଇ । ଅଶୁଭ ନାଶ କରଇ । ପୁଣି କେମନ୍ତ ଅଟଇ । ଭବସାରଂ ଭବ ଯେ ଜନ୍ମ ତହିଁର ସାର । ଯେ ଜ୍ଞାନ ତାହା ଦିଅଇ । ହେ ଭକ୍ତଜନମାନେ ଏମନ୍ତ ହୋଇ ଯେ କେଶବ ଧରିଲେ ଦଶପ୍ରକାର ରୂପ । ଏ ରୂପ ଧ୍ୟାନ ଶ୍ରବଣାନୁସ୍ମରଣେ ସଂସାର ଭୟରୁ ପାର କରନ୍ତି । ଇତ୍ୟାହ ଶ୍ଳୋକାର୍ଥମାର୍ଗେଣୈବ ଗୀତାର୍ଥମୁପପାଦନମ୍ ।

**ଶ୍ଳୋକ**

**ବେଦାନୁଦ୍ଧରତେ ଜଗନ୍ତି ବହତେ ଭୂଗୋଳମୁଦ୍ବିଭ୍ରତେ**
**ଦୈତ୍ୟଂ ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।**
**ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟମାତନ୍ୱତେ**
**ମ୍ଳେଚ୍ଛାନ୍ ମୂର୍ଚ୍ଛୟତେ ଦଶାକୃତିକୃତେ କୃଷ୍ଣାୟ ତୁଭ୍ୟଂ ନମଃ ।। ୫ ।।**

ନମଃ କୃଷ୍ଣାୟ-କିଂ ଭୂତାୟ । ବେଦାନୁଦ୍ଧରେ । ପ୍ରଳୟାର୍ଣ୍ଣବ ଜଳେ ବେଦାନୁଦ୍ଧରେ । ଉର୍ଦ୍ଧ୍ୱଂ ଧରନ୍ତି ଅନେନେତି ବେଦାନୁଦ୍ଧରେ । ତସ୍ୟ ସମ୍ବୋଧନେ ହେ ବେଦାନୁଦ୍ଧର, ତେ ତୁଭ୍ୟଂ ନମଃ । ହେ ଜଗନ୍ତିବହ, ସକଳ-ଚତୁର୍ଦ୍ଦଶ-ଭୁବନ ଜଗଦ୍ବହନକର୍ମାୟ ତେ ତୁଭ୍ୟଂ ନମଃ । ହେ ଭୂଗୋଳମୁଦ୍ବିଭ୍ର । ମହାବସୁନ୍ଧରୋ-ଦ୍ଧରଣାୟ ଶୂକର ରୂପାୟ ତେ ତୁଭ୍ୟଂ ନମଃ । ହେ ଦୈତ୍ୟଂ ଦାରୟ । ସ୍ତମ୍ଭକୁ-ଫଟାଳ-ଫଟଫଟ-ନିବାରଣ-ଭ୍ରମାଦିବହନ-ଧୃତମଦ୍ଭୁତ ନୃସିଂହରୂପାୟ ତେ ତୁଭ୍ୟଂ

---

୧-ଙ. ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ

୨-ଙ. ଏମନ୍ତ କହି

ନମଃ । ହେ ବଳଂ ଛଳୟ । ମାୟୁାଂ ଭିକ୍ଷୁ ବାମନରୂପେଣ ବଳଂ ମର୍ଦ୍ଦନାୟ ତେ ତୁଭ୍ୟଂ ନମଃ । ହେ କ୍ଷତ୍ରିୟକ୍ଷୟଂ [1] କୁରୁ । କ୍ଷତ୍ରିୟସୂଦନନାୟ ପର୍ଶୁରାମରୂପାୟ ତେ ତୁଭ୍ୟଂ ନମଃ । (ହେ ପୌଲସ୍ତ୍ୟଂ ଜୟ । ପୁଲସ୍ତ୍ୟବଂଶଃ ପୁତ୍ରୋ ବିଶ୍ରବା ତସ୍ୟ ପୁତ୍ରୋ ଦଶାନନ ବ୍ରହ୍ମରାକ୍ଷସ-ରାବଣ ଦର୍ପଭଞ୍ଜନାୟ ଶ୍ରୀରାମଚନ୍ଦ୍ର ରୂପାୟ ତେ ତୁଭ୍ୟଂ ନମଃ । ହେ ହଳଂ କଳୟ। ପ୍ରଣତ ଦେହ ପାପ କର୍ଷଣାୟ ହଳାୟୁଧାୟ ତେ ତୁଭ୍ୟଂ ନମଃ) [2] ହେ କାରୁଣ୍ୟମାତନୁ । ହେ ଜ୍ଞାନମୟ କରୁଣାପୂର୍ଣ୍ଣ ହୃଦୟାୟ ବୌଦ୍ଧଂ ବଂଶୋଦ୍ଭବ ବୁଦ୍ଧରୂପାୟ ତେ ତୁଭ୍ୟଂ ନମଃ । ହେ ମ୍ଳେଚ୍ଛାନ୍ ମୂର୍ଚ୍ଛୟ । ଧର୍ମମାର୍ଗପିହିତ ପାପିଷ୍ଠଜନକ୍ଷୟାୟ ଖଡ୍‌ଗହସ୍ତାୟ କଲ୍‌କିରୂପାୟ ତେ ତୁଭ୍ୟଂ ନମଃ । ହେ ଦଶାକୃତିକୃତାୟ ମୀନରୂପାଦି ଦଶାବତାରାୟ ପରମ ମଙ୍ଗଳ ଶ୍ରୀକୃଷ୍ଣାୟ ତେ ତୁଭ୍ୟଂ ନମଃ ।

**ଗୀତ—**

(ମଙ୍ଗଳଗୁର୍ଜ୍ଜରୀରାଗେଣ ଗୀୟତେ)

**ଶ୍ରିତକମଳାକୁଚମଣ୍ଡଳ । ଧୃତ କୁଣ୍ଡଳ ।**
**କଳିତଲଳିତବନମାଳ । ଜୟଜୟ ଦେବ ହରେ ॥**

(ଧ୍ରୁବପଦମିଦମ୍)

ହେ ଦେବ ଭକ୍ତାର୍ତ୍ତି ବିନାଶନ ! ହେ ହରେ ତ୍ୱଂ ଜୟ ଜୟ । ତୁମ୍ଭେ ସ୍ୱଭାବେ ଜୟ କର । ଜିଣିଲ ମାୟାକୁ ହେ ହରେ ! ତୁମ୍ଭେ ଏବେ ସଂସାର ସ୍ଥିତ ଭକ୍ତଜନମାନଙ୍କୁ ମାୟା ଭ୍ରମରୁଁ ପାର କର। ତୁମ୍ଭେ ଶ୍ରିତୟା ଆଶ୍ରୟଣୀୟା କୃତ କମଳା କୁଚୟୋର୍ମଧ୍ୟେ ଯତସ୍ତ୍ୱଂ । ହେ ହରେ ତୁମ୍ଭେ ସମସ୍ତ ପ୍ରାଣୀଙ୍କର ହୃଦୟ କମଳ ମଧ୍ୟେ ଆଶ୍ରୟ କରି [3] ଚତୁର୍ବର୍ଗ ଦାତା ହୋଇଁ ବସିଅଛ । ଧୃତ କୁଣ୍ଡଳ । ଧରିଅଛ କର୍ଣ୍ଣରେ [4] ମୁଖବେଷ୍ଟନଂ ମକରାକାର କୁଣ୍ଡଳକୁ । କଳିତ ଲଳିତ ବନମାଳ । କଳିତଅଙ୍ଗୀକୃତ ଲଳିତ- ରମଣୀୟ ଆପଦତଳ ମସ୍ତକ ପର୍ଯ୍ୟନ୍ତ ଗନ୍ଧାଢ୍ୟ ବନମାଳୟାବୃତଃ । ହେ ହରେ ! ତୁମ୍ଭର ଦେହରେ କଳିତ ଗଳା ଠାରୁଂ ଚରଣ ପର୍ଯ୍ୟନ୍ତ ମଣ୍ଡଳାକାର ଲଳିତ- ରମଣୀୟ ମନୋହର ବିରାଜମାନ ବନମାଳ ଲମ୍ବିଛି ।

---

୧-ଖ. କ୍ଷତ୍ରକ୍ଷୟଂ ।    ୩-ଖ. ଆଶ୍ରୟ କରି
୨-କ. ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।    ୪-କ. କର୍ଣ୍ଣପରଂ

ଏମନ୍ତ ରୂପେ ତୁମ୍ଭେ ଜଗତ ପାତକ ନାଶ କର । ହେ ଦେବ ଦେବ କ୍ଷତ୍ରିୟ ବଂଶୋଦ୍ଭବ ତ୍ୱଂ ଜୟ ଜୟ । ଶରଣାଗତପରିପାଳନାୟ ସକଳ ମଙ୍ଗଳକରଣେ ଉତ୍କୃଷ୍ଟୋ ଭବ ।

**ଦିନମଣିମଣ୍ଡଳମଣ୍ଡନ । ଭବ ଖଣ୍ଡନ ।**
**ମୁନିଜନ-ମାନସ-ହଂସ । ଜୟ ଜୟ ଦେବ ହରେ[୧] ॥ ୨ ॥**

ହେ ଦେବ ତ୍ୱଂ ଦିନମଣି ମଣ୍ଡଳ ମଣ୍ଡନ । ଦିନମଣେଃ ସୂର୍ଯ୍ୟମଣ୍ଡଳସ୍ୟ ମଣ୍ଡନ । ଦିନମଣି ଯେ ସୂର୍ଯ୍ୟ ତାହାର ମଣ୍ଡଳକୁ ତୁମ୍ଭେ ଅଳଙ୍କାର ରୂପେ ମଣ୍ଡନ କରିଛ । ସେ ସୂର୍ଯ୍ୟମଣ୍ଡଳ ମଧ୍ୟେ ପଦ୍ମାସନ ହୋଇ ହିରଣ୍ମୟ ଦେହ ନାନାଳଙ୍କାରେ ଭୂଷିତ ଶଙ୍ଖଚକ୍ର ଧରି ସେ ମଣ୍ଡଳକୁ ଶୋଭା କରାଇଁ ଜ୍ୟୋତି ପ୍ରକାଶ କରାଇଁ ତ୍ରୈଲୋକ୍ୟମଣ୍ଡଳକୁ ମଣ୍ଡନ କରାଇଁଅଛ । ଏମନ୍ତ ରୂପକୁ ଧ୍ୟାନ କରନ୍ତି ଯେ ପ୍ରାଣୀମାନେ ତାହାଙ୍କର ତ୍ୱଂ ଭବଖଣ୍ଡନ । ଭବ ଯେ ସଂସାର ତାହା ଖଣ୍ଡନ କର । ମୁନିଜନ ମାନସ ହଂସ । ମୁନିନାଂ ମୌନବର୍ତ୍ତୀ ବୈଷ୍ଣବାନାଂ ମନ ସରସି ହଂସରୂପେଣ ମନ ଭାବମାନଃ । ଅଥବା ମୁନିଜନମାନସ ଏବ ହଂସୋ ଯସ୍ୟ । ହେ ହରେ ତୁମ୍ଭର ପାଦପଦ୍ମାମୃତ ସରୋବରରେ ସେ ମୁନିମାନଙ୍କର ମନହଂସ-ମାନଙ୍କର ପ୍ରୀତ ହୋଇଁ କ୍ରୀଡ଼ା କରୁଥାଏ । ଏ ହେତୁ ମୁନିମାନଙ୍କର ପରମହଂସ ପକ୍ଷୀ ।

**କାଳୀୟବିଷଧରଗଞ୍ଜନ । ଜନରଞ୍ଜନ ।**
**ଯଦୁକୁଳନଳିନଦିନେଶ । ଜୟ ଜୟ ଦେବ ହରେ[୨] ॥ ୩ ॥**

ହେ ଦେବ ! କାଳିନ୍ଦୀ ହ୍ରଦ ଦର୍ପିତ କାଳୀୟ ବିଷଧର ନାମା ନାଗସ୍ୟ ଦର୍ପ ଗଞ୍ଜନତ୍ୱଂ । ବୃନ୍ଦାବନ କ୍ରୀଡ଼ା କାଳେ କାଳୀୟ ନାଗର ଦର୍ପ ଗଞ୍ଜନ । ଯଦର୍ଥଂ । ଯେ ନିମିତ୍ତ ଗଞ୍ଜିଲେ ତାହା କହିବା । ନିର୍ବିଷାମୃତ ଜଳପାନାବଗାହନ ସନ୍ତୋଷଣାର୍ଥଂ ନିର୍ବିଷ କରି ଅମୃତଜଳ ଭୋଗ କରାଇଁ ଅତ୍ୟନ୍ତ ପବିତ୍ର କରାଇଁ ଜନରଞ୍ଜନ କଲେ । ଯଦୁକୁଳ ନଳିନ ଦିନେଶ । ଯଦୋର୍ବଂଶ ଏବ ନଳିନ ତସ୍ମିନ୍ ଦିନେଶ ସୂର୍ଯ୍ୟ ସ୍ୱଂ । ଯଦୁ ଭୋଜ ଅନ୍ଧକ କୁକୁରବଂଶାଦି ଆଦିକରି ଯେ ସାତ୍ତ୍ୱବଂଶ । ସେମାନେ ନଳିନ ପଦ୍ମବନ ହୋଇଲେ । ତୁମ୍ଭେ ତହିଁ ଦିନେଶ । ସୂର୍ଯ୍ୟ ପ୍ରାୟେ ପ୍ରକାଶକ । ପଦ୍ମବନେ ଯେମନ୍ତ ସୂର୍ଯ୍ୟକୁ ଦେଖିଲେ ହରଷ ହୋଇ ଫୁଟନ୍ତି ନ ଦେଖିଲେ ମୁଦ୍ରିତ ବ୍ୟାକୁଳ ହୁଅନ୍ତି । ସୂର୍ଯ୍ୟ ଯେମନ୍ତ ତାହାଙ୍କର ବ୍ୟାକୁଳ ଅନ୍ଧକାର ଭୟ

---

୧-କ. ଜୟ ଜଗଦୀଶ ହରେ ।

୨-କ. ଜୟ ଜଗଦୀଶ ହରେ ।

ନାଶ କରନ୍ତି ସେହିମାନଙ୍କ ତାହାଙ୍କର ବଂଶ ଉଦୟ ହୋଇ ଜନ୍ମମରଣ ଅହଂକାର ମମତ୍ୱ ମିଥ୍ୟା ଜ୍ଞାନ ଅହଂକାର ଭୟ ବ୍ୟାକୁଳ କଷ୍ଟାଦି ସକଳ ଦୁଃଖ ନାଶ କଲ । ଅଥବା କାଳ ଏବ କାଳୀୟ ହେ ହରେ ନିମେଷାଦି ବତ୍ସରାନ୍ତ ଯେ କାଳ ଏ ବଡ଼ ବ୍ୟାପାରାନ୍ତ ରୂପ ଧରି ପ୍ରାଣୀମାନଙ୍କୁ ଗିଳୁଛି । ଏହାର ଉପରେ ଯେ ପ୍ରାଣୀ ତୁମ୍ଭର ପଦାରବିନ୍ଦେ ଶରଣ ପଶଇ ତାହାର ମରଣ ରୂପ କାଳକୁ ତୁମ୍ଭେ ଗଞ୍ଜନ କର । ହେ ହରେ ତ୍ୱଂ ଜୟ ଜୟ । ଅସୁରପକ୍ଷବିନାଶାୟ ସାଧୂନେଷ ପ୍ରତିପାଳୟ ।

**ମଧୁମୁରନରକବିନାଶନ । ଗରୁଡ଼ାସନ ।**
**ସୁରକୁଳ କେଳିନିଦାନ । ଜୟ ଜୟ ଦେବ ହରେ ॥ ୪ ॥**

ହେ ହରେ ! ତୁମ୍ଭେ ଅବତାରଣେ ପରମ ମଙ୍ଗଳ ଶ୍ରୀକୃଷ୍ଣ ରୂପେଣ ମଧୁ ଦୈତ୍ୟ, ମୁର ଦୈତ୍ୟ, ନରକାସୁର ଏମାନଙ୍କୁ ନାଶ କଲ ଅଥବା ହେ ଗରୁଡ଼ାସନ ! ତୁମ୍ଭର ସ୍ମରଣ ଗଲି ପ୍ରାଣୀମାନଙ୍କର ମଧୁ ଯେ ସଂସାର ମୋହରସ ମୁର ଯେ ମୂଢ଼ ଜ୍ଞାନ ଅର୍ଥାତ୍ ନରକ ଯେ ଅଧୋଗମନ ଏହା ବିନାଶ କର । ହେ ଦେବସୁର କେଳି ନିଦାନ ତୁମ୍ଭେ ସୁର କେଳି ଦେବ ସମୂହସ୍ୟ କେଳି ନିଦାନାଦି କାରଣ ଅଟ । ଅସାଧୁମାନଙ୍କୁ କ୍ଷୟ କରି ସ୍ୱର୍ଗାଦି ସପ୍ତଲୋକ ସମୃଦ୍ଧିକୁ ହେତୁ ଅଟ । ହେ ହରେ ତ୍ୱଂ ଜୟ ଜୟ ।

**ଅମଳକମଳଦଳଲୋଚନ । ଭବମୋଚନ ।**
**ତ୍ରିଭୁବନଭବନନିଧାନ । ଜୟ ଜୟ ଦେବ ହରେ ॥ ୫ ॥**

ହେ ଅମଳ ! ନିର୍ଲେପ ସ୍ୱପ୍ରକାଶ ପରମାନନ୍ଦ ରୂପ ତ୍ୱଂ । ହେ କମଳ ଦଳ ଲୋଚନ । କମଳଂ ଦଳନ୍ତି କଂ ସଂସାରଜଳଂ ଜଡ଼ଂ ଦଳନ୍ତି । ହେ ଦେବ ! ତୁମ୍ଭର ଯେ ଲୋଚନ ଚକ୍ଷୁର୍ଦ୍ଦିକ ଦୃଷ୍ଟାନ୍ତ ଯେ, ପ୍ରାଣୀମାନେ ତାହାଙ୍କର ବାସନା ରୂପ ସଂସାର ଜଳ ଯେ ଜଡ଼ ତାହାକୁ ଦଳଇ, ନାଶ କରଇ । ଭବମୋଚନଭବ ଯେ ଜନ୍ମମରଣାଦି ଦୁଃଖ ତାହା ମୋଚନ କରଇ । ଦୁଃଖ ବନ୍ଧନ କର୍ମ ସଂସାରରୁ ମୁକ୍ତ କରଇ । ଯତସ୍ତ୍ୱଂ ନିର୍ଗୁଣଃ । ଯେଣୁକରି ତୁମ୍ଭେ ସତ୍ତ୍ୱରଜତମସାଂ ତ୍ରିଗୁଣାନାଂ ପ୍ରଭୁଃ । ପରମାତ୍ମା ତୁମ୍ଭେ ପୁଣି କେମନ୍ତ ଅଟ । ବନଭବନ ନିଧାନ । ବନଂ ଜଳଂ ତସ୍ୟ ଭବନାନି ଗୃହାକାରାଣି ସମୁଦ୍ରାଦ୍ୟେଷାଂ ନିଧାନ । ଆବରଣା କାରଣ ନାନ୍ୟପୂର୍ଣ୍ଣସ୍ତ୍ୱଂ । ବନ ଯେ ଜଳ ତାହାର ଭବନ ଯେ ଗୃହାକାର ସମୁଦ୍ରମାନଙ୍କୁ ତଟ ରୂପେ ଆବୋରିଛ ଜଳରୂପେ ପୂରି ପୃଥ୍ୱୀ ରୂପେ ଧରିଛ । ଏଣୁକରି ଆଦି-ନାରାୟଣ ତ୍ୱଂ ।

---

୧-୫. ମୁର କୁଳ

**ଜନକସୁତାକୃତଭୂଷଣ । ଜିତଦୂଷଣ ।**
**ସମରଶମିତଦଶକଣ୍ଠ । ଜୟ ଜୟ ଦେବ ହରେ ॥ ୭ ॥**

ଜନକସୁତସ୍ୟାକୃତେ ଭୂଷଣ ଯସ୍ୟ । ଜନକ ଯେ ବ୍ରହ୍ମା ତାହାର ସୁତ ଯେ ଜୀବନଂ ତାହାର ଆକୃତ ଯେ ମାୟା ସେ ମାୟାକୁ' ମହଦହଂକାରାଦି ଅଳଙ୍କାରେ କରି ଭୂଷଣ କରି ସଜ କରାଇଛ । ମହଦ୍‌ବୁଦ୍ଧି ଅହଂକାର ମନ ଗମନ ସମୀରଣ ତେଜ ଜଳ ପୃଥିବୀ ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧ ଇତ୍ୟାଦିମାନଙ୍କରେ କରି ମାୟାକୁ ବେଗ କରି ତାହାକୁ ବନ୍ଧିଛ । ତେଣୁକରି ମାୟାଭୂଷଣ ତୁମ୍ଭେ ଜିତ ଦୂଷଣ ସ୍ୱଭାବେ ତୁମ୍ଭେ ଅଜିତ । ଯେଣୁକରି ତୁମ୍ଭଙ୍କୁ ଶରଣ ଗଲା ପ୍ରାଣୀମାନଙ୍କର ଦୂଷଣ ଯେ କାଳ ତାହାକୁ ତୁମ୍ଭେ ନାଶ କର, ପରମ ସୁଖ ଦିଅ ।[୩] ହେ ସମର ଶମିତ । ରସେନ ସହ ବର୍ତ୍ତମାନ ସମରଙ୍ଗ ବିଷୟାରଙ୍ଗ । ଧର୍ମାର୍ଥ କାମ ଯେ ରସ ଏଣେ ଯୁକ୍ତ ହୋଇଛି ଯେ ବିଷୟ ରମ ସେ ରସକୁ ମାତ୍ର ପ୍ରମାଣ କରଇ ଯେ ସେ ତୁମ୍ଭେ । ହେ ଦଶକଣ୍ଠ ଦଶାନାଂ କଣ୍ଠଂ ଦଶକଣ୍ଠଂ । ଦଶ ଇନ୍ଦ୍ରିୟର ଶିରଂଧେ ମନ ସେ ମନକୁ ମାୟାରେ କରି ଠକଇ ଯେ ତସ୍ୟ ସମ୍ବୋଧନେ ହେ ଦଶକଣ୍ଠ ଅଥବା ହେ ହରେ ! ଜନକସୁତା ଯେ ସୀତା ତାହାଙ୍କୁ ଭୂଷଣ କଲ । ସେ ସୀତା ବିଯୋଗେଂ ପଞ୍ଚବଟୀ ବନରେ ଖର ଦୂଷଣ ରାକ୍ଷସଙ୍କୁ ଜିଣିଲ । ସଂଗ୍ରାମରେ ଶମିତ କଲ । କାଟିଲ ଦଶକଣ୍ଠ ରାବଣ ରାକ୍ଷସଙ୍କୁ ।

**ଅଭିନବ ଜଳଧର ସୁନ୍ଦର । ଧୃତମନ୍ଦର ।**
**ଶ୍ରୀମୁଖଚନ୍ଦ୍ରଚକୋର, ଜୟ ଜୟ ଦେବ ହରେ ॥ ୭ ॥**

(ହେ ଦେବ ! ଅଭି ମଙ୍ଗଳୋଦ୍ଭବେନ ସର୍ବପ୍ରକାରେଂ ତୁମ୍ଭେ ନବ ନିତ୍ୟ ନୂତନ ଭକ୍ତ ପ୍ରତିପାଳନ ରୂପ ହୋଇ ଭକ୍ତକୁ ସନ୍ତୋଷକର । ତୁମ୍ଭେ ନବ ଜଳଧର ।[୪] ଅଭିନବ ଜଳଧର ସୁନ୍ଦର । ଜଳଧର ଏ ପୃଥିବୀରେ ଯେ ନବପ୍ରକାର ଜଳ ସମୁଦ୍ରମାନଙ୍କରେ ଅଛି । ଲବଣ, ଇକ୍ଷୁ , ସୁରା, ସର୍ପି, ଦଧି, ଦୁଗ୍ଧ, ସ୍ୱାଦୁ ଜଳ କାରଣ୍ୟ ଜଳ, ଗଙ୍ଗା । ଏତେକ ନବଜଳକୁ ତୁମ୍ଭେ କୂର୍ମ ରୂପ ହୋଇ ଧରିଛ । ତୁମ୍ଭେ ସୁନ୍ଦର, ମାୟାଜିତ ଜଗନ୍ମୋହନ । ତୁମ୍ଭେ ଧୃତ ମନ୍ଦର । ଦେବାସୁର ଅମୃତ ମନ୍ଥନ କାଳେ ସ୍ତମ୍ଭ ରୂପେ ଧରିଲ ମନ୍ଦର ପର୍ବତକୁ ।

---

୧-ଙ. ଜୀବ — ୩-ଙ. ସୁଖ ଦେଅ ।
୨-ଙ. ଯେ ମାୟାକୁ — ୪-ଙ. ପୋଥିରେ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।

ହେ ଶ୍ରୀମୁଖଚନ୍ଦ୍ରଚକୋର । ଶ୍ରୀ ଯେ ଲକ୍ଷ୍ମୀ ସେ ତୁମ୍ଭର ମୁଖଚନ୍ଦ୍ର ଚକୋର ଅଟଇ । ଚକୋର ଯେମନ୍ତ ଚନ୍ଦ୍ରଙ୍କୁ ଚାହିଁ ରହିଲ ସେହିମନ୍ତ ଲକ୍ଷ୍ମୀ ତୁମ୍ଭର ମୁଖଚନ୍ଦ୍ରଙ୍କୁ ଚାହିଁ ଜୀବନ ବହଇ ଅଥବା ନବଜଳଧର ଯେ ନୂତନ ମେଘ ତାହାର ପ୍ରାୟେ ଦେହର ଆଭା ସୁନ୍ଦର ଅଟଇ । ଧୃତ ମନ୍ଦର, ଟେଟକୁ ଧରି ଗୋକୁଳକୁ ରକ୍ଷାକଲ । ହେ ଦେବ ହରି ଜୟ ଜୟ !

**ଶ୍ରୀ ଜୟଦେବକବେରିଦମ୍ । କୁରୁତେ ମୁଦମ୍ ।**
**ମଙ୍ଗଳମୁଜ୍ଜ୍ୱଳ ଗୀତମ୍ । ଜୟ ଜୟ ଦେବ ହରେ ॥ ୮ ॥**

ଜୟଦେବ କବି ବୋଲୁଛନ୍ତି ହେ ବୈଷ୍ଣବ ଜନମାନେ ! ଶୁଣ ଇଦଂ ଗୀତଂ । ଏ ଗୀତ ଶ୍ରବଣ କୀର୍ତ୍ତନ ମାତ୍ରକେ ମୁଦଂ କୁରୁତେ । ପରମ ହର୍ଷ କରଇ, ସକଳ ଦୁଃଖ ଖଣ୍ଡଇ, ମଙ୍ଗଳ କରଇ ! ଅମଙ୍ଗଳ ନାଶ କରଇ । ଉଜ୍ଜ୍ୱଳ ଅଟଇ । ଶୁଣିବାମାନଙ୍କ ଅନ୍ତଃକରଣକୁ ଉଜ୍ଜ୍ୱଳ କରଇ, ନିର୍ମଳ କରଇ ।

**ଶ୍ଳୋକ**—

**ପଦ୍ମାପୟୋଧରତଟୀପରିରମ୍ଭଲଗ୍ନ-**
**କାଶ୍ମୀରମୁଦ୍ରିତମୁରୋ ମଧୁସୂଦନସ୍ୟ ।**
**ବ୍ୟକ୍ତାନୁରାଗମିବ ଖେଳଦନଙ୍ଗଖେଦ-**
**ସ୍ୱେଦାମ୍ବୁପୂରମନୁପୂରୟତୁ ପ୍ରିୟଂ ବଃ ॥ ୯ ॥**

ଜୟଦେବ କବି ବୋଲୁଛନ୍ତି—ହେ ଭକ୍ତଜନମାନେ ! ଶୁଣ । ଶ୍ରୀ ବାସୁଦେବର ଉରୁ ଯେ ବକ୍ଷସ୍ଥଳ ତୁମ୍ଭମାନଙ୍କର ପ୍ରିୟଂ, ଆକାଙ୍କ୍ଷିତ ମନୋବାଞ୍ଛିତମନୁପୂରୟନ୍ତୁ । ଧର୍ମାର୍ଥ କାମମୋକ୍ଷାଦି ଚତୁର୍ବର୍ଗ । ଅନୁପୂରୟନ୍ତୁ । ପୁନଃ ପୁନଃ ପୂରଣ କରନ୍ତୁ । ଶ୍ରୀ ବାସୁଦେବଙ୍କର ଉରୁ ବକ୍ଷସ୍ଥଳଂ କିଂ ଭୂତଂ । ସେ ବାସୁଦେବଙ୍କର ବକ୍ଷସ୍ଥଳ କେମନ୍ତ ଅଟଇ ? ପଦ୍ମା ପୟୋଧର ତଟୀ ପରିରମ୍ଭ ଲଗ୍ନ କାଶ୍ମୀର ମୁଦ୍ରିତଂ । ପଦ୍ମା ଯେ ଲକ୍ଷ୍ମୀ ତାହାଙ୍କର ପୟୋଧର ତଟୀ ଦୁଇ କୁଚମଣ୍ଡଳ ପର୍ଯ୍ୟନ୍ତ । ସେ କୁଚମଣ୍ଡଳେ ଚିତ୍ର ହରିକି ଆଲିଙ୍ଗନ କରିବାବେଳେ ଲଗ୍ନ ଲାଗିକରି ମୁଦ୍ରିତଂ ଲେପିଲା ପ୍ରାୟେ ହୋଇ ଦିଶୁଛି । କାଶ୍ମୀର କୁଙ୍କୁମଂ ପଙ୍କ । କାଶ୍ମୀର କୁଙ୍କୁମ ପଙ୍କରେ । ପୁନଃ କିଂ ଭୂତଂ ବ୍ୟକ୍ତାନୁରାଗଂ ପ୍ରକାଶିତଂ ସ୍ନେହରୂପଂ । ବାହ୍ୟ ପ୍ରତ୍ୟକ୍ଷ ହୋଇ ବାହାରକୁ ପ୍ରକାଶ ଦିଶୁଛି । ସ୍ନେହାନୁରାଗଦ୍ୟୋ ଯହିଁରେ । ପୁନଃ କିଂ ଭୂତଂ ଖେଳଦନଙ୍ଗଖେଦଂ । ଖେଳୁଛି କ୍ରୀଡ଼ାରୂପ ହୋଇ କନ୍ଦର୍ପର ଖେଦ ଯହିଁରେ । ଦେଖନ୍ତା ପ୍ରାଣୀମାନଙ୍କର ଚିତ୍ତକୁ ସକାମ ବ୍ୟଥା ଜାତ କରୁଅଛି ଯହିଁ । ପୁନଃ କିଂ ଭୂତଂ । ସ୍ୱେଦାମ୍ବୁପୂରଂ । ସ୍ୱେଦଜଳପୂର୍ଣ୍ଣ ରତି ଶ୍ରମେ କରି ଝାଳମାନେ ସଂପୂର୍ଣ୍ଣ ହୋଇ ସେମାନଙ୍କର ଅଙ୍ଗେ କ୍ଷୁଦ୍ର ମୁକ୍ତାମାନ ଗୁନ୍ଥିଲା ପ୍ରାୟେ ଶୋଭା

ପାଉଛୁ ଯଣ୍ଡରେ । ଏମନ୍ତ ଯେ ବାସୁଦେବଙ୍କର ଉରୁ ଯେ ବକ୍ଷସ୍ଥଳ ସେ ଯୁଷ୍ମାକଂ ତୁମ୍ଭମାନଙ୍କର ସର୍ବକାମ ଫଳ ଦେଉ ।

**ବସନ୍ତେ ବାସନ୍ତୀକୁସୁମସୁକୁମାରୈରବୟବୈ-**
**ର୍ଭ୍ରମନ୍ତୀଂ କାନ୍ତାରେ ବହୁବିହିତକୃଷ୍ଣାନୁସରଣାମ୍ ।**
**ଅମନ୍ଦଂ କନ୍ଦର୍ପଜ୍ୱରଜନିତଚିନ୍ତାକୁଳତୟା**
**ବଳଦ୍‌ବାଧାଂ ରାଧାଂ ସରସମିଦମୂଚେ ସହଚରୀ ।। ୬ ।।**

ବସନ୍ତେ ବସନ୍ତକାଳେ ସହଚରୀ ସଖି ରାଧାଂ ଇଦଂ ସରସଂ କୋମଳଂ ଉଚେ ବକ୍ଷ୍ୟମାଣମର୍ଥଃ । ଜୟଦେବ କବି ବୋଲୁଛନ୍ତି—ହେ ବୈଷ୍ଣବଜନମାନେ ଶୁଣ । ବସନ୍ତକାଳେ ସହଚରୀ ଯେ ଦୂତୀ ସେ ରାଧାଙ୍କୁ ବୋଲିବାର ଯୋଗ୍ୟ ଯେ ବଚନ ତାହା ବୋଲୁଛି । ସେ ବଚନ କେମନ୍ତ ଅଟଇ । ସରସଂ । ରସେନ ସହ ବର୍ତ୍ତମାନଂ ରତି ଉଲ୍ଲାସଯୁକ୍ତଂ । ରତି ରସରେ ଉଲ୍ଲାସ ଯୁକ୍ତ ଅଟଇ ପୁନଃପୁନଃ କଂ ଭୂତଂ ବଚଃ । ପୁଣି ସେ ବଚନ କେମନ୍ତ ଅଟଇ । ଅତ୍ୟନ୍ତ ମଧୁର ଯୁକ୍ତଂ । ଅତ୍ୟନ୍ତ ମଧୁର ଅଟଇ । ତାଂ ରାଧାଂ କଂ ଭୂତାଂ । ସେ ରାଧା ପୁଣି କେମନ୍ତ ଅଟଇ[1] ? କାନ୍ତାରେ । କଣ୍ଟକାଦି ଦୁର୍ଗମେ ଭ୍ରମନ୍ତୀଂ । କୈଃ—କେଉଁଣେ କରି । ବାସନ୍ତୀ-କୁସୁମ ସୁକୁମାରୈରବୟବୈଃ । ବାସନ୍ତୀ କୁସୁମ ଯେ ମାଧବୀ ପୁଷ୍ପ ତାହାର ପ୍ରାୟେ ସୁକୁମାର କର ଚରଣୈଃ—କର ଚରଣେ କରି କୃଷ୍ଣଙ୍କୁ ଅନୁସରି ଖୋଜୁଛନ୍ତି । ପୁନଃ କଂ ଭୂତାଂ । ପୁଣି ସେ ରାଧା କେମନ୍ତ ଅଟନ୍ତି ? ଅମନ୍ଦଂ କନ୍ଦର୍ପଜ୍ୱର ଜନିତ-ଚିନ୍ତାକୁଳତୟା ବଳଦ୍ ବାଧାଂ । ଅମନ୍ଦ ଯେ କନ୍ଦର୍ପ[3] ଅତ୍ୟନ୍ତ ଚଞ୍ଚଳ କନ୍ଦର୍ପ ଜ୍ୱର ତହୁଁ ଜାତ ହୋଇଲା ଯେ ଚିନ୍ତା ସେ ଚିନ୍ତାକୁଳେ କରି ବଳିଲା ବାଧା ମନୋଦୁଃଖ ଯାହାର । ଏମନ୍ତ ଯେ ରାଧା ତାହାଙ୍କୁ ଦୂତୀ ବୋଲୁଛନ୍ତି ।

**ଗୀତ—**

(ବସନ୍ତରାଗେଣ ଗୀୟତେ)

**ଲଳିତଲବଙ୍ଗଲତାପରିଶୀଳନକୋମଳମଳୟସମୀରେ**
**ମଧୁକରନିକରକରମ୍ବିତକୋକିଳକୂଜିତକୁଞ୍ଜକୁଟୀରେ ।**
**ବିହରତି ହରିରିହ ସରସବସନ୍ତେ ।**
**ନୃତ୍ୟତି ଯୁବତୀଜନେନ ସମଂ ସଖି ! ବିରହୀଜନସ୍ୟ ଦୁରନ୍ତେ**
(ଧ୍ରୁବପଦମିଦଂ ।)

ଦୂତୀ ବୋଲୁଛନ୍ତି ହେ ରାଧେ ! ତୁମ୍ଭେ ଯେ ଶ୍ରୀକୃଷ୍ଣଙ୍କୁ ଅନ୍ୱେଷଣ କରି ବନରେ ବୁଲୁଛ । ସେ କୃଷ୍ଣର ମହିମା । ହରିଃ ହରଣଶୀଳଃ । ହେ ସଖି ! ସ୍ୱଭାବ

[1]-କ. ଯୁବତୀ
[2]-ଖ. ଅଟନ୍ତି
[3]-ଙ. 'କନ୍ଦର୍ପ' ନାହିଁ ।

ତାହାଙ୍କର କହିବା ? ସେ ଆପଣାର ଶରଣାଗତ ପ୍ରାଣୀମାନଙ୍କର ଆର୍ତ୍ତି ହରଇ । ଏଣୁକରି ତାହାଙ୍କର ନାମ ହରି ।[୧] ସର୍ବଭୂତେଷୁ ବିହରନ୍ତି ମାଧୁର୍ଯ୍ୟା । ଇହ ସଂସାରରେ ସରସ ବିଷୟ ରସ ସଂଯୋଗେ ବସନ୍ତେ ବସନ୍ତାଦ୍ଵ ବସନ୍ତଃ । ଏ ଭୂମିରେ ସ୍ଥାବରାଦି ଯେତେ ଜୀବ ଦେହଭୂମାନେ ବସିଛନ୍ତି ସେ ଦେହମାନଙ୍କରେ ଅତି ସୂକ୍ଷ୍ମ ମନୋମୟ ଆତ୍ମାରୂପ ହୋଇ ବିହରନ୍ତି କ୍ରୀଡ଼ନ୍ତି । ନାନାପ୍ରକାରେ କ୍ରୀଡ଼ା କରୁଛନ୍ତି । ହେ ସଖି ! ନୃତ୍ୟତି ଯୁବତୀ ଜନେନ ସମଂ । ଯୁବତୀ ଜନ ଯେ ଇନ୍ଦ୍ରିୟ ଗଣମାନ ତାହାଙ୍କର ସଙ୍ଗତେ ନୃତ୍ୟ କରୁଛନ୍ତି । ହେ ସଖି ! ସେ ହରି ବିରହି ଜନସ୍ୟ ଦୁରନ୍ତେ ସଂସାର ମଧ୍ୟ ଯେମାନେ ସଂସାରୀ ତାହାଙ୍କଠାରୁ ଦୂରେ ଥାନ୍ତି । ବୈଷ୍ଣବ ଜନସ୍ୟ ଅନ୍ତେ ସମୀପେ । ସୁଭକ୍ତ ଜନ ମାନଙ୍କର ସମୀପେ ଥାନ୍ତି । ଇଦାନୀଂ ବସନ୍ତ ବର୍ଣ୍ଣନେ ବ୍ୟାଖ୍ୟାନଂ[୨] । ବସନ୍ତେ ବସନ୍ତକାଳେ ସେ ହରି ଯୁବତୀ ଯେ ଗୋପୀମାନେ ତାହାଙ୍କର ସଙ୍ଗେ ନୃତ୍ୟ କରି କ୍ରୀଡ଼ା କରି ଭ୍ରମୁଛନ୍ତି । ସେ ବସନ୍ତ କାଳ କେମନ୍ତ ତାହା ଶୁଣ । ବିରହି ଜନସ୍ୟ ଦୁରନ୍ତେ । ବିରହି ଜନ ଯେ କାନ୍ତା ବିଚ୍ଛେଦ ଜନ ସେମାନଙ୍କୁ ସେ ବସନ୍ତ କାଳ ଅତି ଦୁରନ୍ତ ହୋଇଛି । ଅତି କଷ୍ଟ ନ ସହୁଛି । ହେ ସଖି ! ସେ ବସନ୍ତ କାଳର ଗୁଣ କହିବା ଶୁଣ । ଲଳିତ ଅତି ରମଣୀୟ ପୁଷ୍ପିତ ଯେ ଲବଙ୍ଗଲତାର ଭିତରେ ବାହାରେ ମଳୟ ପବନ ମିଳି କରି ସଂସ୍ପର୍ଶ ହୋଇ ପ୍ରାଣୀମାନଙ୍କର ଦେହକୁ ମନ୍ଦଗନ୍ଧ ସୁଶୀତଳ ହୋଇଁ ବହୁଛି । ଅତ୍ୟନ୍ତ କୋମଳେ । ପୁନଃ କିଂ ଭୂତେ । ବସନ୍ତ କାଳକୁ କି ବର୍ଣ୍ଣିବା ? ମଧୁକର ଯେ ଭ୍ରମର ତାହାଙ୍କର ନିକର ଯେ ସମୂହ ତାହାଙ୍କର କରମ୍ବିତ ଯେ ଶବ୍ଦ ସେ ଶବ୍ଦ କୋକିଳମାନଙ୍କର ଶବ୍ଦେ ମିଶାଇ କରି ଅତି ମନୋହର ହୋଇ କୁଞ୍ଜଲତା କୁଟୀରମାନଙ୍କରେ ଶୁଭୁଛି ।

**ଉନ୍ମଦମଦନମନୋରଥପଥିକବଧୂଜନଜନିତବିଳାପେ**
**ଅଳିକୁଳସଂକୁଳକୁସୁମସମୂହନିରାକୁଳବକୁଳକଳାପେ ॥ ୬ ॥**

ହେ ସଖି ! ତସ୍ମିନ୍ ବସନ୍ତେ ପଥିକ ବଧୂଜନ ମନୋରଥଃ ଉନ୍ମଦ ମଦନ ମଦନୋନ୍ମତ୍ତ ସନ୍ ଜନିତ ବିଳାପେ । ହେ ସଖି ସେ ବସନ୍ତ କାଳେ ପ୍ରବାସକୁ ପଥିକ ହୋଇ ଗଲେ ସେମାନେ ତାହାଙ୍କର ଘରେ ଅଛନ୍ତି ଯେ ଭାର୍ଯ୍ୟାମାନେ ତାହାଙ୍କର ମନରେ ମଦନ ଯେ କନ୍ଦର୍ପ ଉନ୍ମତ୍ତ ହୋଇଁ ଜନିତ ଜାତ କଲା ସ୍ଵାମୀ ବିଚ୍ଛେଦ ବିଳାପ ଶୋକ ଦୁଃଖରେ ସେ ବସନ୍ତ କାଳକୁ କି ପ୍ରକାରର କହିବା । ଭ୍ରମର ସମୂହ ବ୍ୟାପ୍ତ ପୁଷ୍ପରାଶି ଆମାନ୍ତ ବକୁଳ ସମୂହେ । ଅଳିକୁଳ ଯେ ଭ୍ରମର

୧-ଖ. 'ସେହିନ୍ତ' ଅଧିକ ପାଠ ଅଛି ।
୨-ଖ. ବ୍ୟାଖ୍ୟାନଂ ।

ସମ୍ଭୂତ ସେମାନେ ବହୁତ ପୁଷ୍ପ ଗନ୍ଧଳ ଦେଖି ନବାଙ୍କୁରେ ଅତ୍ୟନ୍ତ ଆନନ୍ଦ ହୋଇ ବକୁଳ କଳାପେ ଯେ ବକୁଳ କୁସୁମମାନଙ୍କରେ ବସି ମଧୁପାନ କରୁଛନ୍ତି ଯହିଁରେ ।

**ମୃଗମଦସୌରଭରଭସବଶମ୍ବଦନବଦଳମାଳତମାଳେ ।**
**ଯୁବଜନହୃଦୟବିଦାରଣମନସିଜନଖରୁଚିକିଂଶୁକଜାଳେ ॥ ୩ ॥**

ମୃଗମଦ ଯେ ମୃଗନାଭି କସ୍ତୁରୀ ଗନ୍ଧାଧିକରମ୍ୟ ସୁଗନ୍ଧ ନବପତ୍ର ସମ୍ପନ୍ନ ତମାଳ ବୃକ୍ଷଯୁକ୍ତେ । ହେ ସଖି ! କସ୍ତୁରୀ ଗନ୍ଧେ ସୁଗନ୍ଧ ହୋଇ ନୂତନ ନବପଲ୍ଲବ ତମାଳ ବୃକ୍ଷମାନେ ବିକାଶୁଛନ୍ତି ଯହିଁରେ । ହେ ସଖି ! ଦେଖ କୌତୁକ । ଯୁବକ-ଜନମାନଙ୍କ ହୃଦୟକୁ ବିଦାରଣ କରନ୍ତେ[୧] ମନସିଜ ଯେ କନ୍ଦର୍ପ ତାହାର ନଖ ଯେମନ୍ତ ସୁନ୍ଦର ହୋଇ କିଂଶୁକ ଜାଲ ଯେ ପଳାଶ ପୁଷ୍ପର କଳିମାନେ ବିରାଜୁଛନ୍ତି ଯହିଁରେ ।

**ମଦନମହୀପତିକନକଦଣ୍ଡରୁଚିକେଶରକୁସୁମବିକାଶେ ।**
**ମିଳିତଶିଳୀମୁଖପାଟଳିପଟଳୀକୃତସ୍ମରତୂଣବିଳାସେ ॥ ୪ ॥**

ହେ ସଖି ! ମଦନ ମହୀପତି ହାଦେ କନ୍ଦର୍ପ ଯେ ବସନ୍ତ କାଳେ ରାଜା ହୋଇଛନ୍ତି । ସେ କନ୍ଦର୍ପ ରାଜାର ବିଜୟାର୍ଥ କନକ ଦଣ୍ଡ ସୁବର୍ଣ୍ଣ ବୃନ୍ତ ପାଟଛନ୍ତି ତାହାର ପାଟପୁ ରୁଚିର ସୁନ୍ଦର ହୋଇ କେଶର କୁସୁମ ଯେ ନାଗେଶ୍ୱର ପୁଷ୍ପ ବିକାଶ ହୋଇଛି ଯହିଁରେ ମିଳିତ ଶିଳୀମୁଖ ପାଟଳିପଟଳ । ମିଳିତାଃ ଶିଳୀମୁଖାଃ ପାଟଳି ଫଟଳେଷୁ ଯତ୍ର । ଶିଳୀମୁଖ ଯେ ଭ୍ରମରମାନେ ମକରନ୍ଦ ଲୋଭେ ମଧୁପାନ କରିବାକୁ ବସିଲେ ପାଟଳି କୁସୁମମାନଙ୍କରେ । ସେ ଭ୍ରମରମାନଙ୍କରେ କରି ପାଟଳି ପୁଷ୍ପମାନ ଯେମନ୍ତ ଦିଶୁଛି ତାହା ଶୁଣ । ସ୍ମର ଯେ କନ୍ଦର୍ପ ଆପଣାର ତୂଣ ଜବ । ଲୋହ ପୁଂଖ ବାଣମାନ ଯେମନ୍ତ କାଣ୍ଡ ଖାରଥିରେ[୨] ହୋଇଥିଲେ[୨] ହିଁ ସେହିମନ୍ତ ଦିଶୁଛନ୍ତି ପାଟଳି ପୁଷ୍ପ ଯହିଁରେ ।

**ବିଗଳିତଲଜ୍ଜିତଜଗଦବଲୋକନତରୁଣକରୁଣକୃତହାସେ ।**
**ବିରହିନିକୃନ୍ତନକୁନ୍ତମୁଖାକୃତିକେତକଦନ୍ତୁରିତାଶେ[୩] ॥ ୫ ॥**

ହେ ସଖି ! ବଡ଼ କୌତୁକ ଶୁଣ । ଯେ ବସନ୍ତ କାଳେ ଅତ୍ୟନ୍ତ କାମ ଖେଦେ କରି ପ୍ରାଣୀମାନଙ୍କର ବିଗଳିତ ବିଶେଷେ ଛାଡ଼ିଲେ ଲଜ୍ୟାକୁ ଜଗତରେ ।

---

୧-ଙ. ବିଦାରିବା ନିମିତ୍ତେଂ
୨-ଙ. ହୋଇଥିଲେଂ
୩-କ. ଦାଶେ

ତତସ୍ତଦନନ୍ତରେ [୧] ବିଗଳିତ ଲଜ୍ଜାଜନବତ ପୃଥିବ୍ୟାଂ ନାଳାହ୍ୱୟୁଗଳାଂ ଦୃଷ୍ଟ୍ୱା । ନବକରୁଣା ବୃକ୍ଷଲତା ଜୃଚ୍ଛ୍ୱାସେ ଉଚ୍ଛ୍ୱସନ୍ତି ଉଚ୍ଛ୍ୱାସଂ କଟେଷ୍ଟାର୍ଥଃ । ହେ ସଖି ! ବସନ୍ତ ସମୟେ ପ୍ରାଣୀମାନେ କାମବଶ ହୋଇ ବିଗଳିତ ଲଜ୍ଜା ହୋଇଲେ । ଜଗତ ଯାଙ୍କୁ ଦେଖି ତରୁଣ ନବପଲ୍ଲବ କରୁଣା ବୃକ୍ଷମାନେ ସେମାନଙ୍କର ଅଳ୍ପ ବିକାଶ ଯେ ପୁଷ୍ପମାନେ ସେହି ସେ ମୁଖ ହୋଇଲା । ତେଣେକରି ହସୁଅଛନ୍ତି । ସେମାନଙ୍କର ସେ ପୁଷ୍ପବନ୍ଦୋଚ୍ଚୂତନାଦ ପ୍ରାଗ ବସନ୍ତେ । ବିରହି ନିକୃନ୍ତନେ କୁନ୍ତମୁଖାକୃତ କେତକ ଦନ୍ତୁରିତାସେ । ହେ ସଖି ବିରହିଜନ ଯେ କାନ୍ତା ବିଯୋଗଜନ । ତେଷାଂ ନିକୃନ୍ତନ ମାରଣାର୍ଥଂ କାମ ଶୂଳାଗ୍ରବତ୍ । କେତକୀ ଦନ୍ତୁରିତାଶେ[୨] । ସ୍ୱାମୀ ନିକଟେ ନାହାଁନ୍ତି ଯେ ସ୍ତ୍ରୀମାନଙ୍କର ତାହାଙ୍କୁ ଗୁନ୍ଥିବା ନିମନ୍ତେ କୁନ୍ତ ଯେ ଶୂଳର ମୁନ ସେହିମନ୍ତ ହୋଇ । କେତକୀ ଦନ୍ତୁରିତାଶେ । କେତକୀ ବୃକ୍ଷମାନଙ୍କରେ କେତକୀ ପୁଷ୍ପମାନ ଦନ୍ତୁରି[୩] ଦନ୍ତ ପ୍ରାପ୍ତ ହୋଇ ଅଳ୍ପ ଅଳ୍ପ ଫୁଟିଲାକୁ ତାହାର ପ୍ରାପ୍ତେ ହୋଇ ଦିଶୁଛି ସହିଁରେ ।

**ମାଧବିକାପରିମଳଲଳିତେ ନବମାଳିକଯାତିସୁଗନ୍ଧୌ**
**ମୁନିମନସାମପି ମୋହନକାରିଣି ତରୁଣାକାରଣବନ୍ଧୌ ॥ ୭ ॥**

ହେ ସଖି ! ମାଧବିକା ଯେ ମାଧବୀ କୁସୁମ ତାହାର ଯେ ପରିମଳ ଗନ୍ଧ ଉତ୍କୃଷ୍ଟ ବାସ ଲଳିତ ମନୋହର ଗନ୍ଧ ତହିଁରେ ମିଶ୍ରିତ ହୋଇଲା । ମାଳତୀ ନବମଲ୍ଲିକା ଜାତି ଏମାନଙ୍କର ଗନ୍ଧେ ଅତି ସୁଗନ୍ଧ ହୋଇଛି ଯହିଁରେ । ପୁଣି ସେ ଗନ୍ଧ କି କରୁଛି । ଉପେକ୍ଷିତ ଭୋଗ ସ୍ୱାମୀ କରଣାନୁକୂଳେ । ଗୃହେଲେ ସମ୍ଭୋଗ ଇଚ୍ଛା ଯେ ମୁନିମାନେ ସନ୍ନ୍ୟାସୀମାନେ ତାହାଙ୍କର ମନକୁଁ ମୋହନ କରି ପୁନରପି ତରୁଣ କରାଇବାରେ କାରଣ ଯେହେତୁ ତହିଁକି ବନ୍ଧୁ ହୋଇଛନ୍ତି, ସଖା ହୋଇଛନ୍ତି ଯହିଁରେ ।

**ସ୍ଫୁରଦତିମୁକ୍ତଲତାପରିରମ୍ଭଣମୁକୁଳିତପୁଲକିତଚୂତେ ।**
**ବୃନ୍ଦାବନବିପିନେ ପରିସରପରିଗତଯମୁନାଜଳପୂତେ ॥ ୭ ॥**

ସ୍ଫୁରନ୍ମାଧବୀ ଲତା ବେଷ୍ଟିତ ବକୁଳଯୁକ୍ତ ଆମ୍ର ବୃକ୍ଷେ । ହେ ସଖି ! ଅତି ମୁକ୍ତ ଲତା ଯେ ମାଧବୀ ଲତା ସେ ଅତ୍ୟନ୍ତ ହୋଇ ଫୁଟିବାମାନେ[୪] ମୁକୁଳିତ ହୋଇ ବକୁଳେ କଳି ପୁଲକିତ, ରୋମାଞ୍ଚିତ ପ୍ରାପ୍ତେ ଦିଶୁଛି । ଯେ ଆମ୍ର ବୃକ୍ଷ ସେ ବୃକ୍ଷକୁ ଅତ୍ୟନ୍ତ ନିବିଡ଼ କରି ପରିଚୟେ ଯେ ଆଲିଙ୍ଗନ କରି ଦିଶୁଛି । କି ପ୍ରକାରେ ଦେବା । ସ୍ୱାମୀକି ଯେମନ୍ତ ଋତୁମତୀ ସ୍ତ୍ରୀ ଆଶ୍ରୟକରି ଆଲିଙ୍ଗନ କରଇ

୧-କ. ନାସେ
୨-କ. ଧାସେ
୩-କ. ଅନ୍ତର
୪-ଖ. ଫୁଟିବା ମାଧବୀ ।

ଏମନ୍ତ ବୃକ୍ଷକୁ ଯହିଁ ଦେଖିଲ ତାହା ଶୁଣ । ବୃନ୍ଦାବନ ନାମ୍ନି ବନେ । ଯମୁନା ତଟ ପର୍ଯ୍ୟନ୍ତ ସମୀପ ବନଗତ ପବିତ୍ର ଜଳସ୍ଥାନେ । ହେ ସଖି ଯମୁନା ଜଳତଟେ । ଯମୁନାର ଜଳେଣ କରି ସେ ବୃକ୍ଷର ଗୁଚ୍ଛପାଖେଣ ଧୌତ ହୋଇ ନିର୍ମଳ ପବିତ୍ର ଭୂମିରେ ।

**ଶ୍ରୀଜୟଦେବଭଣିତମିଦମୁଦୟତି ହରିଚରଣସ୍ମୃତିସାରମ୍ ।**
**ସରସବସନ୍ତସମୟବନବର୍ଣ୍ଣନମନୁଗତମଦନବିକାରମ୍ ॥ ୮ ॥**

ଜୟଦେବ କବି କହୁଛନ୍ତି-୧ ହେ ବୈଷ୍ଣବ ଜନମାନେ ଶୁଣ । ଇଦଂ ଜୟଦେବ ଭଣିତଂ ଗୀତଂ ଉଦୟତି ପ୍ରକାଶତେ । ଏହି ଜୟଦେବ ଭଣିତ ଗୀତ ଏ ଜଗତେ ପ୍ରକାଶ ହୋଇଛି । ଏ ଗୀତ କେମନ୍ତ ଅଟଇ । ହରିଚରଣ ସ୍ମୃତିସାରଂ । ବିଷ୍ଣୁ ପାଦ ପଦ୍ମ ସ୍ମରଣ କରିବାରେ ସାର ସୁଖ କାରଣକୁ ସାଧନ ଅଟଇ । ପୁନଃ କିଂ ଭୂତଂ । ଏ ଗୀତ ପୁଣି କେମନ୍ତ ଅଟଇ । ସକଳ କୁସୁମଗନ୍ଧ ମକରନ୍ଦ ଜନିତ କନ୍ଦର୍ପ ରସପୂର୍ଣ୍ଣ ବସନ୍ତ କାଳ ବୃନ୍ଦାବନବର୍ଣ୍ଣନଂ କନ୍ଦର୍ପରସଯୁକ୍ତଂ । ସେ ବସନ୍ତ କାଳ ତହିଁରେ ବୃନ୍ଦାବନର ଗୁଣ ବର୍ଣ୍ଣନା ଅଟଇ । ଅନୁଗତ ମଦନ ବିକାରଂ । ଉପସ୍ଥିତ କାମବିକାରଯୁକ୍ତଂ । ଅନୁଗତ ହୋଇଛି କାମ ବିକାର ଭକ୍ତିରସ ଯହିଁରେ ।

**ଶ୍ଳୋକ—**

**ଦରବିଦଳିତମଲ୍ଲୀବଲ୍ଲିଚଞ୍ଚତ୍ପରାଗ**
**ପ୍ରକଟିତପଟବାସୈର୍ବାସୟନ୍ କାନନାନି ।**
**ଇହ ହି ଦହତି ଚେତଃ କେତକୀଗନ୍ଧବନ୍ଧୁଃ**
**ପ୍ରସରଦସମବାଣପ୍ରାଣବଦ୍ ଗନ୍ଧବାହଃ ॥ ୮ ॥**

ଦୂତୀ କହୁଛନ୍ତି—ହେ ସଖି ! ଗନ୍ଧ ହି ଜାଣିହ । ଇହ ବସନ୍ତେ ଗନ୍ଧବାହଃ ବିରହିଣୀନାଂ ଚେତୋ ଦହତି । ଏ ବସନ୍ତ କାଳେ ଗନ୍ଧବାହ ଯେ ମଳୟ ପବନ ବିରହିଣୀ ଯେ କାନ୍ତା ବିଚ୍ଛେଦ ଜନମାନଙ୍କର ଚିତ୍ତକୁ ଦହନ କରୁଛି । ଯେଉଁକରି ଦହୁଁଛି ତାହା ଶୁଣ । ଦର ଅଳ୍ପ ବିଦଳିତ ବିକାଶିତ ହୋଇଲା ଯେ ମଲ୍ଲୀଲତା-ମାନେ ତାହାର ଯେମନ୍ତ ଧୂଳିବାସ ପରାଗ ପୁଷ୍ପ ଧୂଳିରେ ଧୂସର ହୋଇ ଅତ୍ୟନ୍ତ ପ୍ରକଟ ଉତ୍କଟ ହୋଇ ସେ ପୁଷ୍ପଧୂଳିମାନ ଗୁଚ୍ଛବିଗଳେଣ ବୃଷ୍ଟି କରି ବାସୟନ୍ କାନନାନି । ବନଜାତକଂ ବାସନ୍ତକ ହୋଇଛି । ସେ ପବନ ପୁଣି କେମନ୍ତ ଅଟଇ । କେତକୀ ଗନ୍ଧ-

୧-୯. ବୋଲୁଛନ୍ତି

ବନ୍ଧୁଃ । କେତକୀ ପୃଷ୍ଠ ଟାଙ୍ଗିର ସଖା ଅଟଇ । ପୁନଃ କିଂ ଭୂତଂ । ପୁଣି ସେ ଚନ୍ଦନ କେମନ୍ତ ଅଟଇ । ପ୍ରାପ୍ତ କାମବାଣ ପ୍ରକାଶକର୍ ପ୍ରସରର୍ । ପ୍ରାପ୍ତ ହୋଇଲା ଯେ କାମବାଣ ତାହାର ପ୍ରାଣ ସେ ସଖା ଅଟଇ । ହେ ସଖି ! ଏମନ୍ତେ ବିରହୀମାନଙ୍କର ଚିତ୍ତ ଦହନ କରୁଅଛି ।

**ଉନ୍ମୀଳନ୍ମଧୁଗନ୍ଧଲୁବ୍ଧମଧୁପବ୍ୟାଧୂତଚୂତାଙ୍କୁର-**
**କ୍ରୀଡ଼ତ୍କୋକିଳକାକଳୀକଳକଳୈଃ ଉଦ୍ଗୀର୍ଣ୍ଣକର୍ଣ୍ଣଜ୍ୱରାଃ ।**
**ନୀୟନ୍ତେ ପଥିକୈଃ କଥଂ କଥମପି ଧ୍ୟାନାବଧାନକ୍ଷଣ-**
**ପ୍ରାପ୍ତପ୍ରାଣସମାସମାଗମରସୋଲ୍ଲାସୈରମୀ ବାସରାଃ । ୯ ।**

କୃଷ୍ଣବଦନ୍ତି—ହେ ରାଧେ, ଅମୀ ବାସରାଃ ବସନ୍ତକାଳଦିବସାଃ ପଥିକୈଃ ପ୍ରବାସିଭିଃ କଥଂ କଥମପି କଷ୍ଟ କଷ୍ଟେନ ନୀୟନ୍ତେ । ଦୂତୀ କହୁଛନ୍ତି—ହେ ରାଧେ ଏ ବସନ୍ତ କାଳେ ବିରହୀ ପ୍ରାଣୀମାନଙ୍କୁ ବଡ଼ ଦୁଃଖ ହୋଇଲା । ହାଦେ କର୍ଣ୍ଣରେ ଜ୍ୱର ହୋଇଲା । ଦୈବେ ଦେହ ଜ୍ୱର ବାଧାହୁଁ କର୍ଣ୍ଣଜ୍ୱର ବ୍ୟଥା ବଡ଼ ଅଟଇ । ଯେଣୁକରି କର୍ଣ୍ଣଜ୍ୱର ବାଧା କଲା ତାହା କହିବା ଶୁଣ । ଉନ୍ମୀଳନ ମଧୁ ଅଛି ଉଦ୍ଘାଟିତ ମଧୁ ହେ ସଖି ! ବସନ୍ତ ଆସିକରି ସମସ୍ତଠାରେ ଯେତେ ଫୁଟି ଅଛନ୍ତି ପୁଷ୍ପମାନେ ସେ ପୁଷ୍ପମାନଙ୍କର ମଧୁମାନେ ଉପରକୁ ମିଳିଲେ । ତେଷାଂ ଗନ୍ଧ ଲୁବ୍ଧ ମଧୁପ । ସେ ମଧୁମାନଙ୍କର ଗନ୍ଧକୁ ଲୋଭୀ ହୋଇ ମଧୁପ ଯେ ଭ୍ରମରମାନେ ତାହାଙ୍କର ଉଡ଼ିକରି ବସିବାରେ ବ୍ୟାଧୂତ ଚୂତାଙ୍କୁର ବ୍ୟାଧୂତ ଯେ ବିଶେଷେ ଆଧୂତ ଆନ୍ଦୋଳିତ ହୋଇ କମ୍ପୁଛନ୍ତି ଚୂତାଙ୍କୁର ଆମ୍ର ବକୁଳମାନେ ତହିଁପି କ୍ରୀଡ଼ନ୍ତି କୋକିଳ ତହିଁରେ କ୍ରୀଡ଼ା କରୁଛନ୍ତି ଯେ କୋକିଳମାନେ ତେଷାଂ କାକଳି ସେମାନଙ୍କର କାକଳି ଯେ ସୂକ୍ଷ୍ମ ସୁନ୍ଦର ମଧୁର ଧ୍ୱନି ତସ୍ୟ ସମ୍ବୋଧନେ କଳକଳୈଃ । ସେ ସୂକ୍ଷ୍ମ ଶବ୍ଦର ଯେ କୋଳାହଳ ତେଣେ କରି ଉଦ୍ଗୀର୍ଣ୍ଣ କର୍ଣ୍ଣଜ୍ୱରାଃ । ବିରହୀମାନଙ୍କର ଦେହରୁ ଜ୍ୱର ଉଦ୍ଗାର ହୋଇଲା କର୍ଣ୍ଣଦ୍ୱାରେ । ଏମନ୍ତ ହୋଇ ଯେ କର୍ଣ୍ଣଜ୍ୱର ବ୍ୟଥିତ ପ୍ରାଣୀମାନେ ତାହାକୁ ଚିକିତ୍ସା କରିବାକୁ ପାରୁଥିବା ଲୋକମାନେ ଥାନ୍ତି ହେଁ ସେମାନେ ଏ ଦିବସମାନ ଭଲେଂ ବଞ୍ଚାଇ ନ ପାରନ୍ତି । ହେ ସଖି ! ପ୍ରାଣସଖା ଯେ ଭାର୍ଯ୍ୟା ତାହା ଛାଡ଼ି ଯେମାନେ ପ୍ରବାସୀ ହୋଇଂ ଏ ଜ୍ୱର ତାପେଂ ପଡ଼ିଅଛନ୍ତି ସେମାନେ ଏ ଦିବସ ମାନ କଥଂ କଥମପି ନୀୟନ୍ତେ । କେମନ୍ତ ପ୍ରକାରେଂ ନେଉଅଛନ୍ତି ଏ ବଡ଼ ସଂଶୟ । (ହେ ସଖି, ଶୁଣ କହିବା ! ଧ୍ୟାନାବଧାନ କ୍ଷଣ ପ୍ରାପ୍ତ । ହେ ସଖି !)[1] ସେ

[1] -କ.ରେ ବନ୍ଧନୀ ଅନ୍ତର୍ଗତ ପାଠ ନାହିଁ ।

ପଥିକମାନେ ଧ୍ୟାନେ କରି ଅବଧାନ କଲେ । ଯେମନ୍ତ ଯୋଗୀମାନେ ଆତ୍ମାକୁ ପାଇବେ ବୋଲି ଧ୍ୟାନ କରନ୍ତି ସେହିମତି ଧ୍ୟାନେ କରି ଅବଧାନ କରନ୍ତେ କ୍ଷଣପ୍ରାପ୍ତା କ୍ଷଣମାତ୍ର ପାଇଲେ ପ୍ରାଣସମାଗମ ରସ ପ୍ରାଣସମା ଯେ ଭାର୍ଯ୍ୟା ତାହାଙ୍କର ସଙ୍ଗେ ସମାଗମ କାଳେ ଯେ ପୂର୍ବରସ ତସ୍ୟ ଉଲ୍ଲାସୈଃ ସେ ରସର ଯେ ଉଲ୍ଲାସ ଆନନ୍ଦ ତେଣେ କରି ଅମୀ ବାସରା ମାଧ୍ୟନ୍ତେ । ଏ ବସନ୍ତ କାଳର ଦିବସମାନଙ୍କୁ ନେଉଛନ୍ତି ।

**ଅନେକନାରୀପରିରମ୍ଭସମ୍ଭ୍ରମସ୍ଫୁରନ୍ମନୋହାରିବିଳାସଲାଳସମ ।**
**ମୁରାରିମାରାଦୁପଦର୍ଶୟନ୍ତ୍ୟସୌ ସଖୀ ସମକ୍ଷଂ ପୁନରାହ ରାଧିକାମ୍ ॥ ୧୦ ॥**

ତତୋ ଽସୌ ଦୂତୀ ରାଧିକାଂ ବଦନ୍ତି—ହେ ସଖି, ଇହ ବସନ୍ତକାଳେ ଯଦି ତ୍ୱଂ କୃଷ୍ଣାନୁସରଣା ଗତୋଽସି ବୃନ୍ଦାବନେ ଶ୍ରୀକୃଷ୍ଣମହମପଶ୍ୟଂ ତଂ ତୁଭ୍ୟଂ କଥୟାମି ଶୃଣୁ । ତେବେ ସେ ଦୂତୀ ରାଧିକାଙ୍କୁ ବୋଲୁଛନ୍ତି—ହେ ରାଧେ ! ଏ ବସନ୍ତକାଳେ ତୁମ୍ଭେ ଯେବେ ଶ୍ରୀକୃଷ୍ଣଙ୍କୁ ଖୋଜୁଛ ତେବେ ଶୁଣ । (ମୁଁ ଏ ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କୁ ଦେଖିଲି । ଯହିଁରେ ଯେମନ୍ତ କରି ସେ କୃଷ୍ଣ କ୍ରୀଡ଼ା କରୁଛନ୍ତି ତାହା କହିବା ଶୁଣ ।)[1] ଅନେକନାରୀପରିରମ୍ଭସମ୍ଭ୍ରମସ୍ଫୁରନ୍ ମନୋହାରିବିଳାସଲାଳସଂ । ହେ ସଖି ! ଅନେକ ଗୋପନାରୀ କୃଷ୍ଣଙ୍କୁ ବେଢିଛନ୍ତି ସେମାନଙ୍କର ପରିରମ୍ଭ ଯେ ଆଲିଙ୍ଗନ ତହିଁକି କୃଷ୍ଣ ସମ୍ଭ୍ରମ ଚଞ୍ଚଳ ଚିତ୍ତ ହୋଇଛନ୍ତି । ସେମାନେ କେମନ୍ତ ଅଟନ୍ତି । ସ୍ଫୁରନ୍ତ । ସ୍ଫୁରିଛନ୍ତି । ଅତଏବ ନାନାଳଙ୍କାର ଭୂଷଣେ କରି । ପୁଣି ସେ କେମନ୍ତ ଅଟନ୍ତି । ଗୁଣବନ୍ତୀମାନେ ମନୋହାରୀ ଚତୁର୍ଦ୍ଦଶ ଶୃଙ୍ଗାର କଳାରେ ଶ୍ରୀକୃଷ୍ଣଙ୍କର ମନକୁ ହରୁଛନ୍ତି । ତସ୍ୟ ବିଳାସଲାଳସଂ ସେମାନଙ୍କର ଯେ ବିଳାସ କ୍ରୀଡ଼ା ତହିଁକି ଲାଳସ ଲୋଭୀ ହୋଇଛନ୍ତି ଏବଂ ବିଶିଷ୍ଟ ମୁରାରି ଏମନ୍ତ ଯେ[2] ମୁରାରି ସେ ମୁରାରିଙ୍କି ସେ ଦୂତୀ ଆଉ ଟିକିଏ ଦୂରେ ଦେଖିଲା ତୁମ୍ଭଙ୍କୁ ଦେଖାଇବ ବୋଲି । ହେ ସଖି, ସମକ୍ଷଂ ନିକଟେ ପ୍ରତ୍ୟକ୍ଷରାଧାଂ ପୁନରାହ । ସେ ଦୂତୀ ପୁଣି ଆଉବେଳେ ଯେମନ୍ତ କରି ଗୋପୀମାନଙ୍କର ମଧ୍ୟେ କୃଷ୍ଣ କ୍ରୀଡ଼ା କରୁଛନ୍ତି ତାହା ରାଧିକାଙ୍କୁ କହୁଛି ।

---

[1]–ବ.ରେ ନାହିଁ ।

[2]–ଙ. ଏମନ୍ତ ହେ°

## ଗୀତ

(ରାମକରୀ ରାଗେଣ ଗୀୟତେ)

**ଚନ୍ଦନଚର୍ଚ୍ଚିତନୀଳକଳେବରପୀତବସନବନମାଳୀ ।**
**କେଳିଚଳନ୍ମଣିକୁଣ୍ଡଳମଣ୍ଡିତଗଣ୍ଡଯୁଗସ୍ମିତଶାଳୀ ।**
**ହରିରିହ ମୁଗ୍ଧବଧୂନିକରେ ।**
**ବିଳାସିନି ବିଳସତି କେଳିପରେ ।**

(ଧ୍ରୁବପଦମିତମ୍ ।)

ଚନ୍ଦନରେ ସଖୀ କହୁଛନ୍ତି—ହେ ରାଧେ, ହରି ବସନ୍ତକାଳେ ବୃନ୍ଦାବନ ମଧ୍ୟେ ହରି ବିଳସନ୍ତି କ୍ରୀଡ଼ନ୍ତି ଯାହା ସଙ୍ଗରେ କ୍ରୀଡ଼ା କରୁଛନ୍ତି ତାହା କହିବା । ମୁଗ୍ଧ ବଧୂନିକରେ । ମୁଗ୍ଧ ଯେ ବ୍ୟଭିଚାରୀ ଦୋଷ ରହିତ ଶୁଚି ସୁନ୍ଦର ଗୋପନାରୀ ସମୂହେ । ସେ ଗୋପନାରୀ ପୁଣି କେମନ୍ତ ଅଟନ୍ତି ? କେଳିପରେ । କ୍ରୀଡ଼ା ପୁରୁଷାର୍ଥେ । କ୍ରୀଡ଼ା ଯେ ହରିର ରସ କେଳି ସେହିଁ ଧର୍ମାଦି ଚତୁର୍ବର୍ଗ ପର୍ଯ୍ୟନ୍ତ । ଧର୍ମାର୍ଥ କାମ ମୋକ୍ଷ ଯହିଁ ପ୍ରଚୁର । ସେ ଗୋଷ୍ଠୀ ମଧ୍ୟେ ହରି ବିଳାସ ଅନ୍ତରେ । ବିଳାସିନି ବିଳସତି ବିଳାସଃ । ସର୍ବେଷୁ ଭୂତେ ସ୍ୱାତ୍ମରୂପେଣ ପ୍ରକାଶେ ବିଶ୍ୱମୋହକଃ । ଯେ ହରି ଆତ୍ମରୂପ ହୋଇ ସଂସାରକୁ ବିଶ୍ୱ କ୍ରୀଡ଼ାରେ କରି ମୋହ କରାଉଛନ୍ତି । ସେ ହରି ନିର୍ବିକଳ୍ପ ।[1] ସ୍ୱଭାବତୋ ନିର୍ଲେପଃ । ସ୍ୱଭାବେ ନିରଞ୍ଜନ ଅଟନ୍ତି । ତଥାପି ସଂସାରୀ-ମାନଙ୍କୁ ତାରିବା ନିମିତ୍ତେ କ୍ରୀଡ଼ା କରୁଛନ୍ତି । ସେ ହରି କିଂ ଭୂତଃ । ସେ ହରି କେମନ୍ତ ଅଟନ୍ତି । ଚନ୍ଦନ ଚର୍ଚ୍ଚିତ ନୀଳ କଳେବର । ଚନ୍ଦନ ପଙ୍କ ଚର୍ଚ୍ଚିତ ଲେପିତ ହୋଇଛି ନୀଳ କଳେବର । ପୁନଃ କିଂ[2] ଭୂତଃ । ସେ ହରି ପୁଣି କେମନ୍ତ ଅଟନ୍ତି ? ପୀତବସନ ବନମାଳୀ । ପୀତ ବର୍ଣ୍ଣ ବସନ ପରିଧାନ କରିଛନ୍ତି । ବନମାଳା ଗୋଟିଏ ଗଳାରେ ଲମ୍ବିଛି । ପୁନଃ କିଂ ଭୂତଃ । କେଳିଚଳନ୍ମଣିକୁଣ୍ଡଳମଣ୍ଡିତଗଣ୍ଡଯୁଗ । କ୍ରୀଡ଼ା ଚଞ୍ଚଳ କରି ଚଳୁଛି ମଣିମୟ ମକରାକୃତି କୁଣ୍ଡଳ କର୍ଣ୍ଣ ମଣ୍ଡିତ କପୋଳଦ୍ୱୟ । ପୁନଃ କିଂ ଭୂତଃ । ପୁଣି ସେ କେମନ୍ତ ଅଟନ୍ତି ? ସ୍ମିତଶାଳୀ । ଅଳ୍ପ ହାସ ଯୁକ୍ତ ମୁଖ । ହେ ସଖି ! ସେ ହରି ଗୋପୀମାନଙ୍କୁ[3] ଯେମନ୍ତ କରି ରମୁଛନ୍ତି ତାହା ଶୁଣ ।

---

୧-ଖ. ନିର୍ବିକାର ।

୨-ଖ. 'ପୁନଃ' ନାହିଁ ।

୩-ଖ. ଗୋପୀମାନେ ।

**ପୀନପୟୋଧରଭାରଭରେଣ ହରିଂ ପରିରଭ୍ୟ ସରାଗମ୍ ।**
**ଗୋପବଧୂରନୁଗାୟତି କାଚିଦୁଦଞ୍ଚିତପଞ୍ଚମରାଗମ୍ ॥ ୨ ॥**

ବୃତ୍ତି କହୁଛନ୍ତି---ହେ ସଖି ! କାଚିତ୍ ଏକ ଗୋପୀ ପୀନ ପୟୋଧର ଭାରଭରେଣ ପୀନ ସ୍ଥୂଳ ବର୍ତ୍ତୁଳ ଯେ ତାହାର ପୟୋଧର ତାହାର ଭରେଣ କରି ସରାଗଂ ହରିଂ ପରିରଭ୍ୟ ସକାମ ହୋଇ ହରିଙ୍କ ଆଲିଙ୍ଗନ କରି (ଉଦାଞ୍ଚିତ ପଞ୍ଚମ ରାଗମନୁଗାୟତି । ଆଗ ଆଲିଙ୍ଗନ କରି) [1] ପଛେ ଉଦଞ୍ଚିତ ପଞ୍ଚମ ରାଗ ନେଇ ରାଗେ କରି ଗୀତ ଗାଉଛନ୍ତି ।

**କାପି ବିଲାସବିଲୋଲବିଲୋଚନଖେଳନଜନିତମନୋଜମ୍ ।**
**ଧ୍ୟାୟତି ମୁଗ୍‌ଧବଧୂରଧିକଂ ମଧୁସୂଦନବଦନସରୋଜମ୍ ॥ ୩ ॥**

ବୃତ୍ତି କହୁଛନ୍ତି---ହେ ସଖି, ଏମ ଗୋପବଧୂମାନଙ୍କର ମଧ୍ୟ କାପି ମୁଗ୍‌ଧବଧୂରଧିକଂ ଯଥା ମଧ୍ୟାତ୍ତଥା ମଧୁସୂଦନବଦନସରୋଜଂ ଧ୍ୟାୟତି କାପି ଏକ ଗୋପବଧୂ ଯେ ହାନଦ ମୁଗ୍‌ଧ ସ୍ୱାମୀ ସେବା କରିବାରେ ବୁଦ୍ଧି ଶିକ୍ଷା ଅଛି । ସେ ଶ୍ରୀକୃଷ୍ଣର ମୁଖ ପଦ୍ମକୁ ଅଧିକ କରି ଚିନ୍ତନ (ଧ୍ୟାନ) [2] ସେ ମଧୁସୂଦନର ମୁଖ କେମନ୍ତ ଅଟଇ । ଖେଳନଜନିତଂ ମନୋଜଂ । ନୀଡ଼ା ଚଞ୍ଚଳ କରି ବିଲୋଳ ଉଦିତ ମୂର୍ଦ୍ଧିତ ବକ୍ଷିତ ବିଲୋଚନ । ଖେଳାଇବାଂ କରି ଜାତ ହୋଇଛି ଯେ ମନୋଜ କନ୍ଦର୍ପ ତାହାଙ୍କର ।

**କାପି କପୋଳତଳେ ମିଳିତା ଲପିତୁଂ କମପି ଶ୍ରୁତିମୂଳେ**
**ଚାରୁ ଚୁଚୁମ୍ବ ନିତମ୍ବବତୀ ଦୟିତଂ ପୁଲକୈରନୁକୂଳେ । ୪ ।**

ବୃତ୍ତି କହୁଛନ୍ତି---ହେ ସଖି, ବଡ଼ କୌତୁକ କଥା ଶୁଣ । [3] କାପି ନିତମ୍ବବତୀ ସୁଶ୍ରୋଣୀ [4] ଗୋପକାମିନୀ କୃଷ୍ଣଂ କମପି ଲପିତୁଂ ଶ୍ରୀକୃଷ୍ଣଙ୍କୁ ବିଶ୍ୱାସ କଥା କହିବାକୁ ଶ୍ରୁତିମୂଳେ ମିଳିତାଃ । କର୍ଣ୍ଣମୂଳେ ମୁଖ ଦେଇ ମିଳିକରି ଦୟିତଂ ଚାରୁ ଚୁଚୁମ୍ବ । ଦୟିତଂ ପ୍ରାଣନାଥଂ ହରିଂ ହରି ଙ୍କ ଗଣ୍ଡ ସୁନ୍ଦର କରି କର୍ଣ୍ଣମୂଳେ ଚୁମ୍ବନ କଲା । ସେ କର୍ଣ୍ଣମୂଳ କୃଷ୍ଣର କେମନ୍ତ ଅଟଇ । ପୁଲକୈରନୁକୂଳେ ରୋମ ହର୍ଷରେ ଜାତ ହୋଇଛି ରୋମାଞ୍ଚ ଯାହାଙ୍କ ।

---

[1]-କ.ରେ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।
[2]-ଖ.ରେ ଲୋଚନ ହୋଇ ଧ୍ୟାନ କରୁଛ । ଅଧିକ କେବଳମେବ ଚଞ୍ଚଳନୟନଂ ।
[3]-ଖ. କୌତୁକ ଶୁଣ ।
[4]-କ. ସୁଶ୍ରୋଣୀ

**କେଳିକଳାକୁତୁକେନ ଚ କାଚିଦମୁଂ ଯମୁନାବନକୂଳେ ।**
**ମଞ୍ଜୁଳବଞ୍ଜୁଳକୁଞ୍ଜଗତଂ ବିଚକର୍ଷ କରେଣ ଦୁକୂଳେ । ୫ ।**

ଦ୍ୱିଜ ବୋଲୁଛନ୍ତି— ହେ ରାଧେ, କାପି ଗୋପନାରୀ କେଳିକଳାକୁତୁକେନ କାମକ୍ରୀଡ଼ା କୌତୁକେନ ଯମୁନାବନକୂଳେ ଯମୁନା ବନକୂଳେ ଯମୁନା ଜଳ ତଟେ ହାରିଦ ଏକ ନାରୀ କେଳିକଳା କୌତୁକରେ ସରସ ହୋଇ ଯମୁନା ଜଳ ତଟେ ମଞ୍ଜୁଳ ବଞ୍ଜୁଳ କୁଞ୍ଜଗତଂ । ମଞ୍ଜୁଳ ଯେ ମନୋହର ବଞ୍ଜୁଳ ଯେ ବେତଲତା ସେ ବୋଲନ୍ତି ଘର ପ୍ରାୟେ ହୋଇଛି । ତହିଁ ଭିତରେ ବସିଛନ୍ତି ଯେ କୃଷ୍ଣ ଅମୁଂ ଏ କୃଷ୍ଣଙ୍କୁ କରେଣ ଦୁକୂଳେ ବିଚକର୍ଷ ଆକୃଷ୍ଟବନ୍ତ । ହାତେ ଏ କୃଷ୍ଣଙ୍କୁ ହସ୍ତେ କୃଷ୍ଣର ବସ୍ତ୍ର ଧରି ଆଉ ହସ୍ତେ କୃଷ୍ଣର ପୀତବସ୍ତ୍ର ଧରି ଆସ ବୋଲି ନାରୀ ନେଇଛି ।

**କରତଳତାଳତରଳବଳୟାବଳିକଳିତକଳସ୍ୱନବଂଶେ ।**
**ରାସରସେ ସହନୃତ୍ୟପରାହରିଣା ଯୁବତିଃ ପ୍ରଶଶଂସେ ॥ ୬ ॥**
**ଶ୍ଳିଷ୍ୟତି କାମପି ଚୁମ୍ବତି କାମପି କାମପି ରମୟତି ରାମାମ୍ ।**
**ପଶ୍ୟତି ସସ୍ମିତଚାରୁପରାମପରାମନୁଗଚ୍ଛତି ବାମାମ୍ ॥ ୭ ॥**

ଦ୍ୱିଜ କହୁଛନ୍ତି—ହେ ସଖି ! ହେ ରାଧେ ! ସେ ହରି କାମପି କାମିନୀଂ ଶ୍ଳିଷ୍ୟତି । ସେ ହରି କାହାକୁ ଆଲିଙ୍ଗନ କରୁଛନ୍ତି । କାମପି କାମିନୀଂ ଚୁମ୍ବତି । କାହାକୁ ଚୁମ୍ବନ କରୁଛନ୍ତି । କାମପି କାମିନୀଂ ସସ୍ମିତଂ ପଶ୍ୟତି । କାହାକୁ ହାସ୍ୟ-ବଦନ ନୟନେ କରି ଚାହୁଁଛନ୍ତି । କାମପି ଚାରୁ ସୁନ୍ଦରୀଂ ହୃଷ୍ଟବଦନାଂ ଦୃଷ୍ଟ୍ୱା ଭୋଗବଶ୍ୟାଂ ଜ୍ଞାତ୍ୱା ସ୍ଥାନାନ୍ତରଂ ଗଚ୍ଛତି । ଅତି ସୁନ୍ଦର ଦେଖି ଭୋଗକଲା ଗୋପୀଙ୍କ ଗୃହ ତାହା ତହିଁକି ଯାଉଛନ୍ତି ।

**ଶ୍ରୀଜୟଦେବଭଣିତମିଦମଦ୍ଭୁତକେଶବକେଳିରହସ୍ୟମ୍ ।**
**ବୃନ୍ଦାବନବିପିନେ ଲଳିତଂ ବିତନୋତୁ[୩] ଶୁଭାନି ଯଶସ୍ୟମ୍ ॥ ୮ ॥**

ଏତଦେବ କବିର୍ବଦତି । କବି ଯେ ଜୟଦେବ ସେ ଜୟଦେବ ବୋଲୁଛନ୍ତି— ହେ ବୈଷ୍ଣବ ଜନମାନେ ଶୁଣ । ଇଦଂ ଜୟଦେବ ଭଣିତଂ ଗୀତଂ । ଏ ଜୟଦେବ ଭଣିଲା ଗୀତ । କିଂ ଭୂତଂ ଗୀତଂ ? ସଲୀଳଂ । ବାସୁଦେବସ୍ୟ ଲୀଳୟା ବର୍ତ୍ତମାନଂ । ବାସୁଦେବର ଲୀଳାରସେ କରି ବର୍ତ୍ତମାନ ହୋଇଛି । ଏ ଗୀତ ତୁମ୍ଭମାନଙ୍କର

---

୧-ଖ. ଆକୃଷ୍ଟବର୍ତ୍ତି    ୩-ଖ. ବିତନୋତି ।

୨-କ. ପ୍ରଶଂସସେ ।

ଖ. ପ୍ରଶଂସେ ।

ସୁଖକୁ ବିତନୋତୁ ବିସ୍ତାର କରୁ । ଏ ଗୀତ ଶୁଣ ଶୁଣ । ପୁନଃ କଂ ଭୂତଂ । ପୁଣି ଏ ଗୀତ କେମନ୍ତ ଅଟଇ । ଅଦ୍ଭୁତଂ । ଏକ ପୁରୁଷସ୍ୟ ଅନେକ ସ୍ତ୍ରୀ ରମଣଂ ଅତଏବ ଅଦ୍ଭୁତଂ । ଏକ ପୁରୁଷେ ଅନେକ ସ୍ତ୍ରୀ ରମନ୍ତି ଏଣୁକରି ଅଦ୍ଭୁତ ଅଟଇ । ପୁନଃ କଂ ଭୂତଂ । କେଶବ କେଳି ରହସ୍ୟଂ କେଶବ କେଳି ଏକାନ୍ତ କଥା ଅଟଇ । ପୁନଃ କଂ ଭୂତଂ । ବୃନ୍ଦାବନ ବିପିନ ଚରିତଂ । ଗୋପରମଣୀଭିଃ ସମଂ ବାସୁଦେବସ୍ୟ ଉଦ୍ଦାମ କେଳିଯୁକ୍ତଂ । ଗୋପୀମାନଙ୍କ ସଙ୍ଗତେ ଶ୍ରୀ ବାସୁଦେବଙ୍କର ଏକାନ୍ତ କେଳିଯୁକ୍ତ ଅଟଇ

**ବିଶ୍ୱେଷାମନୁରଞ୍ଜନେନ ଜନୟନ୍ନାନନ୍ଦମିନ୍ଦୀବର-**
**ଶ୍ରେଣୀଶ୍ୟାମଳକୋମଳୈରୁପନୟନ୍ନଙ୍ଗୈରନଙ୍ଗୋତ୍ସବଂ ।**
**ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଭିରଭିତଃ ପ୍ରତ୍ୟଙ୍ଗମାଲିଙ୍ଗିତଃ**
**ଶୃଙ୍ଗାରଃ ସଖି ମୂର୍ତ୍ତିମାନିବ ମଧୌ ମୁଗ୍ଧୋ ହରିଃ କ୍ରୀଡ଼ତି ॥ ୧୧**

ଦୃଷ୍ଟି କହୁଛନ୍ତି—ହେ ସଖି, ମଧୌ ବସନ୍ତକାଳେ ଶୃଙ୍ଗାରଜନିତ ରସଗୁଣୋଽପି ସନ୍ ମୂର୍ତ୍ତିମାନିବ କ୍ରୀଡ଼ତି । ହେ ସଖୀ ଶୃଙ୍ଗାର କଳାରୁ ଜାତ ହୋଇଲା ଯେ ରସ ସେ କେମନ୍ତ ଅଟଇ । ଗୁଣୋଽପି । ଗୁଣମାନ ସାଧାରଣ ଅଟଇ । ତଥାପି ସେ ରସ ମୂର୍ତ୍ତିମନ୍ତ ସାକ୍ଷାତ୍କାର ହୋଇଁ ବସନ୍ତକାଳେ ଲୀଳା କରୁଛି ସେ ମେ ରସ ସେହିମନ୍ତ ହୋଇ ହରି ନୀଡ଼ନ୍ତି । କଂ ବା । କାହାର ପ୍ରାଏ । ମୁଗ୍ଧଃ । ମୁଗ୍ଧା ଯେ ମୂଢ଼ା ପ୍ରାଣୀ ତାହାର ପ୍ରାୟେ ହୋଇଁ ହରି ଲୀଳା କରୁଛନ୍ତି । ସେ ହରି କେମନ୍ତ ଅଛନ୍ତି ତାହା ଶୁଣ । ଲିଙ୍ଗତନ୍ତ୍ର କାରଣ ହରତୀତି ହରିଃ । ଲିଙ୍ଗ ଯେ ଦେହ ତହିଁର କାରଣ ଯେ କର୍ମ ଏ ଦୁହେଁଙ୍କୁ ହରନ୍ତି ଏଣୁ କରି ହରି । ଏମନ୍ତ ଯେ ହରି ସେ ଲୀଳା କରୁଛନ୍ତି । କିମର୍ଥେ । କି ନିମିତ୍ତେ ତାହା କହିବା ଶୁଣ । ସେ ହରି ବଡ଼ ଦୟାଳୁ । ଏଣୁକରି ଅନୁରଞ୍ଜନେନ ଅନୁରାଗ ଜନିତ ଦୟାହ୍ଲାଦେନ ବିଶ୍ୱେଷାଂ ସ୍ଥାବର ଜଙ୍ଗମାଦୀନାଂ ପ୍ରାଣୀନାଂ ଆନନ୍ଦ କୈବଲ୍ୟ ଜନୟନ୍ । ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଏମାନଙ୍କର ଅବିଦ୍ୟା ନାଶକରି ଆନନ୍ଦ କୈବଲ୍ୟ ମୋକ୍ଷଦେବା ଅର୍ଥେ । ପୁନଃ କଂ ଭୂତଂ । ପୁଣି ସେ ହରି କି କରୁଛନ୍ତି । ଇନ୍ଦୀବର ଶ୍ରେଣୀ ଶ୍ୟାମଳ କୋମଳୈଃ ଅଙ୍ଗୈଃ ନୀଳୋତ୍ପଳ । ନୀଳୋତ୍ପଳ ମାଳାବର ଶ୍ୟାମଳବର୍ଣ୍ଣ କୋମଳେ ଅଙ୍ଗେ କର-ଚରଣାଦି । ନୀଳୋତ୍ପଳ ମାଳାପ୍ରାୟେ ଶ୍ୟାମଳବର୍ଣ୍ଣ କୋମଳ ନୀଳୋତ୍ପଳ ପାଖୁଡ଼ା ପ୍ରାୟେ ଏମନ୍ତ ଯେ କରଚରଣାଦି ଅଙ୍ଗମାନ କରି ଅନଙ୍ଗୋତ୍ସବମୁପନୟନ୍ । ଅନଙ୍ଗ

---

୧-କ. ମଧ୍ୟଥା ।

ଉଦ୍ଧବ ଯେ କ୍ରୀଡ଼ାରସ ତାହାର ଉଦ୍‌ବୋଧନ ସମ୍ପାଦୟନ୍ । କାମକ୍ରୀଡ଼ା ଦେଖାଉଛନ୍ତି । ସେ ହରି ପୁଣି କେମନ୍ତ ହୋଇଛନ୍ତି ଶୁଣ[୧] ।

ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଭିରଭିତଃ ପ୍ରତ୍ୟଙ୍ଗମାଲିଙ୍ଗିତଃ । ସ୍ୱଚ୍ଛନ୍ଦଂ ସ୍ୱେଚ୍ଛାବଶାଂ ବ୍ରଜସୁନ୍ଦରୀଭିର୍ଗୋପନାରୀଭିଃ ଆପଣା ଇଚ୍ଛାଏଂ[୨] କରି ବ୍ରଜସୁନ୍ଦରୀ ମାନଙ୍କର ଦେହମାନଙ୍କୁ ଆଲିଙ୍ଗନ କରୁଛନ୍ତି । ସେ ଗୋପୀମାନେ ଶ୍ରୀକୃଷ୍ଣର ଅଗ୍ରତଃ ପୃଷ୍ଠତଃ ପାର୍ଶ୍ୱତଃ । ଗୁରି ହାତେକେ ଗୋପୀ ହୃଦୟରେ ଆଲିଙ୍ଗନ କରୁଛି । କେ ଗୋପୀ ହସ୍ତକୁ ଆଲିଙ୍ଗନ କରୁଛି । କେ ଗୋପୀ ପିଠିରେ ସ୍ତନମଣ୍ଡଳ ଲଗାଇ ନିବଡ଼େ ଆଲିଙ୍ଗନ କରୁଛି । ହେ ସଖି ! ଏମନ୍ତ କରି ହରିଙ୍କି ଦେଖିଲୁ; (ପୁଣି ହାବେଂ ଆଜ ଏହିକ୍ଷଣି ଯେ ଅଦ୍ଭୁତ କଥା ଦେଖିଲଂ)[୩] ସେ କଥା ତୁମ୍ଭଙ୍କୁ କହିବା ଶୁଣ ।

**ଆଦେଧ୍ୟାସ୍ତ୍ରିଙ୍ଗବସଦ୍ଭୁଜଙ୍ଗକବଳକ୍ଲେଶାଦବେଶାଚଳଂ**
**[୪]ପ୍ରାଲେୟପ୍ଳବନେଚ୍ଛୟାନୁସରତି ଶ୍ରୀଖଣ୍ଡଶୈଳାନିଳଃ ।**
**କିଞ୍ଚିତ୍‌ସ୍ନିଗ୍ଧରସାଳମୌଳିମୁକୁଳାନ୍ୟାଲୋକ୍ୟ ହର୍ଷୋଦୟା-**
**ଦୁନ୍ମୀଲନ୍ତି କୁହୂଃ କୁହୂରିତି କଳୋତ୍ତାଳାଃ ପିକାନାଂ ଗିରଃ । ୧୬ ।**

ଦୂତୀ କହୁଛନ୍ତି—ହେ ରାଧେ, ଅଦ୍ୟ ଆଜ ଏହିକ୍ଷଣି ଶ୍ରୀଖଣ୍ଡ ଶୈଳାନିଳଃ ଶ୍ରୀଖଣ୍ଡ ଶୈଳ ଯେ ମଳୟ ପର୍ବତ ତହିଁଥିଲ ଯେ ମଳୟ ପବନ ସେ ପ୍ରାଲେୟ-ପ୍ଳବନେଚ୍ଛୟାନୁସରତି ପ୍ରାଲେୟ ଯେ ହିମ ପର୍ବତ ତହିଁରେ ସ୍ନାନ କରିବାକୁ ଇଚ୍ଛା ଯାଉଛି[୫] । ହେ ସଖି ଦେଖ ଅଦ୍ଭୁତ । ଯେ ପବନ ଅମୃତ ପ୍ରାୟେ ଶୀତଳ ଯାହାକୁ ପାଇଲେ ବିଷମ ଦେହଜ୍ୱାଳା ଶାନ୍ତ ହୋଇଲେ[୬] ମୋହଗଲ ପ୍ରାଣୀ ଜୀବନ ପାନ୍ତି ଏମନ୍ତ ଶୀତଳ ଯେ ପବନ ସେ ହିମରେ ବୁଡ଼ିବାକୁ ଇଚ୍ଛା କରି ଯେ ନିମିତ୍ତେ ଯାଉଛି ତାହା ଶୁଣ ।

ଉଦ୍ୟଙ୍ଗ ବସଦ୍ ଭୁଜଙ୍ଗକବଳ କ୍ଲେଶାତ୍ । ସେ ମଳୟ ପର୍ବତେଂ ଯେତେ ଚନ୍ଦନ ବୃକ୍ଷମାନେ ଅଛନ୍ତି ସେ ବୃକ୍ଷ ମାନଙ୍କର ଉତ୍ସଙ୍ଗ ଯେ କୋହ ତହିଁରେ ଘର କରି ବସିଛନ୍ତି ଯେ କାଳସର୍ପମାନେ ସେ ନିରନ୍ତରେ ପବନକୁ ଖାଉଛନ୍ତି[୭] । ତେଷାଂ କବଳ

୧-ଖ. ତାହା ଶୁଣ ।
୨-କ. ଇଚ୍ଛାଇଚ୍ଛା ।
୩-ଜ. ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।
୪-ଖ. ପ୍ରାଲେୟ
୫-ଖ. କରୁଛୁ ।
୬-ଝ. ହୋଇ, ବାଞ୍ଛଲେଂ
୭-ଝ. ଖାଉଥାନ୍ତି ।

କ୍ଳେଶାତ୍ । ସେମାନଙ୍କର ଖାଇବାରୁଂ[୧] ଗରଳ ଲାଗଇ । ଏମନ୍ତେ ବରଷା ଶରତ ହେମନ୍ତ ଶିଶିର ଏତେକାଳ ପର୍ଯ୍ୟନ୍ତ ସେମାନଙ୍କର ଗ୍ରାସଜ୍ୱାଳା ସହିଥିଲି । ଏବେ ବସନ୍ତ କାଳରେ ଖିଆର ତେଜେ ଗରଳ ଜାଳା ସହି ନ ପାରି ବଡ଼ କ୍ଳେଶ ପାଇଁ ହ୍ରଦରେ ବୁଡ଼ିବାକୁ ଇଚ୍ଛାକରି ଉତ୍ତର ଦିଗକୁ ଯାଉଛି । ଏମନ୍ତ ପ୍ରାୟେ ମୁଁ ମଣେଁ । ହେ ସଖି ପୁଣି ଅଦ୍ଭୁତ କଥା ଶୁଣ । ରସାଳ ମୌଳି ମୁକୁଳାନି । ରସାଳ ଯେ ଆମ୍ବ ବୃକ୍ଷମାନେ ତାହାଙ୍କର ଭିତରେ ଥିଲି ଯେ ରସ ହେଲୁ ମଧୁ ବକୁଳମାନେ ସେ ପବନର ବପଖାତ ଦେଖିବା ପାଇଁ ମୌଳି ମୁକୁଳାନି ଅଗ୍ର ମାନଙ୍କରେ କଞ୍ଚିତ୍ ଅଳ୍ପ ଅଳ୍ପ ହୋଇଁ ମିଳିଲେ[୨] । ତାନି ଆଲୋକ୍ୟ[୩] ସେ ବକୁଳମାନଙ୍କୁ ଦେଖି ହର୍ଷୋଦୟାତ୍ ହରଷ ଉଦୟ ହୋଇଁ ଉନ୍ମୀଳନ୍ତି । କୁହୁଃ କୁହୁଃ କରି ଅତି କଳ ଅତି ଗମ୍ଭୀର ନାଦ ମାନଙ୍କୁ ଉଦ୍ଗିନାଃ ଏକରୁଣ୍ଡ ହୋଇଁ । କୋକିଳାନାଂ ଗିରଃ । କୋକିଳ ମାନଙ୍କର ଶବ୍ଦ ହୋଇଲା ।

**ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ ସାମୋଦଦାମୋଦରୋ ନାମ ପ୍ରଥମସର୍ଗଃ ।**



୧-କ. ଖାଇବାକୁ

୨-ଖ.ରେ ଅଧିକ ପାଠ ଦର୍ଶିଲେ ।

୩-କ. 'ତାନି ଆଲୋକ୍ୟ' ନାହିଁ ।

# ଦ୍ୱିତୀୟଃ ସର୍ଗଃ

ଶ୍ଳୋକ :

**ବିହରତି ବନେ ରାଧା ସାଧାରଣପ୍ରଣୟେ ହରୌ**
**ବିଗଳିତ ନିଜୋତ୍କର୍ଷାଦୀର୍ଷାବଶେନ ଗତାନ୍ୟତଃ ।**
**କ୍ୱଚିଦପି ଲତାକୁଞ୍ଜେ ଗୁଞ୍ଜନ୍ମଧୁବ୍ରତମଣ୍ଡଳୀ**
**ମୁଖରଶିଖରେ ଲୀନା ଦୀନାପ୍ୟୁବାଚ ରହଃ ସଖୀମ୍ ॥ ୧ ॥**

କବି ବଦନ୍ତି ହେ ବୈଷ୍ଣବାଃ ଶୃଣୁତ । ଜୟଦେବ କବି ବୋଲୁଛନ୍ତି[୨]—ହେ ବୈଷ୍ଣବମାନେ[୩] ଶୁଣ । ବିହରତି ବନେ । ବୃନ୍ଦାବନେ ହରୌ ବିହରନ୍ତି ସନ୍ତି । ବୃନ୍ଦାବନ ମଧ୍ୟେ ଗୋପୀମାନଙ୍କର ସଙ୍ଗେ ହରି ବିହାର କରୁଁ କରୁଁ ରାଧା ସାଧାରଣ-ପ୍ରଣୟେ ହରୌ । ଏମନ୍ତ ଯେ ରାଧା ସାଧାରଣ ପ୍ରଣୟ ଯେ ମଧ୍ୟ ସ୍ନେହ ହରି ବିଷୟେ କରିଥିଲେ । ସେ ମଧ୍ୟ ସ୍ନେହ ହରିଙ୍କ ନ ପାଇବା ମାତ୍ରକେ । ବିଗଳିତ ନିଜୋତ୍କର୍ଷାତ୍ ନିଜ ସୌଭାଗ୍ୟବାଞ୍ଛିତ୍ୱା । ନିଜ ସୌଭାଗ୍ୟ ବାଞ୍ଛାକରି ବିଗଳିତ ନିରାଶ ହୋଇଁ ଈର୍ଷାବଶେନ ଗତାନ୍ୟତଃ । ଈର୍ଷାବଶେନ କିଂ ଭୂତେନ । ପରୋତ୍କର୍ଷେଣ ଅସହନ ବଶେଣ । ପର ଯେ ସପତ୍ନୀ ଅଂଶ ତାହାଁର ଉତ୍କର୍ଷତା ଯେ ଅସହନ ସହି ନୋହଇ । ଏମନ୍ତ ଯେ କ୍ରୋଧ ଦୁଃଖ ତାହାଁର ବଶ ହୋଇଁ ଗତାନ୍ୟତଃ ସେ ବନରୁ ଆନ ବନକୁ ଗଲେ । ଯାଇଁ କ୍ୱଚିଦପି ଲତାକୁଞ୍ଜେ କୌଣସି[୪] ଏକ କୁଞ୍ଜ ଲତାରେ । ସେ ଲତା କେମନ୍ତ ହୋଇଛି । ଗୁଞ୍ଜନମଧୁବ୍ରତମଣ୍ଡଳୀମୁଖରଶିଖରେ । ଗୁଞ୍ଜନ ଶବ୍ଦ କରୁଛନ୍ତି ପୁଷ୍ପଗନ୍ଧ ଲୋଭ କରି[୫] । ମଧୁବ୍ରତ ଯେ ଭ୍ରମରମାନେ ତାହାଙ୍କର ମଣ୍ଡଳୀ ଯେ ସମୂହ ତେତେକରି ମୁଖର ଶବ୍ଦାୟମାନ ହୋଇଛି ଶିଖରେ ସେ ଲତା ଅଗ୍ରେ ଏମନ୍ତ କୁଞ୍ଜଲତା ତହିଁରେ ଲୀନା । ସେ ଲତାରେ ଯାଇଁ ଲୁଚିକରି ଥିଲା । ଦୁଃଖୀ ହୋଇଁ ବସି ଉବାଚ ରହଃ ସଖୀମ୍ । ରହଃ ସେ ଗୋପ୍ୟ ହୋଇଁ ବସି ସଖୀ ଯେ ଦୂତୀ ତାହାଙ୍କୁ ବୋଲୁଛନ୍ତି ।

---

୧-ଖ. ବିମଳାନ୍ତ        ୪-ଖ. କେହୁଣିସି

୨-ଖ. ବୋଲୁଛନ୍ତି        ୫-ଖ. ଲୋଭେଂ

୩-ଖ. ବୈଷ୍ଣବ ଜନମାନେ

## ଗୀତ :

( ଗୁର୍ଜରୀରାଗେଣ ଗୀୟତେ )

**ସଞ୍ଚରଦଧରସୁଧାମଧୁରଧ୍ୱନମୁଖରିତମୋହନବଂଶମ୍ ।**
**ଚଳିତଦୃଗଞ୍ଚଳଚଞ୍ଚଳମୌଳିକପୋଳବଲୋଳବତଂସମ୍ ।**
**ରାସେ ହରିମିହ ବିହିତବିଲାସମ୍ ।**
**ସ୍ମରତି ମନୋ ମମ କୃତପରିହାସମ୍ ॥ ୧ ॥**

( ଧ୍ରୁବପଦମିଦମ୍ )

ରାଧିକା କହୁଛନ୍ତି—ହେ ସଖି, ଦୁଷ୍ଟକେ ମୁଁ ଅବା ଏ ଲତାରେ ଦେହକୁ ଲୁଚାଇଁ ବସିଲି । ତଥାପି ମେ ମନଃ ଶ୍ରୀକୃଷ୍ଣଂ ସ୍ମରତି । ସେ ହରି ମୋ ମନକୁ ହରିଲେ । ନେତେଣୁକରି ମୋହର ମନ ତାହାଙ୍କୁ ସ୍ମରଣା କରୁଅଛି । ସେ ହରି ଯେମନ୍ତ ଅଛନ୍ତି ତାହା କହିବା ଶୁଣ । ରାସେ । ରାସକ୍ରୀଡ଼ା ସ୍ଥାନେ । ଇହ ବୃନ୍ଦାବନଂ କଂ ଭୂତଂ । ବିହିତ-ବିଲାସଂ କୃତ କ୍ରୀଡ଼ଂ । ବିଶେଷ ଚେଷ୍ଟାକଲ ନାନାକ୍ରୀଡ଼ାକୁ ଯେ ସେ । ପୁଣି ସେ ହରି କେମନ୍ତ ଅଟଇ । କୃତ ପରିହାସଂ କୃତ କେଳିରସଂ । କଲି କେଳିରସକୁ ଯେ ସେ । ପୁନଃ କଂ ଭୂତଂ । ପୁଣି ସେ ହରି କେମନ୍ତ ଅଟଇ[1] । ସଞ୍ଚରଦଧରସୁଧାମଧୁରଧ୍ୱନି-ମୁଖରିତମୋହନବଂଶମ୍ । ହେ ସଖି, ସ୍ଖଳିତ ଅଧରାମୃତ କୋମଳଧ୍ୱନି ବାଦିତ ମୋହିତ ବେଣୁଯନ୍ତ୍ରଂ । ହେ ସଖି ସେ ହରିର ଅଧରେ ଅଛି ଯେ ଅମୃତ ତେଣେ ମିଶାଇଂ କରି କୋମଳ ଗମ୍ଭୀର ଯେ ଧ୍ୱନି ନାଦକୁ ସଚରନ୍ତୁ । ବଂଶୀରେ ପ୍ରକାଁ ମୁଖରିତ ଯେ ନାନା ପ୍ରକାରେ ଗୀତ ଛନ୍ଦ ସେ ଶବ୍ଦ କରି ସଂସାରକୁ ମୋହନ କରୁଛି ଯେ ବଂଶୀ ସେ ବଂଶୀକି ଅଧରେ ଧରିଛନ୍ତି । ପୁନଃ କଂ ଭୂତଂ ହରି । ପୁଣି ସେ ହରି କେମନ୍ତ ଅଛନ୍ତି । ଚଳିତ ଦୃଗଞ୍ଚଳ ଚଞ୍ଚଳ ମୌଳିକପୋଳବିଲୋଳ-ବତଂସମ୍ । ଚଳିତ ଦୃଗଞ୍ଚଳ ନୟନ ଯେ ପ୍ରାନ୍ତ[2] କମ୍ପିତ କର୍ଣ୍ଣଭୂଷଣଂ । ଚଳୁଛି ଯେ ଦୃଗଞ୍ଚଳ ଚକ୍ଷୁର ପିଞ୍ଛା । ଦୁଇ ପ୍ରାଣକୋଣ ଦୃଷ୍ଟି ଗମୀକି ମେ ମସ୍ତକ ତାହା ଚଞ୍ଚଳ କରି ଗୃକଳବାରେ କମ୍ପୁଛି ମୁକୁଟ ଗଣ୍ଡସ୍ଥଳ କର୍ଣ୍ଣ ଭୂଷଣ କୁଣ୍ଡଳ ଯାହାର । ଏମନ୍ତ ଯେ ହରି ତାହାଙ୍କୁ ମୋହର ମନ (ସର୍ବଦା)[3] ସ୍ମରଣା କରୁଛି । ପୁନଃ କଂ ଭୂତଂ । ସେ ହରି ପୁଣି କେମନ୍ତ ଅଟଇ ।

**ଚନ୍ଦ୍ରକଚାରୁମୟୂରଶିଖଣ୍ଡକମଣ୍ଡଳବଳୟିତକେଶମ୍ ।**
**ପ୍ରଚୁରପୁରନ୍ଦରଧନୁରନୁରଞ୍ଜିତମେଦୁରମୁଦିରସୁବେଶମ୍ ।୨**

ହେ ସଖି ! ଚନ୍ଦ୍ରାକାର ମୟୂର ପିଚ୍ଛାଧିକ ବନ୍ଧନ ସମୂହ ବେଷ୍ଟିତ ଗୁରୁଚୂଳଂ ଅର୍ଦ୍ଧଚନ୍ଦ୍ରାକୃତି ଯେ ମୟୂର ପକ୍ଷ ଉପରକୁ ମଳ ତଳକୁ ପକ୍ଷୀ ଏମନ୍ତ କରି

---

୧-ଙ. ଅଟନ୍ତି
୨-ଙ. ନନ୍ଦନୋମାନ୍ତ
୩-ଙ. ଚେ ନାହିଁ ।
୪-ଙ. ମୁଦ୍ରିତଂ

ମଣ୍ଡଳାକାର କରି ବଳୟିତ ଯେ ଚୂର୍ଣ୍ଣ ଥାଇ ଗୁରୁ ଯେ ସୁନ୍ଦର ଚାକ୍‌ଚକ୍ୟ ତହିଁରେ ବାନ୍ଧିଲା ହୋଇଁ ଯେମନ୍ତ ଦିଶୁଥାଇ ତହିଁକି ଉପମା କହିବା । ପ୍ରଚୁର ସମ୍ପୂର୍ଣ୍ଣ ଅଖଣ୍ଡିତ ପୁରନ୍ଦରଧନୁରଞ୍ଜିତ ଇନ୍ଦ୍ରଧନୁ ଭୂଷିତ ନୀଳମେଘବତ୍ ସୁନ୍ଦର ବେଶଯୁକ୍ତମ୍ । ସଂପୂର୍ଣ୍ଣ ଇନ୍ଦ୍ରଧନୁ ଉଦିତ[୧] ହୋଇଲେ ତେବେଣି କରି ଯେ ଧନୁତରେଂ କରି ମଳ ନୀଳାଭ ମେଘ ଅନୁରଞ୍ଜିତ ହୋଇଁ ଯେମନ୍ତ ସୁନ୍ଦର ଦିଶଇ ସେହିମତ ସୁବେଶ ସୁନ୍ଦର ଦିଶୁଛି ଚିଳ ବେଶ ଯାହାର । ପୁଣି ସେ ହରି କେମନ୍ତ ଅଟଇ[୨] ।

**ଗୋପକଦମ୍ବନିତମ୍ବବତୀମୁଖଚୁମ୍ବନଲମ୍ଭିତଲୋଭମ୍ ।**
**ବନ୍ଧୁଜୀବମଧୁରାଧରପଲ୍ଲବକଳିତଦରସ୍ମିତଶୋଭମ୍ । ୩ ।**

ହେ ସଖି ! ଗୋପକଦମ୍ବ ଯେ ଗୋପସମୂହମାନେ ତାହାଙ୍କର ନିତମ୍ବବତୀ ଯେ ଗୋପୀମାନେ ସେମାନଙ୍କର ମୁଖ ଚୁମ୍ବନ ଲଭିବା ପାଇଁ ଲୋଭ କରନ୍ତି ଓଷ୍ଠ ଯାହାର । ସେ ଓଷ୍ଠ କେମନ୍ତ ଅଟଇ । ବନ୍ଧୁଜୀବ ଯେ ବନ୍ଧୁକପୁଷ୍ପ ତାହାର ପ୍ରାୟେ ରକ୍ତବର୍ଣ୍ଣ ମଧୁରିଁ ଯେ ଅଧରାମୃତ ଅଛି ତହିଁ ଏମନ୍ତ ଅଧର ଯେ ମୁଖ ପଦ୍ମ ତହିଁ କଳିତ ଦିଶୁଛି । ଦରସ୍ମିତ ଯେ ଅଳ୍ପହାସ୍ୟ ତେବେଣି କରି ଶୋଭା ପାଉଛି ମୁଖ ଯାହାର ।

**ବିପୁଳପୁଲକଭୁଜପଲ୍ଲବବଳୟିତବଲ୍ଲବଯୁବତିସହସ୍ରମ୍ ।**
**କରଚରଣୋରସି ମଣିଗଣଭୂଷଣକିରଣବିଭିନ୍ନତମିସ୍ରମ୍[୩] । ୪ ।**

ହେ ସଖି ! ସେ ହରି କେମନ୍ତ ଅଟଇ[୪] । ବିପୁଳ ଯେ ବିସ୍ତାର ବାସୁକୀ ନାଗର ପ୍ରାୟେ ଲମ୍ବ ଅଟଇ ଯେ ଦୁଇଭୁଜ ସେ ହାବେ ରସ ପାଇଁ ପୁଲକିତ ହୋଇଛି । ଏମନ୍ତ ଯେ ଭୁଜ ପଲ୍ଲବ ସେ ଭୁଜେଂ କରି ବଳୟିତ ବଳୟାକୃତ ପ୍ରାୟେ ଆବୋରି ଆଲିଙ୍ଗନ କରୁଛନ୍ତି । ବଲ୍ଲବ ଯୁବତୀ ! ଗୋପନାରୀ ସହସ୍ରଂ ସେ ଷୋଳ ସହସ୍ର ଗୋପୀ ସେମାନଙ୍କର କରଚରଣ ହୃଦୟ ସେ ଆଦିକରି ସମସ୍ତଠାରେ କୃଷ୍ଣର ଅଙ୍ଗେ ଅଛନ୍ତି ସେ ଅଳଙ୍କାର ପ୍ରାୟେ ହୋଇଂ । ତାହାଙ୍କର ଅଳଙ୍କାରମାନଙ୍କରେଂ ଅଛନ୍ତି ଯେ ମଣିଗଣମାନ ତାହାଙ୍କର ଯେ କିରଣ ତେବେଣି କରି ବିଭିନ୍ନ ହୋଇଲା ତମିସ୍ର (ହୋଇଲା)[୫] ସେ ଅନ୍ଧକାର ସେହିମତ ଦିଶୁଛନ୍ତି ଯେ ଗୋପୀମାନେ । ହେ ସଖି ସେ ଗୋପୀମାନେ ଜ୍ୟୋତିର୍ଗଣ ହୋଇଲେ ତେବେ କରି ଅନ୍ଧକାର ଯେହେ

---

୧-ଖ. ଉଦିତ

୨-ଖ. ଅଟନ୍ତି

୩-ଙ. ମିସ୍ରଂ

୪-ଙ. ଅଟନ୍ତି

୫-ଖ.ରେ ନାହିଁ

ଯେମନ୍ତ ଗଗନ ଦିଶଇ ସେହିମନ୍ତ ଦିଶଇ ଦେହ ଗଗନ ଘନ ଅନ୍ଧକାର ହୋଇଲା । ସେହି ଅନ୍ଧକାର ଗୋପୀଗଣଙ୍କର ଯେହ୍ନେମନ୍ତ ଦିଶୁଛି ।

**ଜଳଦପଟଳଚଳଦିନ୍ଦୁବିନିନ୍ଦକଚନ୍ଦନତିଳକଲଲାଟମ୍ ।**
**ପୀନପୟୋଧରପରିସରମର୍ଦ୍ଦନନିର୍ଦ୍ଦୟହୃଦୟକବାଟମ୍ ।। ୫ ।।**

ହେ ସଖି, ପୁଣି ସେ ହରିଙ୍କ କି ପଟାନ୍ତର କରିବା । ଜଳଦ ଯେ ମେଘ ତାହାର ପଟଳ ଯେ ଉଦୟ ସ୍ଥାନ ଗଗନ ସେ ଗଗନରେଂ ପୌର୍ଣ୍ଣମୀ ଦିନର[୧] ରାତେଂ ଉଦୟ ହୋଇ ଚଳିଯାଉଛି ଯେ ଇନ୍ଦୁ ଚନ୍ଦ୍ର । ସେ ଚନ୍ଦ୍ରକୁ ନିନ୍ଦା କରୁଛି ଚନ୍ଦନ ତିଳକ ଯେ ଚନ୍ଦନବିନ୍ଦୁ ମଣ୍ଡଳାକାର ହୋଇଁ ଲଲାଟରେ ଯାହାର । ହେ ସଖି ପୁଣି କି ପଟାନ୍ତର ଦେବା ହରିଙ୍କ । ପୀନ ପୟୋଧର ଯେ ଗୋପୀମାନଙ୍କର ସ୍ଥୂଳ ବର୍ତ୍ତୁଳ ନିବିଡ଼ ସୁନ୍ଦର ପୟୋଧରମାନଙ୍କୁ ରତି ସଂଗ୍ରାମରେଂ ପରିସର ଯେ ସର୍ବ-ପ୍ରକାରେଂ ଧରି ମର୍ଦ୍ଦନ କରୁଛନ୍ତି । ହେ ସଖି, କୁଚମାନଙ୍କୁ ତାହାଙ୍କର ଦୟା ନାହିଁ ! ଯେତେ ନିର୍ଦ୍ଦୟ ହୃଦୟ କବାଟଂ । ହୃଦୟ ଯେ ମନ ତାହାକୁ କବାଟ ଯେ ଚୈତନ୍ୟ ସେ ନିର୍ଦ୍ଦୟ ହୋଇଲା କୁଚ ମାନଙ୍କୁ । ଏ କୁଚମାନେ ପୁରୁଷ ମାନଙ୍କର ଶତ୍ରୁ ଅଟନ୍ତି । ବଳେ ନରକକୁ ନିଅନ୍ତି ।[୨] ଏଣୁକରି ତାହାକୁ ମର୍ଦ୍ଦିବାକୁ ନିର୍ଦ୍ଦୟ ହୋଇଛନ୍ତି ଯେ ହରି ତାହାଙ୍କୁ ମୋ ମନ ସୁମରଣା କରୁଛି ।

**ମଣିମୟମକରମନୋହରକୁଣ୍ଡଳମଣ୍ଡିତଗଣ୍ଡମୁଦାରମ୍ ।**
**ପୀତବସନମନୁଗତମୁନିମନୁଜସୁରାସୁରବରପରିବାରମ୍ ।। ୬ ।।**

ହେ ସଖି, ମଣିମୟ ଯେ ନାନା ମଣିମାନଙ୍କରେ କରି ନିର୍ମାଣ ହୋଇଛି ମନୋହର ଯେ ମକର କୁଣ୍ଡଳ ତେଣେ ମଣ୍ଡିତ ହୋଇଛି । ଗଣ୍ଡମୁଦାରଂ । ଉଦାରଂ ଉତ୍କୃଷ୍ଟଂ ଗଣ୍ଡସ୍ଥଳଂ ଯସ୍ୟ । ହେ ସଖି, ଗଣ୍ଡ ଯେ କପୋଳ ତାହାର ସ୍ଥଳ ଯେ ଗଣ୍ଡଦେଶ ତହିଁ ଯେ ମକର କୁଣ୍ଡଳ ତେଣେ ମଣ୍ଡିତ ହୋଇ ଶୋଭା ପାଉଛି ଗଣ୍ଡସ୍ଥଳ ଯାହାର । ପୁନଃ କିଂ ଭୂତଂ । ସୁରାସୁର ବର ପରିବାରଂ । ଅନୁଗତ ହୋଇଁ ସେବା କରିବାକୁ ଆଇଲେ ପଦାରବିନ୍ଦ ତଳକୁ ଯେ ମୁନିମାନେ ମନୁଜ ଯେ ମନୁଷ୍ୟମାନେ ସୁର ଯେ ଦେବତାମାନେ ସୁରବର ଯେ ବ୍ରହ୍ମା ରୁଦ୍ର ସନକାଦିମାନେ ଏମାନଙ୍କର ସେବା ସମ୍ଭାଳିବାର ଆସ୍ଥାନ ଅଟଇ । ଧରି ଅଟଇ ପୀତବସ୍ତ୍ର ଯାହାର ।

---

୧-ଖ. ଦିନରେଂ

୨-ଖ. ନେଅନ୍ତି ।

**ବିଷଦକଦମ୍ବତଳେ ମିଳିତଂ କଳିକଳୁଷଭୟଂ ଶମୟନ୍ତମ୍ ।**
**ମାମପି କମପି ତରଙ୍ଗଦନଙ୍ଗଦୃଶା ମନସା ରମୟନ୍ତମ୍ ॥ ୭ ॥**

ହେ ସଖି, ସ୍ୱପନେ ମୁଁ ଦେଖିଲି ସ୍ୱପ୍ନ କଦମ୍ବ, କୃଷ୍ଣ ଯମୁନା ତଟଂ ଅସ୍ତି । ତସ୍ୟ ତଳେ ମିଳିତଂ ସ୍ଥିତଂ । ଯମୁନା ତଟ ଭୂତଂ । ପୁଣି ସେ ହରି କେମନ୍ତ ଅଟନ୍ତି । କଳିକଳୁଷ ଭୟଂ ଶମୟନ୍ତଂ । କଳିଯୁଗର କଳୁଷ ଯେ ପାପ । ତାହାର ଭୟ । ଜଗତର ଲୋକମାନଙ୍କର ଭୟ ଶମୟନ୍ତଂ । ନାଶୟନ୍ତଂ । କଳିକଳୁଷ ଭୟ ଦର୍ଶନ ମାତ୍ରକେ ନାଶ କରୁଛନ୍ତି । ହେ ସଖି, ଏମନ୍ତ ଯେ ହରି ସେ ମାମପି କମପି ସେ ମୋତେ କଥା ରମିବ । ଆନକୁ କି କଥା ରମିବ । ସେ କେମନ୍ତ ଅଟନ୍ତି । ତରଙ୍ଗ ଅନଙ୍ଗ ଦୃଶା । କାମ ଦୃଷ୍ଟି ନେତ୍ର କରି ରାଧାଙ୍କର ମନ ବଡ଼ ଚଞ୍ଚଳ । ସେ ହରିଙ୍କ କେବଳ ମନସା ରମୟନ୍ତଂ । କେବଳ ମନେ ଧ୍ୟାନ କରି ସେ ରମୁଛନ୍ତି । ସାକ୍ଷାତ କରି କେମନ୍ତେ ପାଇବି । ତାଙ୍କୁ ଜଣାଅ କହ ।

**ଶ୍ରୀଜୟଦେବଭଣିତମତିସୁନ୍ଦରମୋହନମଧୁରିପୁରୂପମ୍ ।**
**ହରିଚରଣସ୍ମରଣଂ ପ୍ରତି ସଂପ୍ରତି ପୁଣ୍ୟବତାମନୁରୂପମ୍ ॥ ୮ ॥**

କବି ବଦନ୍ତି । କବି ଯେ ଜୟଦେବ ସେ ଏମନ୍ତ ବୋଲୁଛନ୍ତି । ହେ ବୈଷ୍ଣବମାନେ ଶୁଣ । ଜୟଦେବ ଭଣିତଂ ଗୀତଂ । ଜୟଦେବର ଯେ ଭଣିଲ ଗୀତ । ଏ କେମନ୍ତ ଅଟଇ । ଅତି ସୁନ୍ଦରଂ କେମନ୍ତେ ଅତି ସୁନ୍ଦର ତାହା କହିବା । ମୋହନମଧୁରିପୁରୂପଂ । ଅତ୍ୟନ୍ତ ରମଣୀୟ ସଂସାର ମୋହନ ଗୋବିନ୍ଦ ରୂପଂ । ଏତଦ୍ ବର୍ଣ୍ଣନେନ । ଏ ରୂପ ବର୍ଣ୍ଣନେ କରି ସୁନ୍ଦର ଅଟଇ । ପୁଣି କେମନ୍ତେ ଅଟଇ । ହରି ଚରଣସ୍ମରଣଂ । ପ୍ରତି ସଂପ୍ରତି । ହରି ଚରଣ ସ୍ମରଣ କରିବାକୁ ଅତି ସୁନ୍ଦର ଅଟଇ । ଏବଂ ବଶିଷ୍ଟଂ ଗୀତଂ ସଂପ୍ରତି ଇଦାନୀଂ ପୁଣ୍ୟବତାଂ ଅନୁରୂପଂ ପୁଣ୍ୟକଳ ଲୋକମାନଙ୍କର ଅନୁକୂଳ ରୂପଂ ଭବନ୍ତୁ । ମନୋବାଞ୍ଛିତ ଚତୁର୍ବର୍ଗଂ ଦଦନ୍ତୁ । ମନୋ ବାଞ୍ଛିତ ଚତୁର୍ବର୍ଗ ଦେଉ ।

**ଶ୍ଳୋକ**

**ଗଣୟତି ଗୁଣଗ୍ରାମଂ ଭ୍ରାମଂ ଭ୍ରମାଦପି ନେହତେ**
**ବହତି ଚ ପରିତୋଷଂ ଦୋଷଂ ବିମୁଞ୍ଚତି ଦୂରତଃ ।**
**ଯୁବତିଷୁ ବଳତ୍ତୃଷ୍ଣେ କୃଷ୍ଣେ ବିହାରିଣି ମାଂ ବିନା**
**ପୁନରପି ମନୋ ବାମଂ କାମଂ କରୋତି କରୋମି କିମ୍ ॥ ୯ ॥**

ରାଧା କହୁଛନ୍ତି—ହେ ସଖି, ମୁଁ ଅବା କୋଟିଏ କୃଷ୍ଣଙ୍କୁ ଦୋଷ ବହୁତଂ ମୋତେ ନିନ୍ଦି ଲାଗୁଛି ବସିଲି । ତଥାପି ମୋହର ମନ କେବେହେଁ କୃଷ୍ଣଙ୍କୁ ନ

୧-ଜା. ଠାଣିଙ୍କ ୨ ଖ. ବହନ୍ତ

ଛାଡ଼ଇ । କୃଷ୍ଣର ଗୁଣମାନଙ୍କୁ ଗଣୟନ୍ତି । ଗଣା କରୁଛି । ଭ୍ରାମଂ ଭ୍ରମାଦପି ନେହ୍ୱରେ । ଭ୍ରାମଂ କୃଷ୍ଣାପରାଧଂ ଭ୍ରମାତ୍ ପ୍ରମାଦାତ୍ । ଅପି ନ ଈହନ୍ତେ । କୃଷ୍ଣ ମୋତେ ଯେ କେତେ[1] ତାପ କରାଉଛନ୍ତି ସେ କଥା ଭ୍ରମ ପାଇଁ ହିଁ ନ ସ୍ମରନ୍ତି । ଅନ୍ୟ କରି ହିଁ ନ ସ୍ମରଣ ନ କରଇ । ଆଉ ଅଧିକେ ତାହାଙ୍କୁ ବହନ୍ତି ଚ ପରିତୋଷଂ । କୃଷ୍ଣଙ୍କୁ ସମସ୍ତ ପ୍ରକାରେଂ ସନ୍ତାପ ପାଇଁ ବୈରାଗ ନ କରଇ । ପୁନଃ ପୁନ ଦୋଷଂ ବିମୁଞ୍ଚତି ହୃଦୟଃ । ମୋ କୃଷ୍ଣର ଯେତେ ଦୋଷ ତାହା ହୃଦୟଂ[2] ବିମୁଞ୍ଚି । ଛାଡ଼ଇ । ପାଇଁ । ଦୋଷ ନ ଦେଖଇ । ହେ ସଖି ମୋ କୃଷ୍ଣ କେମନ୍ତ ଅଟଇ ।[3] ଯୁବତିଷୁ ବଲଦ୍‌ତୃଷ୍ଣେ କୃଷ୍ଣେ ବିହାରିଣି ମାଂ ବିନା । (ଯୁବତିଷୁ । ସ୍ତ୍ରୀ ମାନଙ୍କର ତର୍ଷେ ବଳନ୍ତି ସମସ୍ତ ପ୍ରକାରେଂ ତୃଷ୍ଣା ଯେ ଯୋଗ୍ୟ ତାହାଙ୍କର । ଏମନ୍ତ ଯେ କୃଷ୍ଣ ସେ ବିହାରିଣି ମାଂ ବିନା ।)[4] ମୋ ମତେ ମାନ ଗ୍ରସ୍ତ ବନେରେଂ ବିହରୁଅଛନ୍ତି । ଗୋପାଳ ସମର୍ଥ ମାନଙ୍କୁ ଦେଇ । ତଥାପି ପୁନରପି ମନୋବାଞ୍ଛିତଂ ମୋ କୃଷ୍ଣ ପ୍ରତି ଆଉ ଥରେ ମୋହର ମନ ବାମଂ ବନ୍ଧ ହୋଇ କାମଂ କରୁଅଛି । ଆଜ ଏବେ କୃଷ୍ଣର ସଙ୍ଗେ କ୍ରୀଡ଼ା କରିବାକୁ ଇଚ୍ଛା କରନ୍ତିଂ । କରୋମି କିଂ । ମୁଁ କି କରିବି ।

**ଗୀତ—**

(ଗୁର୍ଜରୀକେଦାରେଣ ଗୀୟତେ)

**ନିଭୃତନିକୁଞ୍ଜଗୃହଂ ଗତୟା ନିଶି ରହସି ନିଲୀୟ ବସନ୍ତମ୍ ।**
**ଚକିତବିଲୋକିତସକଲଦିଶା ରତିରଭସବଶେନ[5] ହସନ୍ତମ୍ ।**
**ସଖି ହେ ! କେଶିମଥନମୁଦାରମ୍ ।**
**ରମୟ ମୟା ସହ ମଦନମନୋରଥଭାବିତୟା ସବିକାରମ୍ ॥ ୧ ॥**

(ଧ୍ରୁବପଦମିଦମ୍)

ରାଧିକା କହୁଅଛନ୍ତି—ହେ ସଖି, ଉଦାରଂ ଉତ୍କୃଷ୍ଟଂ ସୁନ୍ଦରଂ ସର୍ବ ଜଗନ୍ମୋହନଂ କେଶିମଥନ ମୟା ସହ ରମୟ । ହେ ସଖି, କେଶି ଦୈତ୍ୟଙ୍କୁ ଭୁଜ ଦଣ୍ଡରେଂ କରି ମଥିଲେ ଯେ କୃଷ୍ଣ ତାହାଙ୍କର ସଙ୍ଗେତ ମୋତେଂ ରମୟ-କ୍ରୀଡ଼ା କରାଅ । ସେ କେମନ୍ତ ଅଟନ୍ତି । ଉଦାରଂ । ସୁନ୍ଦରଂ । ମନମୋହନଂ । ସର୍ବୋପରି ଅଧିକଂ । ମୟା କଂ ଭୂତୟା । ମଦନ ମନୋରଥ ଭାବିତୟା କାମବାଞ୍ଛିତୟା । ପ୍ରିୟ

---

୧-ଖ. ସେତେ
୨-ଖ. ହୃଦୟଂ
୩.ଖ. ଅଟନ୍ତି
୪-କ. ରେ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।
୫-କ. ରଭସେନ

ସକାମ ସ୍ପୃହା ବ୍ୟାପ୍ତିଯସ୍ଥା । ମଦନ କାମ ଯୁକ୍ତ ଯେ ମନ ସେ ଭାବୁଛି ଅତ୍ୟନ୍ତ ଇଚ୍ଛା କରି କୃଷ୍ଣ କ୍ରୀଡ଼ାକୁ ଆଶା କରୁଅଛି । ସେ କୃଷ୍ଣ କେମନ୍ତ ଅଟନ୍ତି । ସବିକାରମ୍ । କାମ ବିକାର ଜାତ ଯୁକ୍ତଂ । ହେ ମୋହର ମନ କାମ କ୍ରୀଡ଼ାକୁ ଇଚ୍ଛା କରୁଛି । ହେ ସଖି, ତାହାଙ୍କୁ ଏକାନ୍ତ ରମିବା ପାଇଁ ଦେଖ ମୁଁ ନାଗି ଗଲେଁ ନିଭୃତ ନିକୁଞ୍ଜ ଗୃହଂ ଗତୟା । ନିର୍ଜନ ଅତି ଗହନ ନିକୁଞ୍ଜ ଲତା ଘରେ ପଶିଛି । ଏବେ ତୁ କୃଷ୍ଣ ତାଙ୍କୁ ନେବାରେ ଯା । ସେ କୃଷ୍ଣ ମୋ ନିମନ୍ତେ ଗୋପୀ ଗଣଙ୍କୁ ଛାଡ଼ି ଏକାନ୍ତ ହୋଇ ଚକିତ ବିଲୋକିତ । ଚକିତ ହୋଇ ଗୃହକୁ ଚାହାନ୍ତି । ସକଳ ଦିଗ ମାନଙ୍କୁ । ମେଖି ମତ୍ତ ହୋଇ ସେ କୃଷ୍ଣ ରତିରଭସବଶେନ ହସନ୍ତଂ । ଶୃଙ୍ଗାର ଉପଭୋଗ କରିବାର ଉଦ୍ଭବ ହାସ୍ୟଯୁକ୍ତଂ । ରତି କ୍ରୀଡ଼ାକୁ ଅତିବେଗ ହାସ୍ୟ ବଦନ ହୋଇଛନ୍ତି ।

**ପ୍ରଥମସମାଗମଲଜ୍ଜିତୟା ପଟୁଚାଟୁଶତୈରନୁକୂଳମ୍ ।**
**ମୃଦୁମଧୁରସ୍ମିତଭାଷିତୟା ଶିଥିଳୀକୃତଜଘନଦୁକୂଳମ୍ ॥ ୨ ॥**

ହେ ସଖି, ତୁ କୃଷ୍ଣଙ୍କୁ ଏଠାକୁ ଆଣିଲେ ମୁଁ ସେ ହରିଙ୍କ ଶୃଙ୍ଗାର ମାଧବଂ ପ୍ରଥମ ସମାଗମ ଲଜ୍ଜିତୟା । ପ୍ରଥମ ସମାଗମରେଂ ଲଜ୍ଜା ପାଇଁ ଭୟ କରିଥିବି । [୧] ସେ କୃଷ୍ଣ ପୁଣି ଆସି ମୋତେ ପଟୁ ଚାଟୁ ଶତୈରନୁକୂଳଂ । ପଟୁ ଯେ ବଚନ ଦକ୍ଷ ଚତୁର ଅଟଇ ସେ ହରି ଶତେକଥା ପ୍ରକାରେଂ ଚାଟୁକଥା କହିବାକୁ ବଡ଼ ଚତୁର । ସେ ମୋତେ ଅନେକ ଚାଟୁଆଳି ସେବକର ପ୍ରାପ୍ତେ ହୋଇ ନିକଟେ ବସିବ । ମୁଁ ପୁଣି ତାହାଙ୍କୁ ମୃଦୁ ମଧୁର ସ୍ମିତ ଭାଷିତୟା ମୃଦୁ କୋମଳ ମଧୁର ସୁନ୍ଦର ଭାଷା[୨] ମନୋହର ହାସ୍ୟମୁଖେ କରି କହୁ କହିବି । ସେ କୃଷ୍ଣ ପୁଣି ଭରସା ପାଇ ମୋହର ଶିଥିଳୀକୃତଜଘନ ଦୁକୂଳଂ ମୋହର ଜଘନ ବସ୍ତ୍ରକୁ ଶିଥିଳ ଉଶ୍ୱାସ କରିବେ । ପଦ୍ମ ହସ୍ତେକରି ଗ୍ରନ୍ଥି ମୋଚନ କରିବେ

**କିଶଳୟଶୟନନିବେଶିତୟା ଚିରମୁରସି ମମୈବ ଶୟାନମ୍ ।**
**କୃତପରିରମ୍ଭଣଚୁମ୍ବନୟା ପରିରଭ୍ୟ କୃତାଧରପାନମ୍ ॥ ୩ ॥**

ହେ ସଖି, ମୁଁ କୃଷ୍ଣର ହସ୍ତ ଲାଗିଲା ମାତ୍ରକେ କାମରେ ଅଜ୍ଞାନ ହୋଇଁ କିଶଳୟ ଶୟନ ନିବେଶିତୟା । କିଶଳୟ ଯେ କୋମଳ ପତ୍ର ଶଯ୍ୟା ତହିଁ ଶୋଇଥିବି । ସେ କୃଷ୍ଣ ଆସି ଚିରଂ ଅପାରବେଳ ପର୍ଯ୍ୟନ୍ତଂ ଉରସି ମମୈବ ଶୟାନଂ । ବହୁତ ବେଳ ପର୍ଯ୍ୟନ୍ତ ମୋହର ହୃଦୟରେ ଲାଗି ଶୋଇବେ । ମୁଁ ତାହାଙ୍କୁ

୧-ଅ. କରିଥିବି
୨-ଅ. ଭାଷ୍ୟ

କୃତପରିରମ୍ଭଣଚୁମ୍ବନୟା ପରିରମ୍ଭ ଯେ ଆଲିଙ୍ଗନ କରିବାକୁ ବାଞ୍ଛିବି । ସେ କୃଷ୍ଣ ପୁଣି ମୋତେ ପରିରଭ୍ୟ କୃତାଧରପାନଂ । ଆଲିଙ୍ଗନ କରି ଅଧର ପାନ କରିବେ । ମୁଁ ପୁଣି ଚୁମ୍ବନରସ ପାଇଁ ଆନନ୍ଦ ହୋଇ ଯେମନ୍ତ ହୋଇବି ତାହା ଶୁଣ ।

**ଅଳସନିମୀଳିତଲୋଚନୟା ପୁଲକାବଳିଲଳିତକପୋଳମ୍**
**ଶ୍ରମଜଳସିକ୍ତ[1]କଳେବରୟା ବରମଦନମଦାଦତିଲୋଳମ୍ । ୪ ।**

ହେ ସଖି ! ମୟା କିଂ ଭୂତୟା । ମୁଁ କେମନ୍ତ ହୋଇଁଥିବି । ଅଳସ ନିମୀଳିତ ଲୋଚନୟା । ତଦ୍ରସ ଧ୍ୟାନଗମ୍ୟ ନିମିଳିତ ଲୋଚନୟା । ମୁଁ କାମ ଅଳସେଂ କୃଷ୍ଣର ସଙ୍ଗ ରସକୁ ଧ୍ୟାନକରି ନିମୀଳନ ବୁଜିଥିବି ଦୁଇ ଲୋଚନ । ସେ କୃଷ୍ଣ ପୁଲକାବଳି ଲଳିତ କପୋଳଂ । ପ୍ରେମ ପଂକ୍ତି ରମଣୀୟ ଗଣ୍ଡସ୍ଥଳଂ ଚନ୍ଦ୍ର ସଂଯୋଗ ଆହ୍ଲାଦେ କରି ପ୍ରେମ ପୁଲକେ କରି ରମଣୀୟ । ମନୋହର ହୋଇଥିବ କପୋଳ ତାହାଙ୍କର । ମୁଁ ପୁଣି ଶ୍ରମଜଳ ସକଳ କଳେବରୟା । ଶ୍ରମଜଳେଂ କରି ସଂପୂର୍ଣ୍ଣ ହୋଇଁଥିବ ସମସ୍ତ କଳେବର ଯାହେଂ । କୃଷ୍ଣ ପୁଣି କେମନ୍ତ ହୋଇଁଥିବେ । ବର ମଦନ ମଦାଦତି ଲୋଳଂ ଉତ୍କୃଷ୍ଟ କାମ ମତ୍ତତାବାରୁ ଅତିଲୋଳଂ ଅତି ଚଞ୍ଚଳ ହୋଇଥିବେ ।

**କୋକିଳକଳରବକୂଜିତୟା ଜିତମନସିଜତନ୍ତ୍ରବିଚାରମ୍ ।**
**ଶ୍ଳଥକୁସୁମାକୁଳକୁନ୍ତଳୟା ନଖଲିଖିତଘନସ୍ତନଭାରମ୍ ॥ ୫ ॥**

ହେ ସଖି ! ମୁଁ ସେ କୃଷ୍ଣଙ୍କୁ କୋକିଳ କଳରବ କୂଜିତୟା କୋକିଳ କଳରବ ଯେ ଗମ୍ଭୀର ନାଦ ସେହିମନ୍ତ କରି କୃଷ୍ଣଙ୍କୁ ବଚନ କହିବି । ସେ କୃଷ୍ଣ କେମନ୍ତ ଅଟନ୍ତି । ଜିତ ମନସିଜ ତନ୍ତ୍ର ବିଚାରଂ । ଜିଣିଛନ୍ତି କାମତନ୍ତ୍ର ବିଚାର ଚତୁଃ ଷଷ୍ଟୀକଳା ଶୃଙ୍ଗାର ରସକୁ । ମୁଁ ଶ୍ଳଥ କୁସୁମାକୁଳ କୁନ୍ତଳୟା । ରତି ପ୍ରବୃତ୍ତେ ଶ୍ରୀକୃଷ୍ଣର ହସ୍ତ ଲାଗି ଉଶ୍ୱାସ ହୋଇଛି ଯେ କୁନ୍ତଳ ଯେ କବରୀ ଭାର ତାହା ଭିତରୁଂ ଖସି ପଡ଼ୁଥିବା କୁସୁମମାନେ । ସେ କୃଷ୍ଣ ପୁଣି ଲିଖିତ ଘନସ୍ତନ ଭାରଂ ମୋହର ଘନ ନିବିଡ଼ ଯେ ସ୍ତନ ଭାର ତହିଁ ନଖକ୍ଷତ ଲେଖନ କରିବ ।

**ଚରଣରଣିତମଣିନୂପୁରୟା ପରିପୂରିତସୁରତବିତାନମ୍ ।**
**ମୁଖରବିଶୃଙ୍ଖଳମେଖଳୟା ସକଚଗ୍ରହଚୁମ୍ବନଦାନମ୍ ॥ ୬ ॥**

ହେ ସଖି ! ପୁଣି ମୁଁ ଚରଣ ରଣିତ ମଣି ନୂପୁରୟା ମୋହର ଚରଣରେ ମଣି ନିର୍ମିତ ନାନା ମଣିମାନଙ୍କର[2] ବନ୍ଧନ ହୋଇଛି । ଯେ ନୂପୁର ରଣିତ ରଣତ୍କାର

---

୧—ଖ. ଶ୍ରମଜଳସକଳ
୨-ଙ ମାନଙ୍କରେ

ଶିଞ୍ଜନ୍ହଂସର ପ୍ରାୟେ ମନୋଜ୍ଞ ଶବ୍ଦ କରୁଛନ୍ତି । ସେ କୃଷ୍ଣ ପରିପୂରିତ ସୁରତ ବିତାନଂ । ସମ୍ପୂର୍ଣ୍ଣ ଶୃଙ୍ଗାର ରସେ ପରିପୂର୍ଣ୍ଣ ଅଛନ୍ତି । ମୁଁ ଯାହେ ମୁଖରିବ ଶୃଙ୍ଖଳ ମେଖଳୟା ବାଦ୍ୟମାନ କରି ମେଖଳ ବନ୍ଧନୟା ଶବ୍ଦ କରୁଛନ୍ତି । ସୁବର୍ଣ୍ଣ କ୍ଷୁଦ୍ର ଘଣ୍ଟି ମାନେ ଯେ କଟି ମେଖଳାରେ ମୋହର । ସେ କୃଷ୍ଣ ଆସି ମୋତେ କଚଗ୍ରହ ଚୁମ୍ବନ ଦାନଂ । ମୋହର କଚ ଯେ କବରୀ କେଶ ବେଶ ତହିଁରେ ହସ୍ତ ଦେଇଁ ମୋତେ ଚୁମ୍ବନ ଦେବେ । ସେ ଚୁମ୍ବନେ କରି ମୁଁ ଯେମନ୍ତ ହୋଇଥିବି ତାହା ଶୁଣ ।

**ରତିସୁଖସମୟରସାଳସୟା ଦରମୁକୁଳିତନୟନସରୋଜମ୍ ।**
**ନିଃସହନିପତିତତନୁଲତୟା ମଧୁସୂଦନମୁଦିତମନୋଜମ୍ ॥ ୭ ॥**

ହେ ସଖି ! ମୁଁ କୃଷ୍ଣଙ୍କୁ ସେ ଚୁମ୍ବନାଦ ଯେ ରତିସୁଖ ସେତେବେଳେ ଜାତ ହୋଇବ ଯେ ରସ ସେ ରସେ କରି । ଅଳସବତୀ ମୈଥୁନ ସମୟ ସୁଖ ରସେନ । ମୈଥୁନ ସୁଖ ରସେ କରି ଅଳସବତୀ ହୋଇଥିବି । ସେ କୃଷ୍ଣ ଦର ମୁକୁଳିତ ନୟନସରୋଜଂ ଅଳ୍ପ ମୁକୁଳିତ ବିକଶିତ ନୟନ ହୋଇ ସେ ମୁଖପଦ୍ମ କରି ମୋତେ ଗ୍ରହୁଁଥିବେ । ସେ କୃଷ୍ଣର ନିକଟେ ରତି ଶ୍ରମେ କରି ନିଃସହ ନିପତିତ ତନୁଲତା ତୟା[1] ରତି ଶ୍ରମ ନିଃପ୍ରାଣ ପତିତ ଦେହ । ରତି ଶ୍ରମେ ମୁଁ ନିର୍ଜୀବ ପ୍ରାୟେ ହୋଇ ପଡ଼ିଥିବି । ସେ କୃଷ୍ଣ ପୁଣି କେମନ୍ତେ ହୋଇଥିବେ ମଧୁସୂଦନ ମଧୁନାମେ ଦୈତ୍ୟଙ୍କୁ ମାରିଛନ୍ତି ସେ । ମୋହର ନିକଟେ ମୁଦିତ ମନୋଜଂ ବସନ୍ତ କାଳ ରମେ କରିଂ ଉଦୟ ହୋଇଛି ଯେ କନ୍ଦର୍ପ ସେହିମନ୍ତ ଦିଶୁଥିବେ ।

**ଶ୍ରୀଜୟଦେବଭଣିତମିଦମତିଶୟମଧୁରିପୁନିଧୁବନଶୀଳମ୍ ।**
**ସୁଖମୁତ୍କଣ୍ଠିତରାଧିକୟା କଥିତଂ ବିତନୋତୁ ସଲୀଳମ୍ । ୮ ।**

ଜୟଦେବ କବି କହୁଛନ୍ତି—ହେ ବୈଷ୍ଣବ ଜନମାନେ, ଶୁଣ । ଇଦଂ ଜୟଦେବ ଭଣିତଂ ଗୀତଂ । ଜୟଦେବ କବିର ଭଣିଲା ଏ ଗୀତ । ଏ ଗୀତ କେମନ୍ତ ଅଛି । ଅତିଶୟ ମଧୁରିପୁ ନିଧୁବନ ଶୀଳଂ । ଅତିଶୟସୁରତବିଷୟାସକ୍ତଂ । ଅତିଶୟ ଯେ ଅତ୍ୟନ୍ତ ହୋଇଁ ଶ୍ରୀକୃଷ୍ଣର ରତିକ୍ରୀଡ଼ା[2] ବିଷୟ କଥନଂ । କଥା ଅଛଇ । ପୁନଃ କିଂ ଭୂତଂ । ଏ ଗୀତ ପୁଣି କେମନ୍ତ ଅଛଇ । ସୁଖମୁତ୍କଣ୍ଠିତରାଧିକୟା କଥିତଂ । ରତି ସୁଖରେ ଉତ୍କଣ୍ଠା ହୋଇ ରାଧିକା ଦୂତୀର ଆଗେ କହିଲାର କଥା ଯେ । ପୁନଃ କିଂ ଭୂତଂ । ଏ ଗୀତ ପୁଣି କେମନ୍ତ ଅଛଇ । ବିତନୋତୁ ସଲୀଳଂ । ଏ ଗୀତ

---

୧-ଟୀ: ତନୁଲତୟା
୨-ଟୀ. ରମକ୍ରୀଡ଼ା

ଶୁଣିଲି ଲୋକମାନଙ୍କର ଲୀଳା ସମ୍ବନ୍ଧ ଯେ ହରି ବିଷୟେ ଭକ୍ତିଯୋଗ ତାହା ବିଚାରିଲୁ । ବିସ୍ତାର କରି ପ୍ରକାଶ କରୁଛି । ତଦନନ୍ତରେ ରାଧିକା କହୁଛନ୍ତି—ହେ ଦୂତି, ସେ କୃଷ୍ଣର କଥା ଆଜ ସବୁ ନୋହିଲା । ଶୁଣ ମୋତେ ଯେତେ ତାପ ଜାତ ହେଉଛି ।

**ଶ୍ଳୋକ :**

**ହସ୍ତସ୍ରସ୍ତ[1]ବିଳାସବଂଶମନୃଜୁ ଭ୍ରୂବଲ୍ଲିମଦ୍‌ବଲ୍ଲବୀ**
**ବୃନ୍ଦୋତ୍ସାହିଦୃଗନ୍ତବୀକ୍ଷିତମତିସ୍ୱେଦାର୍ଦ୍ରଗଣ୍ଡସ୍ଥଳମ୍ ।**
**ମାମୁଦ୍‌ବୀକ୍ଷ୍ୟ ବିଲକ୍ଷିତସ୍ମିତସୁଧାମୁଗ୍ଧାନନଂ କାନନେ**
**ଗୋବିନ୍ଦଂ ବ୍ରଜସୁନ୍ଦରୀଗଣବୃତଂ ପଶ୍ୟାମି ହୃଷ୍ୟାମି ଚ ।। ୩ ।।**

ରାଧିକା କହୁଛନ୍ତି—ହେ ଦୂତି, ମୁଁ କାନନେ ବନମଧ୍ୟ ହୋଇ ଗୋବିନ୍ଦଙ୍କୁ ଦେଖି ହୃଷ୍ୟାମି । ବଡ଼ ହର୍ଷ ପାଉଛି । ପ୍ରନଷ୍ଟାର୍ଥିତ ହୃଷ୍ୟାମି । ପୁଣି ବେଷ ହିଁ ପାଉଛି । ସେ ଗୋବିନ୍ଦଂ କିଂ ଭୂତଂ । ସେ କୃଷ୍ଣ କେମନ୍ତ ହୋଇଛନ୍ତି ତାହା କହିବି । ବ୍ରଜସୁନ୍ଦରୀଗଣବୃତଂ । ଗୋପ ସୁନ୍ଦରୀମାନେ ମଣ୍ଡଳାକାର କରି ଆବୋରିଛନ୍ତି । ସେଥିରୁ କରି ହରଷ ବେଶ ପାଉଛି । ପୁନଃ କିଂ ଭୂତଂ । ସେ ଗୋବିନ୍ଦ କେମନ୍ତ ହୋଇଁ ଗୋପୀମାନଙ୍କର ମଧ୍ୟେ ଅଛନ୍ତି ତାହା ଶୁଣ । ହସ୍ତ ସ୍ରସ୍ତ ବିଳାସ ବଂଶଂ । ରତି ସୁଖରେଂ କରି ହସ୍ତାତ୍ ଭ୍ରଷ୍ଟଂ କାମଶରବତ୍ ବେଣୁଂ । ରତି ସୁଖରେ ଆସକ୍ତ ହୋଇଁ ହସ୍ତରେ ଧରିଥିଲେ ଯେ ବିଳାସ ବଂଶୀ । ସେ ବଂଶୀ କେମନ୍ତ ଅଟଇ । କାମବାଣ ତୁଲ୍ୟବତ୍ । [2]କାମଦେବ ତାର ବାଣ ଥୋଇବାର ସ୍ଥାନ ପ୍ରାପ୍ତେ । ସେ ବଂଶୀ ରତି ରସ ହୋଇଲେଂ ହସ୍ତରୁଂ ଖସି ଅ ଆନ୍ତ ହୋଇଁ ଭୂମିରେ ଠେକ ପଡ଼ିବା ମାତ୍ରେକ ସେ କୃଷ୍ଣଙ୍କୁ ଅନୃଜୁ ଭ୍ରୂବଲ୍ଲିମଦ୍ ବଲ୍ଲବୀ ବୃନ୍ଦୋତ୍ସାହି ଦୃଗନ୍ତ ବୀକ୍ଷିତଂ ବକ୍ରଜୁବଙ୍କା ଅନୃଜୁ ଭ୍ରୂବଲ୍ଲିବତ୍ । ଅନୃଜୁ ବୋଇଲେ ବଙ୍କ ହୁଅଇ ଭ୍ରୂଲତା ଏମନ୍ତ ସୁନ୍ଦର ଭ୍ରୂଲତା ଗୋପନାରୀ ସମୂହ ତାହାଙ୍କର ଉତ୍ସାହ ଦୃଗନ୍ତ ବୀକ୍ଷିତଂ[3] । ଅଧ୍ୟବସାଦା ଲୋକନ ଦର୍ଶନାନ୍ତ ଗତଂ ମନସ୍ତ ଗୋପସୁନ୍ଦରୀମାନେ ଶୁଙ୍ଘିଲେ ସମ୍ପୂର୍ଣ୍ଣ ଚକ୍ଷୁ ହୋଇ । ପୁନଃ କିଂ ଭୂତଂ । ପୁଣି ସେ ଗୋବିନ୍ଦ କେମନ୍ତ ଅଟନ୍ତି । ଅତି ସ୍ୱେଦାର୍ଦ୍ର ଗଣ୍ଡ ସ୍ଥଳଂ । କାମଦେବ ଅତିଶୟୋତ୍ପନ୍ନ କପୋଳଂ । କାମକେଳି ଅତିଶ୍ରମେ କରି ସ୍ୱେଦ ଜର୍ଜର ହୋଇଛି କପୋଳ । ପୁନଃ କିଂ ଭୂତଂ । ମାମୁଦ୍‌ବୀକ୍ଷ୍ୟ ବିଲକ୍ଷିତସ୍ମିତସୁଧାମୁଗ୍ଧାନନଂ । ମୋତେ ଦେଖି ବିଲକ୍ଷିତ ବଡ଼ ଲଜ୍ଜା ପାଇ ହସିଲ । ଅମୃତମୟ ହୋଇ । ସେତେଣେ କରି ମୁଗ୍ଧାନନଂ । ସୁନ୍ଦର ଦିଶୁଛି ବଦନ । ଏମନ୍ତ

---

୧-ଖ. ହସ୍ତଚ୍ୟୁତ
୨-ଖ ବିହିତ ।
୩. ରକ୍ଷିତଂ ।

ଗୋବିନ୍ଦଙ୍କୁ କାନନେ ଦେଖି ମୁଁ ହରଷ ହୋଇ ଦୂର ଚାହିଁଛି । ଏଣୁକରି ମୋତେ ସୁଖ ନାହିଁ । ଶୁଣ କହିବା ।

**ଦୂରାଲୋକଃସ୍ତୋକସ୍ତବକନବକାଶୋକଲତିକା-**
**ବିକାଶଃ କାସାରୋପବନପବନୋଽପି-ବ୍ୟଥୟତି ।**
**ଅପି ଭ୍ରାମ୍ୟଦ୍ଭୃଙ୍ଗୀରଣିତରମଣୀୟା ନ ମୁକୁଳ-**
**ପ୍ରସୂତିଶ୍ଚୂତାନାଂ ସଖି ଶିଖରଣୀୟଂ ସୁଖୟତି ।। ୪ ।।**

ରାଧା ବୋଲୁଛନ୍ତି—ହେ ସଖି ! ମାଂ ବ୍ୟଥୟନ୍ତି । ମୋତେ ବ୍ୟଥା କରାଉଛନ୍ତି । ତୁ ଯେ ବୋଲିବୁ କେ ବ୍ୟଥୟନ୍ତି । କେ ବ୍ୟଥା କରାଉଛନ୍ତି । ତାହା କହିବା ଶୁଣ । ନବକାଶୋକକଳିକାବିକାଶଃ । ଏ ବସନ୍ତ କାଳେ ନୂତନ ହୋଇ ଅଶୋକ ପୁଷ୍ପମାନଙ୍କର କଳିକା ବିକାଶ ବିକଶିତ ଏ ମୋତେ ବ୍ୟଥା କରାଉଛନ୍ତି । ସେ କେମନ୍ତ ଅଟଇ ? ଦୂରାଲୋକଃ ଦୂରଦୃଷ୍ଟେନାଲୋକନୀୟମସ୍ୟ ।[1] ସ୍ୱଭାବେ ସେ ଅଶୋକ କଳିମାନେ[2] ରକ୍ତବର୍ଣ୍ଣ କରି ଶୋଭାବାନ । ଯେଣୁକରି ଦୂରହିଁ ଦିଶଇ ପୁଣି ସେ କେମନ୍ତ ଅଟଇ ? ସ୍ତୋକସ୍ତବକଃ । ଗୁଚ୍ଛ ଗୁଚ୍ଛ ହୋଇ ବୃକ୍ଷରେଂ ପ୍ରକାଶ ହୋଇଛନ୍ତି । ଏଣୁକରି ଅଶୋକ ପ୍ରକାଶ ମୋତେ ବ୍ୟଥା କରାଉଛନ୍ତି । ଆଉ ହାନେଂ ଅନ୍ତଃକାରି କାସାରୋପବନ ପବନୋଽପି ବ୍ୟଥୟନ୍ତି । ହେ ସଖି ! ଆଉ[3] ଦୁଃଖ ଶୁଣ । କାସାର ଯେ ପୁଷ୍କରଣୀମାନଙ୍କର ଶୁରପାଶେ ଅଛନ୍ତି ଯେ ନାନା ବୃକ୍ଷଗୋଟାମାନେ ସେମାନଙ୍କରେ ମିଶାଇ ହୋଇ ବହୁଛି ମନ୍ଦ, ଗନ୍ଧ, ସୁଶୀତଳ ହୋଇ ଯେ ମଳୟ ପବନ ସେ ପବନ ମୋତେ ବ୍ୟଥା କରାଉଛି । ହେ ସଖି ! ଦେଖ ମୋହର ଦୁଃଖ । ଏ ଯେ ଅତ୍ୟନ୍ତ ସୁନ୍ଦର ଦେଖିବାକୁ ମନୋହର ଯେ ଚୂତାନାଂ ମୁକୁଳ ପ୍ରସୂତିଃ । ଏ ଆମ୍ରବୃକ୍ଷମାନଙ୍କର ବଉଳ ପ୍ରସୂତ ଉତ୍ପତ୍ତିଃ କିଂ ଭୂତାନି । ସେ ଆମ୍ର ବଉଳମାନେ କେମନ୍ତ ଅଟନ୍ତି । ଶିଖରିଣୀ ଅଗ୍ରବନ୍ତି । ଏତାପି ମାଂ ନ ସୁଖୟନ୍ତି । ଏହି ମୋତେ ସୁଖ ନ କରୁଛି । ଅତ୍ୟନ୍ତ ବ୍ୟଥୟନ୍ତି—ଅତ୍ୟନ୍ତ ବ୍ୟଥା କରୁଅଛି[4] । ଏ ଶିଖରିଣୀ କେମନ୍ତ ଅଟଇ । ଭ୍ରାମ୍ୟଦ୍ଭୃଙ୍ଗୀ । ଭ୍ରମୁଛନ୍ତି ମଧୁଲୋଭେଂ ଶୁରପାଶେ ଭ୍ରମରମାନେ ତେଷାଂ ରଣିତ ରମଣୀୟାଃ । ସେ ଭ୍ରମରମାନଙ୍କର ରଣିତ ଶବ୍ଦେ କରି ମନୋହର । ରମଣୀୟା ସୁନ୍ଦରାଃ । ସୁନ୍ଦର ଅଟଇ । ଏହି ମୋତେ ସୁଖ ନ କଲା ମୁଁ କି କରିବି କହ ତ ।

**ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ ଶ୍ରୀଜୟଦେବକୃତୌ ଅକ୍ଳେଶ[5] କେଶବୋ ନାମ ଦ୍ୱିତୀୟଃ ସର୍ଗଃ ।**

---

୧-ଖ. ଲୋକୋତ୍ତମସ୍ୟ । ୨-ଖ. କଳିମାନେ ୩-ଖ. ଆଉ
୪-ଖ କରାଉଛି ୫-କ. ଖ. ଅକ୍ଲେଶ

# ତୃତୀୟଃ ସର୍ଗଃ

**ଶ୍ଳୋକ**

**କଂସାରିରପି ସଂସାରବାସନାବନ୍ଧଶୃଙ୍ଖଳାମ୍ ।**
**ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜସୁନ୍ଦରୀଃ ॥ ୧ ॥**

କବିର୍ବଦତି । ଜୟଦେବ କବି ବୋଲୁଛନ୍ତି—ବୈଷ୍ଣବଜନମାନେ ଶୁଣ । କଂସ ନାମା ସୁରସ୍ୟାରିଃ । କଂସାରିଃ । କଂସ ନାମ ଯେ ଅସୁର ତାହାର ଅରି ଯେ ଶ୍ରୀକୃଷ୍ଣ[1] ଅଥବା କଂ ଜଳଂ ତସ୍ମିନ୍ ଶେତେ କଂସଃ । କଂସଶ୍ଚାସୌ ଅରିଶ୍ଚେତି କଂସାରିଃ । ସ ତୁ ଅନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣଃ । ଭକ୍ତାଧୀନ ଏମନ୍ତ ଯେ କୃଷ୍ଣ ସେ ରାଧାର ମନ ଦୁଃଖ ଜାଣିକରି ବ୍ରଜସୁନ୍ଦରୀଃ ତତ୍ୟାଜ । ବ୍ରଜସୁନ୍ଦରୀ ଯେ ଗୋପନାରୀମାନେ ସେମାନଙ୍କୁ ଛାଡ଼ିଲେ । ତାଂ ରାଧାଂ କଥଂ ଭୂତାଂ । ସେ ରାଧା କେମନ୍ତ ଅଟନ୍ତି ? ସଂସାର ବାସନାବନ୍ଧଶୃଙ୍ଖଳା । ସଂସାର କାରଣ ସ୍ୱରୂପ ବାସନା ପୂର୍ବଜନ୍ମ ସଂସ୍କାର ବନ୍ଧନତ୍ୟାଗକାରଣ ଶୃଙ୍ଖଳା ଲୋକବନ୍ଧନସ୍ୟାଂ ମାସ୍ତି ତସ୍ୟା ଜନ୍ମମୃତବନ୍ଧା ।[2] ଅନେକା ଦୃଢ଼ବନ୍ଧନ ଯସ୍ୟା ଅବନ୍ଧ ଶୃଙ୍ଖଳା । ସେ ରାଧା ପୂର୍ବଜନ୍ମର ତପସ୍ୟା ବଳେ କରି ଆପଣାର କର୍ମବନ୍ଧ ହେତୁମାନଙ୍କୁ କାଟିକରି ପାପପୁଣ୍ୟ ଦୁଇ ସଂକୁଳରୁ ତରିଲେ । ଅତଏବ ଅବନ୍ଧଶୃଙ୍ଖଳା । ରାଧବନ୍ଧା[3] ମାୟାଶୃଙ୍ଖଳାଯସ୍ୟା ସା ସା ଅବନ୍ଧଶୃଙ୍ଖଳା । ନାମବନ୍ଧଶୃଙ୍ଖଳାଂ ବାନ୍ଧି ନ ପାରିଲା ମାୟା ସଂକୁଳ ଯେ ରାଧାକୁ ଏମନ୍ତ ଯେ ରାଧା ତାହାଙ୍କୁ ହୃଦୟେ ଆଧାୟ ମନରେ ଧ୍ୟାନ କରି ଗୋପୀମାନଙ୍କୁ ଛାଡ଼ିଲେ ।

**ଇତସ୍ତତସ୍ତାମନୁସୃତ୍ୟ[4] ରାଧିକାମନଙ୍ଗବାଣବ୍ରଣଖିନ୍ନମାନସଃ ।**
**କୃତାନୁତାପଃ ସ କଳିନ୍ଦନନ୍ଦିନୀତଟାନ୍ତକୁଞ୍ଜେ ବିଷସାଦ ମାଧବଃ ॥ ୨ ॥**

ସେ କୃଷ୍ଣ ବ୍ରଜସୁନ୍ଦରୀମାନଙ୍କୁ ଛାଡ଼ିକରି ତାଂ ରାଧାଂ ଅନୁସୃତ୍ୟ ଇତସ୍ତତଃ । ସେ ରାଧାଙ୍କୁ ଖୋଜିବାକୁ ଇତସ୍ତତଃ । ବନାଦ୍‌ବନଂ ବୃକ୍ଷାତ୍ ବୃକ୍ଷାନ୍ତରଂ ଗତଃ ସନ୍ ।

---

୧-ଖ. କୃଷ୍ଣ
୨-ଖ. ଜନ୍ମଜନ୍ମାନ୍ତରେ ।
୩-ଖ. ଅଥବା ନବନ୍ଧା ।
୪-ଖ. ମନୁସୃତ୍ୟ

ଯେ ବନରେ ଖୋଜି ନ ପାଇ ଆଉ ବନକୁ ଯାଉଛନ୍ତି । (ସେ ଲତାରେ ନ ପାଇଁ ଆଉ ଲତାକୁ ଯାଉଅଛନ୍ତି ।)[୧] ଏମନ୍ତ ହୋଇ ଖୋଜି ନ ପାଇ ରାଧାଙ୍କୁ ଅନଙ୍ଗବାଣବ୍ରଣଖିନ୍ନମାନସଃ କୃତାନୁତାପଃ । ଅନଙ୍ଗ ବାଣ ଯେ କାମବାଣ ସେ ବାଣ ହେବାଦ୍ୱାରେ ବ୍ରଣ ଯେ ବ୍ୟଥା ସେ ବ୍ୟଥାରେ ମନକୁ ଖିନ୍ନ ଦୁର୍ବଳ କରି ଅନେକ ଅନୁତାପ କଲେ । ଅତେ କାର୍ଯ୍ୟ ହୁଞ୍ଚ ପରେ ତାହ ମାଳକର ସେ ଶ୍ରୀକୃଷ୍ଣ କଳିନ୍ଦନନ୍ଦିନୀ ତଟାନ୍ତକୁଞ୍ଜେ ବିଷସାଦ । କଳିନ୍ଦ ଯେ ସୂର୍ଯ୍ୟ ତାହାର ନନ୍ଦିନୀ ଯେ ଯମୁନା ତାହାର ତଟର ନିକଟ ଯେ କୁଞ୍ଜଲତା ତହିଁ ଭିତରେ ପ୍ରବେଶ ହୋଇଲେ । ଯତଃ ମାଧବଃ । ମା ଲକ୍ଷ୍ମୀ ତସ୍ୟାଧବଃ ମାଧବଃ । ଯେଣୁକରି ତୁମ ଲକ୍ଷ୍ମୀକାନ୍ତ ସେ ରାଧାଙ୍କୁ ଧ୍ୟାନ କରି ଅନୁତାପେ ଖେଦ ପାଇଁ ଏମନ୍ତ ବୋଲୁଛନ୍ତି ।

## ଗୀତ

ଗୁର୍ଜ୍ଜରୀରାଗେଣ ଗୀୟତେ ।

**ମାମିୟଂ ଚଳିତା ବିଲୋକ୍ୟ ବୃତଂ ବଧୂନିଚୟେନ।**
**ସାପରାଧତୟା ମୟାପି ନ ବାରିତାତିଭୟେନ ।**
**ହରିହରି ହତାଦରତୟା ଗତା ସା କୁପିତେବ ॥ ୧ ॥**

(ଧ୍ରୁବପଦମିଦମ୍ ।)

ଶ୍ରୀକୃଷ୍ଣ ବୋଲୁଛନ୍ତି—ହରିହରି ! ହେ ହତକର୍ମ ବିଧାତଃ । ତୋହର ବଳେ ମୁଁ କି କର୍ମ କଲି । ହତାଦରତୟା ଗତା ସା କୁପିତେବ । ମୁଁ ଯେ ରାଧାଙ୍କୁ ହତାଦର, ଅଗୌରବ କଲି । ଯେଣୁକରି ସେ ରାଧା ମୋତେ କୋପ କରି ଗଲେ । ଏମନ୍ତ ପ୍ରାୟେ ମୁଁ ମଣଇ । କୋହ୍ନଲେ କମ୍ପା ଗଲେ । ଯେଣୁକରି ଗଲେ ତହିଁର ହେତୁ କହିବା । ମାମିୟଂ ଚଳିତା ବିଲୋକ୍ୟ ବୃତଂ ବଧୂନିଚୟେନ । ମୋର ତହିଁକି ସେ ରାଧା ଆସିକରି ମୋତେ ଦେଖିଲେ । ମୁଁ କେମନ୍ତ ହୋଇଛୁ । ବୃତଂ ବଧୂନିଚୟେନ । ଗୋପବଧୂମାନେ ମୋତେ ମଣ୍ଡଳାକାର କରି ଆବୋରି ଅଛନ୍ତି । ମୁଁ ତହିଁର ମଧ୍ୟେ ଅଛୁ । ମୁଁ ପୁଣି ତାହାଙ୍କୁ କି କଲି । ସାପରାଧତୟା ମୟାପି ନବାରିତା-ତିଭୟେନ । ପୂର୍ବେ ମୁଁ ଯେତେବେଳେ ତାହା ଘରକୁ ଗଲି ସେତେବେଳେ ସେ ମୋତେ ମାନଘାତ କରି ପଳାଇଅଛି । ସେ ଅପରାଧ କରି ମୁଁ ତାହାଙ୍କୁ ନିବାରିଲି । ଆସ କି ଯାଅ ଏମନ୍ତ ନ ବୋଇଲି । କମ୍ପା ନ ବୋହାଇଲି । ଅତି ଭୟେନ । ଏ ଗୋପୀମାନଙ୍କର ଭୟେ କରି । ଏ ରାଧାଙ୍କୁ ସମ୍ଭାଷଣ କଲେ ପୁଣି ଏମାନେ

---

୧-କ.ରେ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।

ମୋତେ କୋପ କରନ୍ତି । ଏ ଭୟେ ତାହାଙ୍କୁ ନ ରୋହାଇଲି । ହେ ଦୈବ ! ଏବେ ମୁଁ କି କରିବି ?

**କିଂ କରିଷ୍ୟତି କିଂ ବଦିଷ୍ୟତି ସା ଚିରଂ ବିରହେଣ ।**
**କିଂ ଧନେନ କିଂ ଜନେନ କିଂ ମମ ସୁଖେନ ଗୃହେଣ ॥ ୨ ॥**

ଶ୍ରୀକୃଷ୍ଣ ବୋଲୁଛନ୍ତି—ହେ ହରିହରି ହତକର୍ମ ବିଧାତଃ । ଏବେ ମୁଁ ସେ ତାପରେ ତହିଁକି ଗଲେ ସେ ମୋତେ ଚିରଂ ବିରହେଣ । ଅନେକ ଦିନ ପର୍ଯ୍ୟନ୍ତ । ମଦ୍‌ବିୟୋଗଂ ବିରହ । ମୋହର ବିଚ୍ଛେଦ ଦୁଃଖ ମୋତେ କି ଅବା କହିବ । କିଂ ବଦିଷ୍ୟତି । କି ଅବା ବୋଲିବଟି । ହେ ଦୈବ ମୁଁ ଯାବତ ତାହାକୁ ନ ପାଇଲି ତାବତ ମୋହର କିଂ ଧନେନ ଜନେନ କିଂ ଗୃହେଣ କିଂ ପ୍ରୟୋଜନ ଇତି ଶେଷଃ । ଧନେନ ଧନେ ଭୂଷଣେ କିଂ ଜନେନ ପରିଗ୍ରହଜନେନ କିଂ ସୁଖେନ ସ୍ରକ୍‌ଚନ୍ଦନବନିତାଦି ସୁଖେନ କିଂ । ଅଟ୍ଟ ରମ୍ୟମନୋହର ଗୃହେଣ କିଂ । ଏତେ ସୁଖେ ମୋହର କି ପ୍ରୟୋଜନ ।

**ଚିନ୍ତୟାମି ତଦାନନଂ କୁଟିଳଭ୍ରୂକୋପଭରେଣ ।**
**ଶୋଣପଦ୍ମମିବୋପରି ଭ୍ରମତାକୁଳଂ ଭ୍ରମରେଣ ॥ ୩ ॥**

ଶ୍ରୀକୃଷ୍ଣ ବୋଲୁଛନ୍ତି—ହେ ହରିହରି ! ତଦାନନଂ ତସ୍ୟାନନଂ ଚିନ୍ତୟାମି । ତାହାର ଆନନ ଯେ ବଦନ ସେ ବଦନକୁ ଚିନ୍ତା କରିବି । ସେ ରାଧାର ବଦନ କୋପେ କରି କେମନ୍ତ ହୋଇଥିବ । ରକ୍ତବର୍ଣ୍ଣ ଦିଶୁଥିବ । କୁଟିଳଭ୍ରୂକୋପ-ଭରେଣ । କୁଟିଳଭ୍ରୂ ବା ବକ୍ରାକ୍ଷିଲତା ତେନ କୁଟିଳ ଯେ ବକ୍ର ଭ୍ରୂଲତା ତେଣେକରି କୋପଭରେଣ ଅତ୍ୟନ୍ତ କୋପେକରି ଚକ୍ଷୁ ଭରିଥିବ । ରକ୍ତବର୍ଣ୍ଣ ଦିଶୁଥିବ । ସେ ଚକ୍ଷୁକୁ କି ପଟାନ୍ତର କରିବା । ଶୋଣ ପଦ୍ମମିବ । ଉପରି ଉଡ଼୍‌ଡ଼ୀୟମାନେନ ଭ୍ରମତା ଭ୍ରମରେଣ ଆକୁଳଂ କମ୍ପିତଂ ଶୋଣପଦ୍ମମିବ । ଉପରେ ଉଡ଼ନ୍ତା ଭ୍ରମର ପକ୍ଷଘାତ ଲାଗି କମ୍ପମାନ ହୋଇଥାଇ ରକ୍ତବର୍ଣ୍ଣ ପଦ୍ମ ଯେମନ୍ତ । ସେହିମନ୍ତ ତାହାର ମୁଖ ଦିଶୁଥିବ ।

**ତାମହଂ ହୃଦି ସଂଗତାମନିଶଂ ଭୃଶଂ ରମୟାମି ।**
**କିଂ ବନେଽନୁସରାମି ତାମିହ କିଂ ବୃଥା ବିଲପାମି ॥ ୪ ॥**

ପୁଣି କୃଷ୍ଣ ବୋଲୁଛନ୍ତି—ଏବେ ଏମନ୍ତ କରିବି ନୋହିଲେ ମନ ନ ରହିବ । ମୁଁ ତ ସଂସାରପାକେ ଗର୍ତ୍ତ ଭିତରେ ପାଦ ଧରିଛି । ଏଣୁକରି ମୋହର ହୃଦୟକୁ ମୁଁ ଚାହିଁଲେ ରାଧାକୁ ପାଇବି । ସେ ରାଧା ମମ ହୃଦି ସଙ୍ଗତା । ସେ ରାଧା

ମୋହର ମନର ସଙ୍ଗେ ଅଛି । ତାହାକୁ ମୁଁ ଅନଶଂ ନିରନ୍ତରଂ ଭୃଶଂ ଅତ୍ୟନ୍ତଂ ରମୟାମି । ନିରନ୍ତର ଅତ୍ୟନ୍ତ ହୋଇ ରମୁଥିବ । ଏବେ ମୁଁ କିମ୍ପା ତାହାକୁ ବନେ ବନେ ଅନୁସରାମି । ଖୋଜି ବୁଲିବି । କିଂ ବୃଥା ବିଳପାମି । କଥଂ ବ୍ୟର୍ଥଂ ଅନୁବେଦନଂ କରୋମି । ପରିବେଦନଂ ଚ । ବ୍ୟର୍ଥ କିମ୍ପା ବିଳାପ କରିବି । ଏମନ୍ତ ବିଚାରି ଶ୍ରୀକୃଷ୍ଣ ଆପଣାର ହୃଦୟକୁ ଧ୍ୟାନ କରି ଗୃଧଁମା[1] ମାନଙ୍କେ ରାଧାକୁ ଦେଖିଲେ । ଦେଖିବା ମାନଙ୍କ ଏମନ୍ତ ବୋଲୁଛନ୍ତି—

**ତନ୍ୱି ! ଖିନ୍ନମସୂୟୟା ହୃଦୟଂ ତବାକଳୟାମି ।**
**ତନ୍ନ ବେଦ୍ମି କୁତୋ ଗତାସି ନ ତେନ ତେଽନୁନୟାମି ॥ ୫ ॥**

ଶ୍ରୀକୃଷ୍ଣ ବୋଲୁଛନ୍ତି—ହେ ତନ୍ୱି ! ହେ କୋମଳାଙ୍ଗି ! ହେ ରାଧେ ! ତେ ହୃଦୟଂ ଅସୂୟୟା ଖିନ୍ନମାକଳୟାମି । ହେ ସୁନ୍ଦରି ! ତୁମ୍ଭର ହୃଦୟ ଯେ ମନ ସେ ଅସୂୟା ଯେ ସ୍ୱପ୍ନଜନିତ ସଂସାର କ୍ରୋଧ ତେଣେ କରି ଖିନ୍ନଂ ଅତି ଦୁଃଖ ଖେଦ ଯୁକ୍ତଂ । ଖିନ୍ନ ପ୍ରାଏମ୍ଭ ଆକଳୟାମି ମନ୍ୟେ । ମୁଁ ମଣୁଛି । ଇଦାନୀଂ ତ୍ୱଂ କୁତୋ ଗତାସି । ଏବେ ତୁମ୍ଭେ କାହିଁକି ଗଲ । ତନ୍ନ ବେଦ୍ମି । ତାହା ନ ଜାଣଇ । ତେନ କାରଣେନ ନ ତେ ତୁଭ୍ୟଂ ଅନୁନୟାମି ପରିତୋଷଂ ନ ଗଚ୍ଛାମି । ସେ କାରଣୁ କରି ତୁମ୍ଭଙ୍କୁ ମୁଁ ପରିତୋଷ ନ ପାଉଛି ।

**ଦୃଶ୍ୟସେ ପୁରତୋ ଗତାଗତମେବ ମେ ବିଦଧାସି ।**
**କିଂ ପୁରେବ ସସଂଭ୍ରମଂ ପରିରମ୍ଭଣଂ ନ ଦଦାସି ॥ ୬ ॥**

ହେ ରାଧେ ! ତ୍ୱଂ ମମ ପୁରତୋ ଅଗ୍ରେ ଦୃଶ୍ୟସେ[2] । ଏବେ ମୋହର ଅଗ୍ର ସାମ୍ନାରେ ଦିଶୁଛ । ମୁଁ ପୁଣି ଗତାଗତଂ ମୁଁ ହାଦେ ତୁମ୍ଭର ଦୃଷ୍ଟିରୁ ଯାଉନାହିଁ[3] । ଏବେ ତୁମ୍ଭ ତହିଁକି ଅଇଲ । ତୁମ୍ଭେ ଏବେ ଏବମେବ ବିଦଧାମି । ଏମନ୍ତ ମୋତେ କିମ୍ପା ନକର । ପୁରା ପୂର୍ବେମ୍ଭିଙ୍କ ପୂର୍ବେ ଯେମନ୍ତ ମୋତେ ଦେଖିଲେ ସଂଭ୍ରମ ହୋଇ ପରିରମ୍ଭଣ ଆଲିଙ୍ଗନ ଦିଅ ।[4] ହୋଉ ମୋହର ଯେବେ ତୁମ୍ଭଙ୍କୁ ଅପରାଧ କଲି ଅଛି ତ ।

**କ୍ଷମ୍ୟତାମପରଂ କଦାପି ତବେଦୃଶଂ ନ କରୋମି ।**
**ଦେହି ସୁନ୍ଦରି ଦର୍ଶନଂ ମହ୍ୟି ମନ୍ମଥେନ ଦୁନୋମି[5] ॥ ୭ ॥**

ହେ ସୁନ୍ଦରି ! ହେ ରାଧେ ! ମମ ପୂର୍ବାପରାଧଃ କ୍ଷମ୍ୟତାମ୍ । ତୁମ୍ଭଙ୍କୁ ପୂର୍ବେ[6] ଯେ ଅପରାଧ କରିଛି ମୋ ଅପରାଧ ମୋହର କ୍ଷମାକର । ଅପରଂ କଦାପି ତବେଦୃଶଂ

୧-ଖ. ଗୃଦ୍ଧିବା    ୩-ଖ. ଜାଉଁ ଥିଲ ।    ୫-କ. ଦୁନୋମି
୨-ଖ. ଦୃଶ୍ୟତେ ।    ୪-ଖ. ଦେଅ ।    ୬-ଖ. ତୁମ୍ଭଙ୍କୁ ମୁଁ ପୂର୍ବେ

ନ କରେମି । ମୁଁ ଆଉ ବେଳେ ତୁମ୍ଭଙ୍କୁ ଏମନ୍ତ ଅପରାଧ ନ କରିବ କେବେହେଁ ହେ ସୁନ୍ଦରି ! ମହ୍ୟଂ ଦର୍ଶନଂ ଦେହି । ମୋତେ ଏବେ ଦର୍ଶନ ଦିଅ । ଦେଖ ମୁଁ ତୁମ୍ଭଙ୍କୁ ନ ପାଇ ମନ୍ମଥେନ ଦୁନୋମି[1] । ମନ୍ମଥ ଯେ କାମ ତାହାର ବାଣେ ଘାତ କରି ଦୁନୋମି । ଦୁଃଖ ପ୍ରାପ୍ନୋମି । ଅତ୍ୟନ୍ତ ପରିତାପ ପାଉଅଛି ।

**ବର୍ଣ୍ଣିତଂ ଜୟଦେବକେନ ହରେରିଦଂ ପ୍ରବଣେନ**
**[2]କିନ୍ଦୁବିଲ୍ୱସମୁଦ୍ରସମ୍ଭବରୋହିଣୀରମଣେନ ॥ ୮ ॥**

କବିବଚନ । ଜୟଦେବ କବି ବୋଲୁଛନ୍ତି—ହେ ବୈଷ୍ଣବଜନମାନେ ଶୁଣ । ବର୍ଣ୍ଣିତଂ ଜୟଦେବେନ[3] । ଭଗବନ୍ତସେବକାନାଂ ପ୍ରୀତୟେ ଜୟଦେବକେନ କବିନା ବର୍ଣ୍ଣିତଂ ଯଦ୍‌ଗୀତଂ । ଜୟଦେବ କବି ଯେ କାବ୍ୟ ଭଣିଲେ ତାହା ଶୁଣ । ଏ ଗୀତ ପ୍ରବନ୍ଧ କେମନ୍ତ ଅଟଇ । ହରେଃ । ହରିର ବର୍ଣ୍ଣନା ଯେ । ଏହାକୁ ଭଣିଲେ । ପ୍ରଣବେନ । ନମ୍ରୀଭୂତେନ । ଅତି ଗୌରବେ ନମ୍ରୀ ହୋଇ ଜୟଦେବ ଭଣିଲ । ସେ ଜୟଦେବ କେମନ୍ତ ଅଟଇ । କିନ୍ଦୁବିଲ୍ୱ ସମୁଦ୍ର । ସମୁଦ୍ଭୂ ରୋହିଣୀ ରମଣେନ । କିନ୍ଦୁବିଲ୍ୱ ନାମ ରାଜ୍ୟ । ସେ ରାଜ୍ୟକୁ ସମୁଦ୍ର ବୋଲି କଳ୍ପିଲ । ସମୁଦ୍ରେ ଯେମନ୍ତ ଚନ୍ଦ୍ର ଜାତ ହୋଇ ସେହିମନ୍ତ ସେ ରାଜ୍ୟ ସମୁଦ୍ରେ ଚନ୍ଦ୍ରର ପ୍ରାୟେ ହୋଇ ଜୟଦେବ ଜନ୍ମ ହୋଇଛି । ଏମନ୍ତ ଯେ ଜୟଦେବ ସେ କାବ୍ୟ ବର୍ଣ୍ଣିତଂ କୃତମେବ । ବର୍ଣ୍ଣନା କରିଛି । ତଦନନ୍ତରେ ଯମୁନା ତଟାନ୍ତ କୁଞ୍ଜଲତାରେ ବସି ମାଧବ ରାଧାଙ୍କୁ ଧ୍ୟାନରେ ଏମନ୍ତ ବର୍ଣ୍ଣନା କରୁଁ କରୁଁ ଏମନ୍ତ ସମୟରେ[4] ଅକସ୍ମାତ୍ ହୋଇ କନ୍ଦର୍ପ ସେଠାରେ ମିଳି ଶ୍ରୀକୃଷ୍ଣଙ୍କୁ ମହାଦେବ ପ୍ରାୟେ ମଣି ପଞ୍ଚବାଣ ଧନୁକେ ପୂରାଇ ହର ଏ ଏମନ୍ତ ଭ୍ରାନ୍ତ କରି ବିନ୍ଧିବାବେଳେ ଶ୍ରୀକୃଷ୍ଣ ସମାଧି ଭଙ୍ଗ ହୋଇ କନ୍ଦର୍ପଙ୍କୁ ଚାହିଁ ଏମନ୍ତ ବୋଲୁଛନ୍ତି—

**ଶ୍ଳୋକ :**

**ହୃଦି [5]ବିସଲତାହାରୋ ନାୟଂ ଭୁଜଙ୍ଗମନାୟକଃ**
**କୁବଳୟଦଳଶ୍ରେଣୀ କଣ୍ଠେ ନ ସା ଗରଳଦ୍ୟୁତିଃ ।**
**ମଳୟଜରଜୋ ନେଦଂ ଭସ୍ମ ପ୍ରିୟାରହିତେ ମୟି**
**ପ୍ରହର ନ ହରଭ୍ରାନ୍ତ୍ୟାନଙ୍ଗ ! କ୍ରୁଧା କିମୁ ଧାବସି ॥ ୩ ॥**

ଶ୍ରୀକୃଷ୍ଣ ବୋଲୁଛନ୍ତି—ହେ ଅନଙ୍ଗ ! ହର ଭ୍ରାନ୍ତ୍ୟା ହେତୋଧନ କିମର୍ଥଂ ମାଂ ଧାବସି । ହର ଯେ ତୋହର ବୈରି ତାହାଙ୍କ ପ୍ରାୟେ ମଣି ଭ୍ରାନ୍ତ ପାଇ ମୋତେ

---

୧-କ. ଦୁନୋତି ।
୨-କ. କେନ୍ଦୁବିଲ୍ୱ
ଖ. କେନ୍ଦୁବିଲ୍ୱ
୩-ଖ. ଜୟଦେବକେନ
୪-ଖ. ସମୟେ
୫-କ. ବିସଲତା

ଯେ ମାରିବା ପାଇଁ ଧାଇଁ ଆସିଛୁ[୧] । ମୁଁ ହର ଯେ ମହାଦେବ ସେ ନୋହଇ । ମୋତେ ନ ପ୍ରହର । ପ୍ରହାର ନ କର । ବାଣ ନ ମାର । ହେ କନ୍ଦର୍ପ ! ମହାଦେବଙ୍କ ଚିହ୍ନ ପ୍ରାୟ ଦେଖି ଯେ ଭ୍ରାନ୍ତିରେ କୋପ କରୁଛୁ ଶୁଣ । ତାହାଙ୍କ କହିବା । ହୃଦି ହୃଦୟରେ ଦେଖ ମୋହର ବିସଲତାହାରେ । ବିସଲତା ଯେ ପଦ୍ମଲତା ପ୍ରାୟ ତାହାକୁ ମୁଁ ଦେହ ଜାଳାରେ କରି ହାର ପ୍ରାୟେ କରି ହୃଦୟରେ ଲମ୍ବାଇଅଛୁ । ଏ ହାରେ ନାୟଂ ଭୁଜଙ୍ଗମ ନାୟକଃ । ଭୁଜଙ୍ଗମାନଙ୍କର ନାୟକ ଯେ ବାସୁକୀ ସେ ଯେ ମହାଦେବର ଗଳାରେ ଥାଏ । ତୁ ତେମନ୍ତ ପ୍ରାୟେ ମଣିଛୁ । ଏ ହାରେ ସେ ନୋହଇ । ଆଉ ଯେ ତୁ ଶ୍ରୀକଣ୍ଠ ପ୍ରାୟେ ଭ୍ରମ ପାଇ ଅଛୁ । ତାହା ଶୁଣ । କୁବଳୟଦଳଶ୍ରେଣୀ କଣ୍ଠେ ନ ସା ଗରଳଦ୍ୟୁତିଃ । ମୋହର ଗଳାରେ କୁବଳୟ ଦଳ ଶ୍ରେଣୀ ଯେ ନୀଳୋତ୍ପଳ ପୁଷ୍ପ ପାଖୁଡ଼ା ପନ୍ତି ନ ସା ଗରଳଦ୍ୟୁତିଃ । ସେ ହାରେ ଗରଳ ଜ୍ୟୋତି ନୋହଇଟି । ତାହାର ଦେହରେ ଥାଏ ଯେ ଭସ୍ମ ତାହାର ପ୍ରାୟେ ମଣି ଯେ କ୍ରୋଧ କରୁ । ଏ ହାରେ ମଳୟଜ ଚନ୍ଦନ ରଜଃ ନେଦଂ ଭସ୍ମ । ଏ ଭସ୍ମ ନୋହଇ । ହେ ଅନଙ୍ଗ ଦେଖ ମୁଁ ବିଚ୍ଛେଦ ଦୁଃଖୀ ! ପ୍ରିୟା ରହିତ । ସ୍ତ୍ରୀଯୁଁ ବର୍ଜିତ । ମହାଦେବର ବାମଭାଗରେ ପାର୍ବତୀ ଥାଇ ଦେଖ ମୋହର ପ୍ରିୟା ନାହିଁ । ଏଣୁକରି ତୁ ମୋତେ ନ ମାର ।

**ପାଣୌ ମା କୁରୁ ଚୂତଶାୟକମମୁଂ ମା ଚାପମାରୋପୟ**
**କ୍ରୀଡାନିର୍ଜିତବିଶ୍ୱ ମୂର୍ଚ୍ଛିତଜନାଘାତେନ କିଂ ପୌରୁଷମ୍ ।**
**ତସ୍ୟା ଏବ ମୃଗୀଦୃଶୋ ମନସିଜପ୍ରେଙ୍ଖତ୍କଟାକ୍ଷାଶୁଗ-**
**ଶ୍ରେଣୀଜର୍ଜରିତଂ ମନାଗପି ମନୋ ନାଦ୍ୟାପି ସନ୍ଧୁକ୍ଷତେ ॥ ୪ ॥**

ଶ୍ରୀକୃଷ୍ଣ ବୋଲୁଛନ୍ତି—ହେ ଅନଙ୍ଗ ! ଅମୁଂ ଚୂତସାୟକଂ ପାଣୌ ମା କୁରୁ । ଏ ଯେ ଆମ୍ର ବକୁଳ ବାଣ । ପାଣୌ ହସ୍ତେନ କର । ମା ଚାପମାରୋପୟ । ଚାପଂ କାର୍ମୁକଂ ସଙ୍ଗ ମା କୁରୁ । ଏ ଧନୁରେ ଗୁଣ ନ ଦେ । ହେ କ୍ରୀଡାନିର୍ଜିତବିଶ୍ୱ ! ତୁ କ୍ରୀଡ଼ା ମାତ୍ରକେ ଜିଣିଲୁ ବିଶ୍ୱ ସଂସାରକୁ ତୁ ଏଡ଼େ ଲୋକ ଅଟୁ । ତୋହର ପୁଣି ମୂର୍ଚ୍ଛିତଜନାଘାତେନ କିଂ ପୌରୁଷଂ । ଆପଣାର ଦୁଃଖେ କରି ମୂର୍ଚ୍ଛିତ ମୂର୍ଚ୍ଛାଗତ ହୋଇ ପଡ଼ିଥାଇ ଯେ ପ୍ରାଣୀ ତାହାକୁ ଘାତ କରିବାର କି ପୁରୁଷାର ଅଛି । ହେ ଅନଙ୍ଗ ! ତସ୍ୟା ଏବ ମୃଗୀଦୃଶା ମୃଗଲୋଚନାୟା ରାଧାୟା ସେ ମୃଗଲୋଚନୀ ଯେ

୧-ଖ. ଆସୁଛଂ

ରାଧା ତାହାର[୧] (ପ୍ରେଙ୍ଖଦ୍ଖରକଟାକ୍ଷାଶୁଗ ଶ୍ରେଣୀଜର୍ଜରିତଂ ମନଃ ।) ପ୍ରେଙ୍ଖତ୍କଟାକ୍ଷ । ତୀର୍ଯ୍ୟକ୍ ଦୃଷ୍ଟି ସେହି ସେ ବେଗବନ୍ତ ବାଣ ହୋଇଲା । ସେ ବାଣ ଯେ ଦୃଷ୍ଟି ସେ ଅନେକ ଧାଡ଼ି ଧାଡ଼ି ହୋଇ ମୋହର ଉପରେ ପଡ଼ୁଛନ୍ତି । ସେ ବାଣମାନଙ୍କର ବ୍ୟଥାରୁ କରି ମୋହର ମନକୁ ଜର୍ଜର କରିଛୁ । ସେ ମନକୁ ମୁଁ ଏତେବେଳେହେଁ ନ ସନ୍ଧୁକ୍ଷତେ । ସୁଖଂ ନ ଲଭତେ । ସୁଖ ନ ଲଭଇ । ସୁସ୍ଥ ନୋହଇ ।

ଭ୍ରୂଚାପେ ନିହିତଃ କଟାକ୍ଷବିଶିଖୋ ନିର୍ମାତୁ ମର୍ମବ୍ୟଥାଂ
ଶ୍ୟାମାତ୍ମା କୁଟିଳଃ କରୋତୁ କବରୀଭାରୋଽପି ମାରୋଦ୍ୟମମ୍ ।
ମୋହଂ ତାବଦୟଂ ଚ ତନ୍ୱି ତନୁତାଂ ବିମ୍ବାଧରୋ ରାଗବାନ୍
ସଦ୍‌ବୃତ୍ତସ୍ତନମଣ୍ଡଳସ୍ତବ କଥଂ ପ୍ରାଣୈର୍ମମ କ୍ରୀଡ଼ତି ॥ ୫ ॥

ତଦନନ୍ତରେ କନ୍ଦର୍ପକୁ ସ୍ମରି ଶ୍ରୀକୃଷ୍ଣ ବୋଲୁଛନ୍ତି ରାଧାକୁ ମନରେ ଧ୍ୟାନ କରି । ହେ ତନ୍ୱି ! କୋମଳାଙ୍ଗୀରାଧେ ! ତବ ଭ୍ରୂ ଚାପେ ଚକ୍ଷୁଲତା ଧନୁଷି ତୁମ୍ଭର ଚକ୍ଷୁଲତା ସେହି ସେ ଧନୁ ହୋଇଲା ତହିଁ ସେ ଧନୁରେ ନିହିତ ନିକ୍ଷିପ୍ତଃ କଟାକ୍ଷ ବିଶିଖଃ । ତୀର୍ଯ୍ୟକ୍ ଦୃଷ୍ଟି ବାଣଃ । ସେ ଧନୁରୁ ନିହିତଃ ନିକ୍ଷିପ୍ତ ନିକ୍ଷେପଣ ହୋଇଲା ଯେ କଟାକ୍ଷ ଦୃଷ୍ଟି ବାଣ ସେ ବାଣ ମୋହର ମର୍ମ ବ୍ୟଥା ହୃଦୟ ବ୍ୟଥାକୁ ନିର୍ମାତୁ । ବଡ଼ ପୀଡ଼ା କରୁ ତହିଁକି ମୋହର ଡର ନାହିଁ । ଯେତେବେ ବାଣ ସହି ବାଜଇ ସେ ବ୍ୟଥା ବଢ଼ି କରଇ । ତହିଁକି କିଛି ଡରର ନାହିଁ । ଶ୍ୟାମାତ୍ମା କୁଟିଳଃ କରୋତୁ କବରୀଭାରୋଽପି ମାରୋଦ୍ୟମଂ । ଅସୌ କବରୀ ଭାରଃ ଶ୍ୟାମାତ୍ମା । ଏ କବରୀ ଭାର ଦେହିବେ କଳା ଅଟଇ । କଳା ଲୋକ ବଡ଼ କୋପୀ । ଏଣୁକରି ସେ କବରୀ ମାରୋଦ୍ୟମଂ କରୋତୁ । ମାରଣେ ଉଦ୍ୟମ କରୋତୁ । ମାରିବାକୁ ଉଦ୍ୟମ କରୁ ଅଥବା କାମ ସମ୍ପାଦନ କରୁ । ଏ କବରୀ ସ୍ୱଭାବେ କୁଟିଳ ବଙ୍କ ଅଟଇ । ତହିଁକି ଡରର ନାହିଁ । କୁଟିଳ ପ୍ରାଣୀ ଦେହିବେ ମନ୍ଦ ଅଟଇ । ହେ ତନ୍ୱି, ତବାୟଂ ବିମ୍ବାଧରଃ ରାଗବାନ୍ । ତୁମ୍ଭ ବିମ୍ବାଧର ଯେ ଅଧର ରକ୍ତବର୍ଣ୍ଣ ପକ୍ୱ ତରଡ଼ପମ । ପାଚିଲା ତରଡ଼ାହୁଁ ବଡ଼ ରଙ୍ଗ ବର୍ଣ୍ଣ । ଏଣୁକରି ବିମ୍ବାଧର ଧ୍ରୁବଂ ମୋହଂ ତନୁତାମ୍ । ଏ ମୋହର ମନକୁ ମୋହ ବିସ୍ତାର କରୁ । ପ୍ରମାଣ ଅଟଇ । ସଦ୍‌ବୃତ୍ତସ୍ତନମଣ୍ଡଳ-ସ୍ତବ କଥଂ ପ୍ରାଣୈର୍ମମ କ୍ରୀଡ଼ତି । ହେ ସୁନ୍ଦରି ତବେତ୍ଥଂ କୁଚସ୍ଥଳ ସଦ୍‌ବୃତ୍ତଃ । ତୁମ୍ଭର ଏକୁଚ ମଣ୍ଡଳ ସାଧୁ- ଲୋକର ପ୍ରାୟେ ସ୍ୱଭାବେଂ ଅଟଇ । ଅଥବା ବର୍ତ୍ତୁଳ ଅଟଇ । ବଙ୍କ ନୋହଇ । ଏ କଥା ମମ ପ୍ରାଣୈଃ ସହ କ୍ରୀଡ଼ତି । ମୋହର ପ୍ରାଣକୁ କ୍ରୀଡ଼ା ମାନକେ ଦେଉଛୁ ।

---

୧-କ.ରେ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।

**ତାନି ସ୍ପର୍ଶସୁଖାନି ତେ ଚ ତରଳସ୍ନିଗ୍ଧା ଦୃଶୋର୍ବିଭ୍ରମା-**
**ସ୍ତଦ୍‌ବକ୍ତ୍ରାମ୍ବୁଜସୌରଭଂ ସ ଚ ସୁଧାସ୍ୟନ୍ଦୀଗିରାଂ ବକ୍ରିମା ।**
**ସା ବିମ୍ବାଧରମାଧୁରୀତି ବିଷୟାସଙ୍ଗେଽପି ଚେନ୍ମାନସଂ**
**ତସ୍ୟାଂ ଲଗ୍ନସମାଧି ହନ୍ତ ବିରହବ୍ୟାଧିଃ କଥଂ ବର୍ଦ୍ଧତେ ॥ ୬ ॥**

ଶ୍ରୀକୃଷ୍ଣ ବୋଲୁଛନ୍ତି କନ୍ଦର୍ପଙ୍କୁ—ହେ ମନୋଜ ଦେଖ ବିପରୀତ କଥା । ହାଦେ ରାଧିକା ବିରହ ବିଯୋଗ ରୋଗଃ କଥଂ ମମ୍ପି ବର୍ଦ୍ଧତେ । ମୋହର ଦେହରେ କି ଅର୍ଥେ ଅଛି । ଶୁଣ ସେ ରୋଷକୁ ମୁଁ କେତେକେତେ ଉପାୟମାନଙ୍କୁ ଅନୁଭବ କରି ଶାନ୍ତ ନକଲି । ମୁଁ ଯେତେଯେତେ ଅନୁଭବ ଶାନ୍ତ କରୁଛି ତାହା କହିବା ଶୁଣ । ରାଧିକା ଦେହର ଆଲିଙ୍ଗନ ଯେ ସୁଖ ସେ ସୁଖମାନଙ୍କୁ ଅନୁଭବ କରୁଛି । ଆଉ ସେ ରାଧାର ଯେ ତରଳ ଚଞ୍ଚଳ ଦୃଷ୍ଟି କଟାକ୍ଷ ବିଭ୍ରମ ବାଣଘାତମାନେ ତାହା ଅନୁଭବ ଶାନ୍ତ କରୁଛି । ଆଉ ସେ ରାଧାର ମୁଖପଦ୍ମର ଗନ୍ଧକୁ ହିଁ ଅନୁଭବ ଭୋଗ କଲି । ସ ଚ ସୁଧାସ୍ୟନ୍ଦଗିରାଂ ବକ୍ରିମା । ସେ ରାଧାର ଅମୃତ ସ୍ରବୁଛି ଯେ ବଚନମାନଙ୍କର କହିବାର ବକ୍ରଭାବ ତାହା ଅନୁଭବ କରୁଛି । ଆଉ ତାହାର ଯେ ବିମ୍ବାଧର ଓଷ୍ଠ ତହିଁରେ ସେ ମାଧୁରୀ ତହିଁ ଚୁମ୍ବନେ କରି ଅନୁଭବ କରୁଛି । ଏତଦ୍ ବିଷୟେ ସଙ୍ଗେପି ଚେତ୍ ଏମାନଙ୍କୁ ମୁଁ ଦେହାନ୍ତସ୍ୱାଦ କରି ଯେତେ ବିଷୟ ସଙ୍ଗସୁଖ ସମସ୍ତ ଭୋଗ କରୁଛି । ତଥାପି ହିଁ ମୋହର ମନକୁ ଯେଉଁକରି ବିରହ ବ୍ୟାଧିଃ ତସ୍ୟାଂ ଲଗ୍ନ ସମାଧିଃ । ତାହା ତ ତହିଁ ଲଗିଲା ସମାଧିରେ ପ୍ରାପ୍ତ ହୋଇଲି ମୋହର ବିରହ ବ୍ୟାଧି କାହିଁ ଅଛି ତାହାକହ । ହେ କନ୍ଦର୍ପ ମୁଁ ଏବେ ଏମନ୍ତ ମଣଇଂ । ତୋତେ କହିବି ଶୁଣ ।

**ଭ୍ରୂପଲ୍ଲବଂ ଧନୁରପାଙ୍ଗତରଙ୍ଗିତାନି**
**ବାଣା ଗୁଣଃ ଶ୍ରବଣପାଳିରିତି ସ୍ମରେଣ ।**
**ତସ୍ୟାମନଙ୍ଗଜୟଜଙ୍ଗମଦେବତାୟା-**
**ମସ୍ତ୍ରାଣି ନିର୍ଜିତଜଗନ୍ତି କିମର୍ପିତାନି ॥ ୭ ॥**

ଶ୍ରୀକୃଷ୍ଣ ବୋଲୁଛନ୍ତି—ହେ କନ୍ଦର୍ପ, ମୋହର ଚିତ୍ତକୁ ଅନୁମାନ କରଇଁ ତାହା ତୋତେ କହିବି । ସ୍ମରେଣ କନ୍ଦର୍ପେଣ ତସ୍ୟାଂ ଶ୍ରୀ ରାଧିକାୟାଂ ନିର୍ଜିତ ଜଗନ୍ତି ଅସ୍ତ୍ରାଣି କିମର୍ପିତାନି ଇତି ମନେ୍ୟ । ଶ୍ରୀକୃଷ୍ଣ ଆପଣାର ମନକୁ ଏମନ୍ତ ଅନୁମାନ କରି ବୋଲୁଛନ୍ତି ଅହୋ ଆଶ୍ଚର୍ଯ୍ୟଂ । ଏ ବଡ଼ ଆଶ୍ଚର୍ଯ୍ୟ ନିଶ୍ଚେ କରିକି କନ୍ଦର୍ପ ଜଗତକୁ ଜିଣିଲା ଯେ ଶସ୍ତ୍ରମାନଙ୍କରେ କରି ସେ ଶସ୍ତ୍ରମାନ କି ରାଧାର ଦେହରେ ଥୋଇଅଛି । ଯେଣୁକରି ସେ କାମ ଜଗତକୁ ଜୟ କରିବାର ପୂର୍ବକାଳେ ଜଙ୍ଗମ ରୂପ ଦେବତା

କଲ୍ପି ରାଧାଙ୍କୁ ସ୍ଥାପି ପୂଜା କରି ଆଜ୍ଞା ମାଗି ଜଗତକୁ ଜୟ କଲରେ ସେହି ଦେବତାର ଦେହରେ ଶସ୍ତ୍ରମାନ ଥୋଇଁଅଛି କି ମୁଁ ଏମନ୍ତ ମଣେଇଁ । ଯେଉଁ ଅଙ୍ଗେ ଯେ ଶସ୍ତ୍ର ଥୋଇଁଅଛି ତାହା କହିବା । ଭ୍ରୂ ପଲ୍ଲବଂ ଧନୁଃ । ରାଧାର ଚକ୍ଷୁ ଉପରେ ଧନୁ ଥୋଇଛି । ସେ ଧନୁ ଭ୍ରୂଲତା ରୂପେ ଦିଶୁଛି । ଅପାଙ୍ଗତରଙ୍ଗିତାନି ବାଣାଗୁଣାଃ । ତାହାର ଚକ୍ଷୁର କୋଣେ ବାଣମାନଙ୍କୁ ଥୋଇଛି । ଯେଣୁ କରି ଅପାଙ୍ଗ ତରଙ୍ଗ କଟାକ୍ଷ ଦୃଷ୍ଟିରୁ ବାଣ ବୃଷ୍ଟି ହୋଇ । ଗୁଣଃ ଶ୍ରବଣପାଳି ଶ୍ରବଣରେ ଧନୁରେ ଗୁଣ ଥୋଇଛି । କର୍ଣ୍ଣରେ ତାଟଙ୍କ ଚକ୍ରମାନ ଯେମନ୍ତେ କାନ ଲଥିଲ । ଗୁଣ ପ୍ରାୟେ ଦିଶଇ । ଏ ଦେହ ଜାଣିଲି ସାକ୍ଷାତ କାମ ଶସ୍ତ୍ର ସ୍ୱରୂପ ରାଧା ।

**ଇତି ଶ୍ରୀଗୀତଗୋବିନ୍ଦମହାକାବ୍ୟେ କବିରାଜଜୟଦେବକୃତୌ ବିରହିଣୀବର୍ଣ୍ଣନେ ମୁଗ୍ଧମଧୁସୂଦନୋ ନାମ ତୃତୀୟଃ ସର୍ଗଃ ।**

---

# ଚତୁର୍ଥଃ ସର୍ଗଃ

**ଶ୍ଲୋକ**

**ଯମୁନାତୀରବାନୀରନିକୁଞ୍ଜେ ମନ୍ଦମାସ୍ଥିତମ୍ ।**
**ପ୍ରାହ ପ୍ରେମଭରୋଦ୍‌ଭ୍ରାନ୍ତଂ ମାଧବଂ ରାଧିକାସଖୀ ॥ ୧ ॥**

ଜୟଦେବ କବି ବୋଲୁଛନ୍ତି—ହେ ବୈଷ୍ଣବ ଜନମାନେ ଶୁଣ । ଯମୁନା ତୀର ଯେ ଯମୁନା ତଟ ତହିଁର କୂଳେ ବାନୀର ନିକୁଞ୍ଜେ ବାନୀର ଯେ ବେତଲତା ନିକୁଞ୍ଜ ଯେ ଘର ପ୍ରାୟେ ହୋଇଛି ସେ ଲତା ଭିତରେ ମନ୍ଦମାସ୍ଥିତଂ ସ୍ଥିର ହୋଇ ବସିଛନ୍ତି ଯେ ଶ୍ରୀକୃଷ୍ଣ ସେ କେମନ୍ତ ଅଛନ୍ତି[1] । ପ୍ରେମଭରୋଦ୍‌ଭ୍ରାନ୍ତଂ । ପ୍ରେମ ଯେ ରାଧାର ସ୍ନେହ ସେହିଭରେ ହୋଇଛନ୍ତି ଚେତନେକର ଉଦ୍‌ଭ୍ରାନ୍ତଂ । ବିଭ୍ରମ ଚିତ୍ତ ହୋଇଛନ୍ତି । ଏମନ୍ତ ଯେ ମାୟାଧର ଲକ୍ଷ୍ମୀକାନ୍ତ ପୁଣି ଆତ୍ମାରାମ ଅଛନ୍ତି ଏମନ୍ତ ଯେ ମାଧବ ତାହାଙ୍କୁ ରାଧିକାର ସଖୀ ଯେ ଦୂତୀ ସେ କୃଷ୍ଣଙ୍କୁ ପ୍ରାହ । କହୁଛି ରାଧାର କଥାମାନ ।

**ଗୀତ**

କର୍ଣ୍ଣାଟରାଗେଣ ଗୀୟତେ

**ନିନ୍ଦତି ଚନ୍ଦନମିନ୍ଦୁକିରଣମନୁ[2] ବିନ୍ଦତି ଖେଦମଧୀରମ୍ ।**
**ବ୍ୟାଳନିଳୟମିଳନେନ ଗରଳମିବ କଳୟତି ମଳୟସମୀରମ୍ ।**
**ସା ବିରହେ ତବ ଦୀନା ।**
**ମାଧବ ! ମନସିଜବିଶିଖଭୟାଦିବ ଭାବନୟା ତ୍ୱୟି ଲୀନା ॥ ୧ ॥**

(ଧ୍ରୁବପଦମିଦମ୍)

ଦୂତୀ ବୋଲୁଛନ୍ତି—ହେ ମାଧବ, ମାୟାନାଥ ଈଶ୍ୱର ! ସା ମମ ସଖି ରାଧା ବିରହେ ତବ ଦୀନା । ସେ ରାଧା ତୁମ୍ଭର ବିରହେ କରି ବଡ଼ ଦୁଃଖୀ ହୋଇଛନ୍ତି ।

---

୧-ଖ. ହୋଇଛନ୍ତି ।
୨-କ ଖ. ୦ମିବ

ମନସିଜବିଶିଖଭୟାତ୍ । ହେ ପ୍ରଭୁ ମୋହର ସଖୀ ଯେ ରାଧା ତାହାକୁ ତୁମ୍ଭର ବିଚ୍ଛେଦ ଦେଖିକରି ଅସଦୟ ପ୍ରାୟ ମଣି କରି କନ୍ଦର୍ପ ତାହାଙ୍କୁ ବାଣମାନ ନିରନ୍ତରେ ବିନ୍ଧୁଛି । ସେ ରାଧା କନ୍ଦର୍ପ ତାହାଙ୍କୁ ବାଣମାନ ନିରନ୍ତରେ ବିନ୍ଧୁଛି । ସେ ରାଧା କନ୍ଦର୍ପ ବାଣମାନଙ୍କର ଭଏ କରି ତୁମ୍ଭଙ୍କୁ ଭାବୁଛି । ସେ ଭାବକୁ କି ଉପମା କରିବା । ଭବନମ୍ବା ଲୀନା । ତୁମ୍ଭ ରୂପକୁ ଭାବୁଛି ଲୀନା । ଧ୍ୟାନରେ କରି ତୁମ୍ଭର ତହିଁ ଲୀନ ହୋଇଛି । ମନକୁ ମଗ୍ନ କରିଛି । ହେ ମାଧବ, ତୁମ୍ଭର ବିରହେ ମମ ସଖୀ ରାଧା ନିନ୍ଦତିଚନ୍ଦନମ୍ । ଚନ୍ଦନକୁ ନିନ୍ଦା କରୁଛି । ତଦନ୍ତୁ ଚନ୍ଦ୍ର କିରଣ । ଚନ୍ଦ୍ର କିରଣକୁ ନିନ୍ଦା କରୁଛି । ତଦନ୍ତୁ ଅଧୀରଂ ଖେଦଂ ବଦତି । ଅତି ଚଞ୍ଚଳ ଖେଦ କ୍ଳେଶଂ ଲଭତେ । ଅତୋ ଅଧୀରଂ । ଅସ୍ଥିରଂ ବଦତି । ଅଧୀର ଅସ୍ଥିର ହୋଇଛି । ହେ ମାଧବ ମଳୟ ସମୀର ଗରଳମିବ କଳୟତି । ମନ୍ୟତେ । ମଳୟ ପବନକୁ ଗରଳ ପ୍ରାୟେ ମଣୁଛି । କିମ୍ପା ଗରଳ ପ୍ରାୟେ ମଣୁଛି । ତାହା ଶୁଣ । ଯେଣୁକରି ସେ ମଳୟ ପର୍ବତେ ଚନ୍ଦନ ବୃକ୍ଷମାନେ ଅଛନ୍ତି । ତାହାଙ୍କର କୋଟରେ ଯେ କାଳସର୍ପମାନ ଅଛନ୍ତି ତାହାଙ୍କର ବିଷ ସଂଯୋଗେଁ କରି ଗରଳେ ମିଶାଇଁ ହୋଇଁ ବହୁଛି । ଏମନ୍ତ ପ୍ରାୟେ ମଣେ--

**ଅବିରତନିପତିତମଦନଶରାଦିବ ଭବଦବନାୟ ବିଶାଳମ୍ ।**
**ସ୍ୱହୃଦୟମର୍ମଣି ବର୍ମ କରୋତି ସଜଳନଳିନୀଦଳଜାଳମ୍ ॥ ୨ ॥**

ହେ ମାଧବ, ଅବିରତ ନିରନ୍ତର ହୋଇଁ ରାଧା ଉପରେ ପଡ଼ୁଛି ଯେ ମଦନ ଶରମାନେ । ତଦ୍ ଭୟାତ୍ । ସେ ମଦନ ଶର ଭୟରୁ କରି ଏମନ୍ତ ବିଚାର କଲେ ନ ପୁଣି ଏ ବାଣମାନ ମୋହର ହୃଦୟ ପଦ୍ମରେ ଲାଗିଇ । ଯେ ହୃଦୟ ମଧ୍ୟେ ଯେ ଆତ୍ମାରୂପେ ଶ୍ରୀ ମାଧବ ଅଛନ୍ତି । ଏ ବାଣ ବାଜିଲେ ତ ସେ କୃଷ୍ଣ ରକ୍ଷା ନ ପାଇବେ । ସେ ଥିଲେ ସେ ମୁଁ । ମୁଁ ଏ ଦୁଃଖରୁ ପାରିଯିବି ନା ସେ କେମନ୍ତେ ରକ୍ଷା ହେଉ । ଏମନ୍ତ ବିଚାରି ସ୍ୱ ହୃଦୟ ମର୍ମଣି ଆପଣା ହୃଦୟ ଉପରେ ବର୍ମ କରୋତି ସଜଳ ନଳିନୀ ଦଳ ଜାଳଂ । ନଳିନୀ ଦଳ ଯେ ପଦ୍ମପତ୍ର ମାନ ତାହା ଜଳ ସହିତ ବହଳ କରି ହୃଦୟମର୍ମ ଉପରେ ବର୍ମ ଯେ ସେନା ସେହିମତ କରି ଦେଇ ହୃଦରେ ଆବୋରି ବୃକ୍ଷ ମାଡ଼ ବଣାଇଛି ।

**କୁସୁମବିଶିଖଶରତଳ୍ପମନଳ୍ପବିଳାସକଳାକମନୀୟମ୍ ।**
**ବ୍ରତମିବ ତବ ପରିରମ୍ଭସୁଖାୟ କରୋତି କୁସୁମଶୟନୀୟମ୍ ॥ ୩ ॥**

ହେ ମାଧବ, ତୁମ୍ଭ ବିରହେ ସେ ରାଧା ନାନା ସ୍ୱବାସକୋମଳ କୁସୁମ ମାନଙ୍କରେ କରି ଯେ ଶଯ୍ୟା ତବ ପରିରମ୍ଭସୁଖାୟ କରୋତି । ତୁମ୍ଭ ସେ ଶଯ୍ୟାରେ

ଶୋଇ ତାହାକୁ ଆଲିଙ୍ଗନ କରିବ ବୋଲି ତହିଁ ସୁଖାର୍ଥେ କରିଛୁ । ସେ ଶଯ୍ୟା କେମନ୍ତେ ଅଛଇ । ଅନଳ୍ପବିଳାସକଳାକମନୀୟମ୍ । ବହୁତର ଚତୁଃଷଷ୍ଟୀ-କାମକଳାବିଧୌ ମନୋହରମ୍ । ବହୁତ କାଳ ପର୍ଯ୍ୟନ୍ତ କାମକଳା ପରିରମ୍ଭ କରିବାକୁ ସୁନ୍ଦର ହୋଇଛି । ଏମନ୍ତ କୁସୁମ ଶଯ୍ୟାକୁ ବଡ଼ ଯତ୍ନ କରି କରୁଛୁ । କମିବ । ତାହାର ପ୍ରାପ୍ତ୍ୟ । ବ୍ରତମିବ । ଯେମନ୍ତ ବ୍ରତ ସଙ୍କଳ୍ପ କଲି ପ୍ରାଣୀ ଦୃଢ଼ ଚିତ୍ତ ହୋଇଁ ବ୍ରତ ପାଳନ କରୁଥାଏ ସେହି ମତ କରି ଏମନ୍ତ ଶଯ୍ୟାକୁ ତୁମ୍ଭର ବିରହେ ଯେମନ୍ତ ମଣୁଛୁ ତାହା ଶୁଣ । କୁସୁମବିଶିଖଶରେତଳ୍ପମିବ । କୁସୁମ ବିଶିଖ ଯେ କନ୍ଦର୍ପର କୁସୁମ ବାଣ ଏ ବାଣ ମାନଙ୍କରେ କରି ଏ ଶଯ୍ୟା ହୋଇଛି କି ଏମନ୍ତ ମଣୁଛୁ ।

**ବହତି ବିଗଳିତବିଲୋଚନଜଳଧରମାନନକମଳମୁଦାରମ୍**
**ବିଧୁମିବ ବିକଟବିଧୁନ୍ତୁଦଦନ୍ତଦଳନଗଳିତାମୃତଧାରମ୍ ।। ୪ ।।**

ହେ ମାଧବ, ସେ ରାଧା ତୁମ୍ଭଙ୍କୁ ନ ପାଇ ନିରନ୍ତର ରୋଦନ କରନ୍ତେ ତାହାର ଦୁଇ ଲୋଚନ ଜଳେକରି ଏମନ୍ତ ମୁଖକୁ ରାଧା ଧରିଛି । ମୁଖ କିଂ ଭୂତଂ । ସେ ମୁଖ କେମନ୍ତ ଅଛଇ । ଆନନ କମଳଂ ପଦ୍ମକୁ ପଟାନ୍ତର ଅଛଇ । ଉଦାରଂ । ଉତ୍କୃଷ୍ଟଂ ସୁନ୍ଦରଂ । ପୁନଃ କିଂ ଭୂତଂ । ପୁଣି କେମନ୍ତ ଅଛଇ । ବିଗଳିତ ବିଲୋଚନ ଜଳଧରଂ । ଦ୍ରବ ଚକ୍ଷୁ ଲୋତକମପୁ ଜଳଧରଂ । ସ୍ରବୁଛି ଯେ ଦୁଇ ଚକ୍ଷୁ ତହିଁରେ ଲୋତକମଧୁ ଜଳ । ସେ ଲୋତକେ କରି କେମନ୍ତେ ଦିଶୁଛି । କି ପଟାନ୍ତର କହିବା । ତାହିଁରେ ତାହାର ପ୍ରାପ୍ତେ । ବିଧୁନ୍ତୁଦ ଦନ୍ତ ଦଳନ ଗଳିତାମୃତ-ଧାରମିବ । ବିଧୁନ୍ତୁଦ ଯେ ରାହୁ ତାହାର ଦନ୍ତ ଗ୍ରାସ ଲାଗିଲେ ଯେମନ୍ତ ଚନ୍ଦ୍ର ଦେହରୁ ଅମୃତ ଧାରମାନ ଗଳୁଥାଏ । ତେତେବେ କରି ସେ ଚନ୍ଦ୍ର ଯେମନ୍ତ ଦିଶଇ ସେହିମତ ଦିଶୁଛି ମୁଖଚନ୍ଦ୍ର ତାହାର ।

**ବିଲିଖତି ରହସି କୁରଙ୍ଗମଦେନ ଭବନ୍ତମସମଶରଭୂତମ୍**
**ପ୍ରଣମତି ମକରମଧୋ ବିନଧାୟ କରେ ଚ ଶରଂ ନବଚୂତମ୍ ।। ୫ ।।**

ହେ ମାଧବ, ସେ ରାଧା ରହ ଏକାନ୍ତେ ଏକାନ୍ତ ସ୍ଥାନରେ ବସି କୁରଙ୍ଗ ମଦେନ କସ୍ତୁରୀ ଗନ୍ଧେ ମସି କରି ଭବନ୍ତଂ ତ୍ୱାଂ ଲିଖତି । ତୁମ୍ଭଙ୍କୁ ପ୍ରତିମା କରି ଲେଖୁଛି । ଭୂଜ ପତେଂ ଯେମନ୍ତ ରୂପେ ତୁମ୍ଭଙ୍କୁ ଲେଖୁଛି ତାହା ଶୁଣ । ଅସମଶର-ଭୂତଂ କାମଦେବସ୍ୱରୂପଂ କାମଦେବ ସ୍ୱରୂପେ କରି ସେ ପ୍ରତିମାର ତଳେ ମକର ମାଛ ଗୋଟିଏ ଲେଖିକରି ପ୍ରଣମନ୍ତି । ବିରହ ତାପେ ନମସ୍କାର କରି ପାଦ ତଳେ ପଡୁଛି ।

**ପ୍ରତିପଦମିଦମପି ନିଗଦତି ମାଧବ ! ତବ ଚରଣେ ପତିତାହମ୍ ।**
**ତ୍ୱୟି ବିମୁଖେ ମୟି ସପଦି ସୁଧାନିଧିରପି କୁରୁତେ ତନୁଦାହମ୍ ॥ ୬ ॥**

ହେ ମାଧବ, ସା ରାଧା ପ୍ରତିପଦଂ । ପଦଂ ପଦଂ ପ୍ରତି ପଦକୁ ପଦ କ୍ଷଣକୁ କ୍ଷଣ ଇଦଂ ନିଗଦତି । ଏମନ୍ତ ବୋଲୁଛନ୍ତି । ହେ ମାଧବ, ତବ ଚରଣେ ପତିତାହଂ ହେ ପ୍ରାଣନାଥ ତୁମ୍ଭ ଚରଣ ତଳେ ମୁଁ ପଡ଼ୁଛି । ତୁମ୍ଭେ ଯେ ପତିତ-ପାବନ । ମୋତେ ରକ୍ଷାକର । ମୁଁ ତୁମ୍ଭର ଶରଣ ଗଲିଣି । ତ୍ୱୟି ବିମୁଖେ ତୁମ୍ଭେ ବିମୁଖ ହେବା ମାତ୍ରକେ । ମୟି ସପଦି ସୁଧା ନିଧି । ସପଦି ସୁଧା ନିଧି ଯେ ଅମୃତ ମୟୂ ଚନ୍ଦ୍ର ସେ ତନୁଦାହଂ କୁରୁତେ । ମୋହର ଦେହରେ ଦାହନ କରୁଛି ।

**ଧ୍ୟାନଲୟେନ ପୁରଃ ପରିକଲ୍ପ୍ୟ[1] ଭବନ୍ତମତୀବ ଦୁରାପମ୍ ।**
**ବିଲପତି ହସତି ବିଷୀଦତି ରୋଦିତି ଚଞ୍ଚତି ମୁଞ୍ଚତି ତାପମ୍ ॥ ୭ ॥**

ହେ ମାଧବ, ସେ ରାଧା ଧ୍ୟାନ କଳ୍ପନ ଧ୍ୟାନରେ ଲୀନ କରି ତୁମ୍ଭଙ୍କୁ ପୁରଃ ପରିକଲ୍ପ୍ୟ । ଅଗ୍ର ସମ୍ମୁଖରେ ତାହାର ଅଛି । ଏମନ୍ତ ଧ୍ୟାନେ କଳ୍ପନା କରି ତୁମ୍ଭଙ୍କୁ ଦେଖୁଛି । ତୁମ୍ଭେ କେମନ୍ତ ଅଛ । ଯୋଗୀମାନଙ୍କ ଯୋଗ ଧ୍ୟାନ ସାଧ୍ୟ କରି ତୁମ୍ଭଙ୍କୁ କେହି ପାଇବାକୁ ଭାଜନ ନୋହିଲେ । ତୁମ୍ଭେ ପୁଣି ଅତୀବ ଦୁରାପମ୍ । ଅତି ଦୁଃଖେ ହେ ତୁମ୍ଭଙ୍କୁ ନପାଇ ଏମନ୍ତ ସେ[2] ତୁମ୍ଭଙ୍କ ଅଗ୍ର ଥିଲା ଧ୍ୟାନେ ପୁଣି ତୁମ୍ଭ ସମ୍ମୁଖରେ ବିଲପତି । ଶୋଚନାଂ କରୋତି । ହସତି । ଉପହାସଂ କରୋତି । ବିଷୀଦତି । ବିଷାଦଂ ପ୍ରାପ୍ନୋତି । ବିଷାଦ କରୁଛି । ରୋଦିତି । ରୋଦନଂ କରୋତି । ଚଞ୍ଚତି । ଭ୍ରମେ ଯାଇ । ଭ୍ରମ ଯାଉଁଛି । ମୁଞ୍ଚତି ତାପଂ । କ୍ଷଣ କ୍ଷଣକେ ତାପ ଛାଡ଼ୁଛି ।

**ଶ୍ରୀଜୟଦେବଭଣିତମିଦମଧିକଂ ଯଦି ମନସା ନଟନୀୟମ୍ ।**
**ହରିବିରହାକୁଳବଲ୍ଲବଯୁବତିସଖୀବଚନଂ ପଠନୀୟମ୍ ॥ ୮ ॥**

ଜୟଦେବ କବି ବୋଲୁଛନ୍ତି—ହେ ବୈଷ୍ଣବ ଜନମାନେ ଶୁଣ । ମମ ଭଣିତଂ ଗୀତଂ । ମୋହର ଭଣିଲା ଏ ଗୀତ । ଏ ଗୀତ କେମନ୍ତ ଅଟଇ । ଅଧିକଂ ଅତିଶୟଂ ଶାସ୍ତ୍ରେଭ୍ୟଃ ସକଳ ଶାସ୍ତ୍ର ମଧ୍ୟେ ଅତିଶୟ ଅଟଇ । ଯୁଷ୍ମାକଂ ଯଦି ମନସା କୃତ୍ୱା ନଟନୀୟଂ । ଅନୁମତ ଭବତି । ଯାହା ମନରେ କରି ନଟନମତେ ଗାନ ନୃତ୍ୟାଦି କରିବ । ତାହାଙ୍କ ଯୋଗ୍ୟ ଅଟଇ । ଅଥବା ଇଦଂ ଜ୍ଞାତ୍ୱା ମନସା ଅନଟନୀୟଂ ଭବତି । ଏ ଗ୍ରନ୍ଥ ଜାଣିବା ମାତ୍ରକେ ମନ ଆଉ ଅଧିକେଂ ଶାସ୍ତ୍ର ମାର୍ଗେ ନବାଣ

---

୧-ଖ. ପରିକଳ୍ପ
୨-ଖ.ରେ ଅଧିକ ପାଠ—ତୁମ୍ଭେ' ସେ

ମୋକ୍ଷକୁ ଆଉ ଖୋଜିବାକୁ ନ ଯାଏ । ପୁଣି ଏ ଗ୍ରନ୍ଥ କେମନ୍ତ ଅଟଇ । ରାଧାକୃଷ୍ଣ ବିଚ୍ଛେଦ ବ୍ୟାକୁଳ ଗୋପ ତରୁଣୀ । ରାଧା ସଖୀ ଦ୍ୱାରା କଥନଂ ପଠନୀୟମ୍ । କୃଷ୍ଣର ସଙ୍ଗେ ବିଚ୍ଛେଦ ବ୍ୟାକୁଳ ଦୁଃଖ କଥା ମାନ ସମସ୍ତ ଦୂତୀ ଶ୍ରୀକୃଷ୍ଣ ସ୍ଥାନରେ କହୁଁଛି । ହେ ବୈଷ୍ଣବ ଜନମାନେ ଏତତ୍ ପଠନୀୟମ୍ । ଏ ଗ୍ରନ୍ଥ ପଢିବାକୁ ଯୋଗ୍ୟ[୧] ଅଟଇ ।

**ଶ୍ଳୋକ**

**ଆବାସୋ ବିପିନାୟତେ ପ୍ରିୟସଖୀମାଳାପି ଜାଳାୟତେ**
**ତାପୋଽପି ଶ୍ୱସିତେନ ଦାବଦହନଜ୍ୱାଳାକଳାପାୟତେ ।**
**ସାପି ତ୍ୱଦ୍‌ବିରହେଣ ହନ୍ତ ହରଣୀରୂପାୟତେ ହା କଥଂ**
**କନ୍ଦର୍ପୋଽପି ଯମାୟତେ ବିରଚୟଞ୍ଛାର୍ଦ୍ଦୂଳବିକ୍ରୀଡ଼ିତମ୍ ।। ୬ ।।**

ଦୂତୀ କହୁଛି—ହେ ମାଧବ, ତ୍ୱଦ୍ ବିରହେଣ ତୁମ୍ଭର ବିରହ ବିଚ୍ଛେଦ ଦୁଃଖେ କରି ସା ରାଧା ହନ୍ତ ହରଣୀ ରୂପାୟତେ । ମୋହର ସଖୀ ଯେ ରାଧା ସେ ବନରେ ବ୍ୟାଧ ଦାବୃଡ଼ନ୍[୨] ହରଣୀ ଯେମନ୍ତ ହୋଇଥାଇ ସେହିମନ୍ତ ରୂପ ହୋଇଛି । ହା କଷ୍ଟଂ କଥଂ କେବଳ । ଏଡ଼େ କଷ୍ଟ ପାଇଁ ସେ କେମନ୍ତେ ବଞ୍ଚିବ । ହେ ମାଧବ ! ସେ ରାଧା ଆବାସୋ ବିପିନାୟତେ । ଆପଣାର ଘରକୁ ବନସ୍ଥଳ ପ୍ରାୟେ ମଣୁଛି । ପ୍ରିୟ ସଖୀ ମାଳାପି ଜାଳାୟତେ । ପ୍ରିୟ ସଖୀ ମାନଙ୍କୁ ଜାଳମାଳା ପ୍ରାୟେ ମଣୁଛି । ତାପୋଽପି ଶ୍ୱସିତେନ । ଦୀର୍ଘ ନିଶ୍ୱାସ ଛାଡ଼ିବାରେ ଯେ ତାପ ସେ ତାପକୁ ଦାବ ଦହନ ଜ୍ୱାଳାମ୍ଭତେ । ବନ ଦାବାଗ୍ନିର ତେଜ ତାହାର ପ୍ରାୟେ କରାଳ ଦୁଃସହ ମଣୁଛି । ସେ ରାଧାକୁ କନ୍ଦର୍ପୋଽପି ଯମାୟତେ । କନ୍ଦର୍ପ ଯମ ପ୍ରାୟେ ହୋଇଛି । ଯେମନ୍ତ କନ୍ଦର୍ପ ଯମ ପ୍ରାୟେ ହୋଇଅଛି ତାହା ଶୁଣ । ଶାର୍ଦ୍ଦୂଳବିକ୍ରୀଡ଼ିତଂ । ଶାର୍ଦ୍ଦୂଳ ବିକଟ କ୍ରୀଡ଼ା ସାଧନେନ । ବ୍ୟାଧ ଯେମନ୍ତ ବନରେ ହରଣୀକି ବେଢ଼ିଥାଇ ସେହିମନ୍ତ ହରଣୀ ହୋଇଛି ରାଧା ଆମ୍ଭର ବିରହେ କରି ।

---

୧-ଖ.ରେ—ବଡ଼ ଯୋଗ୍ୟ

୨-ଖ. ଆବୋରିଲା

## ଗୀତ

(ଦେଶାଖରାଗେଣ ଗୀୟତେ)

**ସ୍ତନବିନିହିତମପି ହାରମୁଦାରମ୍ ।**
**ସା ମନୁତେ କୃଶତନୁରିବ ଭାରମ୍ ।**
**ରାଧିକା ବିରହେ ତବ କେଶବ ॥ ୧ ॥**

( ଧ୍ରୁବପଦମିଦମ୍ )

ଦୂତୀ କହୁଛି—ହେ କେଶବ, ତବ ବିରହେ ସା ରାଧା ତୁମ୍ଭ ବିରହେ ସେ ରାଧା ସ୍ତନବିନିହିତହାରମପି ନିହିତଂ । ସ୍ତନ ଉପରେ ଅଛି ଯେ ମୁକ୍ତାହାର ସେ କେମନ୍ତ ଅଟଇ । ଉଦାରଂ । ଉତ୍କୃଷ୍ଟଂ । ଅତି ବୃହନ୍ତଂ । ଅତ୍ୟନ୍ତ ନିର୍ମଳ ମୁକ୍ତାମାନଙ୍କରେ ଗୁନ୍ଥିତ ହୋଇଛି । ଅତି ସୁନ୍ଦର ଶ୍ରେଷ୍ଠ ଦିଶୁଛି । ଏମନ୍ତ ହାରକୁ ସା କୃଶତନୁଃ ବଡ଼ ସୂକ୍ଷ୍ମ ଅତ୍ୟନ୍ତ ପାତଳ ତାହାର ଦେହ । ସେ ଦେହକୁ ସେ ହାର ଭାର ପ୍ରାୟେ ମଣୁଛି । ତୁମ୍ଭର ବିରହେ ହେ କେଶବ ଅପରଂ ଶୃଣୁ । ଆଉ କହିବା ।

**ସରସମସୃଣମପି ମଳୟଜପଙ୍କମ୍ ।**
**ପଶ୍ୟତି ବିଷମିବ ବପୁଷି ସଶଙ୍କମ୍ ॥ ୨ ॥**

ହେ କେଶବ, ସରସ ମସୃଣଂ ଶୁଣ ଜଳଯୁକ୍ତଂ ମୃଦୁହୃଷ୍ଟଂ ମଳୟଜ ପଙ୍କକର୍ପୂର କସ୍ତୁରୀ ଗନ୍ଧ ଏମାନ ଦେଇ ଜଳଯୁକ୍ତ କରି ଅତ୍ୟନ୍ତ ମର୍ଦ୍ଦଣ କରି ଘଷିଲାର ଚନ୍ଦନ ପଙ୍କ ତାହା ଦେହରେ ଦେବାକୁ ସଶଙ୍କ ପଶ୍ୟତି । ବଡ଼ ଶଙ୍କା କରୁଛି । ତାହାର ପ୍ରାୟେ ମଣୁଛି । ବିଷମିବ କାଳ ଗରଳ ପ୍ରାୟେ ମଣୁଛି ।

**ଶ୍ବସିତପବନମନୁପମପରିଣାହମ୍ ।**
**ମଦନଦହନମିବ ବହତି ସଦାହମ୍ ॥ ୩ ॥**

ହେ କେଶବ, ଅନୁପମପରିଣାହଂ । ଶ୍ୱସିତପବନଂ ; ଉପମା ଦେବାକୁ ନାହିଁ ଶୀତଳ ପଣେ । ଏଣେ ଯେ ନିଶ୍ୱାସ ପବନ ସେ ପବନକୁ ବିଷାଦ ନିଃଶ୍ୱାସ କରି । ମଦନ ଦହନମିବ ବହନ୍ତି ସଦାହଂ । ଦାହ ସହିତ ସେ କାମାଗ୍ନି ତଦ୍‌ବନ୍ତ

ତାହାର ପ୍ରାୟେ ଲବ ଜ୍ୱାଳାଯୁକ୍ତଂ ଏମନ୍ତ ନିଶ୍ୱାସ ପବନମାନଙ୍କୁ ଭ୍ରମର ବଗହେ ଅଗ୍ନିର ସଙ୍ଗେ ତୁଳନା କରନ୍ତି ।

**ବହତି ଚ ଗଳିତବିଲୋଚନଜଳଧରମ୍ ।**
**ନୟନନଳିନମିବ ବିଗଳିତନାଳମ୍ ॥ ୪ ॥**

ହେ କେଶବ ! ବହି ବହି ନୟନଂ କରନ୍ତି । ଚକିତ ହୋଇଁ ଦଶଦିଗକୁ ଗୃହ୍ନଁନ୍ତି । ତାହାର ଚକ୍ଷୁ ଯେମନ୍ତ ହୋଇଛି ତାହା ଶୁଣ । ସଜଳକଣଜାଳଂ । ସଜଳସ୍ଥା ସହ ବର୍ତ୍ତମାନଂ ଲୋତକ ଜଳେ କରି ସଂପୂର୍ଣ୍ଣ ହୋଇଛି । କମିବ । କାହାର ପ୍ରାୟେ ଦିଶୁଛି । ନଳିନମିବ । ପଦ୍ମର ପ୍ରାୟେ । କିଂ ଭୂତଂ ନଳିନଂ । ନଳିନ କେମନ୍ତ ହୋଇଛି । ଯଥା ବିଗଳିତ ନାଳଂ । ତତ୍‌କାଳ ଫୁଟିଲା ଯେ ପଦ୍ମ ତହିଁ ମାଖିତା ଶିଶିର ସୀକର ଲାଗିଥିଲେ ଯେମନ୍ତ ଦିଶଇ । ଲୋତକ ଧାର ଚୁଏଁ ବାହେ ସେହିମନ୍ତ ଦିଶୁଛି ।

**ନୟନବିଷୟମପି କିଶଳୟତଳ୍ପମ୍ ।**
**କଳୟତି ବିହିତହୁତାଶନକଳ୍ପମ୍ ॥ ୫ ॥**

ହେ କେଶବ, ସେ ରାଧା ନୟନ ବିଷୟମପି ଚକ୍ଷୁ ଗୋଚରେମପି କିଶଳୟ ତଳ୍ପଂ କୋମଳପତ୍ରଶଯ୍ୟାଂ । ବିହିତ ହୁତାଶନକଳ୍ପଂ । କଳିତ ଜ୍ୱଳଦଗ୍ନିମିବ କଳୟନ୍ତି । ମନ୍ୟତେ । ସେ ରାଧା ନୟନେ ଗୃହ୍ନଁଲା ଯେ କୋମଳ ପତ୍ର ଶଯ୍ୟାକୁ ତାହାକୁ ଅଗ୍ନିକୁଣ୍ଡ ପ୍ରାୟେ ମନ୍ତ୍ରି ଭ୍ରମ ବଗହେ କରି । ଏବେ ଶୁଣ କହିବା—

**ତ୍ୟଜତି ନ ପାଣିତଳେନ କପୋଳମ୍ ।**
**ବାଳଶଶିନମିବ ସାୟମଲୋଲମ୍ ॥ ୬ ॥**

ହେ କେଶବ, ସା ରାଧା ପାଣି ତଳେନ ସର୍ବଥା କପୋଳଂ ନ ତ୍ୟଜନ୍ତି । ସେ ରାଧା ହସ୍ତକର କପୋଳ ନ ଛାଡ଼ଇ ନିରନ୍ତରେ । କପୋଳ ଧରି ରୋଦନ କରୁଛି । ସେ କପୋଳ ତାହାର କେମନ୍ତ ଅଟଇ ସାୟଂ ବାଳ ଶଶିନମିବ । ସାୟଂ କାଳେ ବାଳଶଶି ଯେ ଚନ୍ଦ୍ରମା, ସେ ଯେମନ୍ତ ସନ୍ଧ୍ୟା କାଳରେ ଦିଶଇ । ସେ ଚନ୍ଦ୍ର ପୁଣି କେମନ୍ତ ଅଟଇ । ଗଗନେ ଚଳଇ[୧] । ଏ ରାଧାର ଲଲାଟଚନ୍ଦ୍ର । ଅଲୋଳଂ ଅଚଞ୍ଚଳଂ । ସ୍ଥିର ଅଟଇ । ଚନ୍ଦ୍ରର ପ୍ରାୟେ ପୁଣି ସ୍ଥିର ଅଟଇ । ସୁନ୍ଦର ଅଟଇ ଦ୍ୱିତୀୟାର ଚନ୍ଦ୍ରର ପ୍ରାୟେ । ଏମନ୍ତ କପୋଳେ ହସ୍ତ ଦେଇଁ ନିରନ୍ତର ରୋଦନ କରୁଛି ।

---

୧-ଖ.ରେ ଅଧିକ ପାଠ 'ଅସ୍ତ ହୋଇ'

**ହୁଙ୍କରତି ହରରତି ଜପତି ସକାମମ୍ ।**
**ବିରହବିହିତମରଣେବ ନକାମମ୍ ।। ୭ ।।**

ହେ କେଶବ ! ସେ ରାଧା ସକାମଂ ନଷ୍ଟେ ମରିବାର ଇଚ୍ଛାକରି । ସଂକଳ୍ପକରି ଆଶା କରି ତୁମ୍ଭଙ୍କୁ ପାଇବ ଏମନ୍ତ ବସ୍ତୁରେ ବୈଷ୍ଣବ ପ୍ରାଣୀ ଯେମନ୍ତ ଅନ୍ତକାଳେ ହରି ହରି ବୋଲି ଜପ କରୁଥାଏ । ମଲେ ହରିଙ୍କ ପାଇବ ବୋଲି ସେହିମତ ମରଣାବସ୍ଥାରେ ସେହି ସଙ୍କଳ୍ପ ବାଞ୍ଛା କରି ତୁମ୍ଭଙ୍କୁ ପାଇବ ଏମନ୍ତ ଆଶାରେ ହରିରତି ହରରତି ଜପତି । ଜପ କରୁଛି । ସେ ଜପ କେମନ୍ତ ଅଟଇ । ବାଞ୍ଛା ସହିତ ଅଟଇ । ଅବଶ୍ୟ ପାଇବ ଏମନ୍ତ ଆଶାକରି ଜପ କରୁଛି । ପୁନଃ କଂ ଭୂତଂ ଜପଃ । ମରଣେବ ନକାମଂ । ମରଣ ନଟଶ୍ଚକନ୍ତ ଆଶା ଗ୍ରହିଲା ସଂସାର ପହିଁ । ୭ ।

**ଶ୍ରୀଜୟଦେବଭଣିତମିତି ଗୀତମ୍ ।**
**ସୁଖୟତୁ କେଶବପଦମୁପନୀତମ୍ ।। ୮ ।।**

ଜୟଦେବ କବି ବୋଲୁଛନ୍ତି—ହେ ବୈଷ୍ଣବ ଜନମାନେ ଶୁଣ । ଜୟଦେବ ଭଣିତଂ ଗୀତଂ ଜୟଦେବ ଭଣିଲେ ଗୀତ ଏ । ଏ ଗୀତ କେମନ୍ତ ଅଟଇ । କେଶବ ପଦମୁପନୀତମ୍ । ଶ୍ରୀ ବାସୁଦେବ ପଦାରବିନ୍ଦ ପ୍ରାପ୍ତି ମାର୍ଗମ୍ । ଶ୍ରୀକୃଷ୍ଣ ପଦାରବିନ୍ଦ ପ୍ରାପ୍ତି ମାର୍ଗ ଅଟଇ । ପୁନଃ କଂ ଭୂତମ୍ । ପୁଣି ଏ ଗୀତ କେମନ୍ତ ଅଟଇ । ଏକାନ୍ତଭକ୍ତିବିଷୟବର୍ତ୍ତିତମ୍ । ଏକାନ୍ତ ଭକ୍ତି ବିଷୟେ ବର୍ତ୍ତିତ ଅଟଇ । ଏତଦେବ ଭବତାଂ ସୁଖୟତୁ । ଏ ଗୀତ ତୁମ୍ଭମାନଙ୍କୁ ନିତ୍ୟେ ସୁଖ ଦେଉ । ।

**ଶ୍ଳୋକ**

**ସ୍ଵବତୁରଂ ଦୈବତବୈଦ୍ୟହୃଦ୍ୟ**
**ତ୍ୱଦଙ୍ଗସଙ୍ଗାମୃତମାତ୍ରସାଧ୍ୟାମ୍ ।**
**ବମୁକ୍ତବାଧାଂ କୁରୁଷେ ନ ରାଧା-**
**ମୁପେନ୍ଦ୍ର ବଜ୍ରାଦପି ଦାରୁଣୋଽସି ।। ୩ ।।**

ସଖୀ କୃଷ୍ଣଙ୍କୁ ଗୁହିଁ କୋଧର ହୋଇ ଏମନ୍ତ ବୋଲୁଛି । ହେ ଉପେନ୍ଦ୍ର, ବଜ୍ରାଦପି ଦାରୁଣୋସି । ତୁମ୍ଭେ ଉପେନ୍ଦ୍ର ଦେବତାର ସାନ ଭାଇ ଅଟ । ସ୍ୱଭାବେ ତୁମ୍ଭେ ଦୈବତ । ଦେବତା ମାନଙ୍କର ଦେବତା ଅଟ । ବୈଦ୍ୟ ହୃଦ୍ୟ ଅଟ ।

୧-୯ ବଜ୍ରାଧିକ

ବୈଦ୍ୟମାନଙ୍କର ହୃଦୟରେ ନିରନ୍ତରେ ଚିନ୍ତିତ ଅଛ । ଔଷଧ ଶିକ୍ଷାକାଳେ ବୈଦ୍ୟମାନେ ତୁମ୍ଭଙ୍କୁ ଅଚ୍ୟୁତାନନ୍ଦ[1] ଗୋବିନ୍ଦ ବୋଲି ଚିନ୍ତା କରନ୍ତି । ଏଣୁ କରି ତୁମ୍ଭେ ବୈଦ୍ୟ ମାନଙ୍କର ଗୁରୁ ଅଛ । ତୁମ୍ଭଙ୍କୁ ସ୍ମରଣ କରିଲେ ସମସ୍ତ ରୋଗ କ୍ଷୟ ଯାଏ । ପ୍ରାଣୀ ଜୀବନ ପାଏ । ଦ୍ୱନ୍ଦ ବ୍ୟାଧି କ୍ଷୟ ଯାଏ । ସଂସାରେ ରୋଗ ନ ଥାଇ । ଏମନ୍ତ ବୈଦ୍ୟ ଥାଉଁ ମମ ସଖୀ ସ୍ୱରାତୁରା । ସ୍ମର ରୋଗୀଣାଂ କାମଜ୍ୱର ସମ୍ପୃକ୍ତ ସ୍ୱରୂପାମ୍ । ହେ ପ୍ରଭୋ, ମେ ରାଧାର ରୋଗ ତ୍ୱଦଙ୍ଗସଙ୍ଗାମୃତମାତ୍ରସାଧ୍ୟାମ୍ । ତୁମ୍ଭ ଅଙ୍ଗ ସଙ୍ଗରୁ ଜାତ ହୋଇ ଯେ ଅମୃତ ଏତେ ମାତ୍ରକେ ସାଧ୍ୟ ହୋଇବ ବ୍ୟାଧି ତାହାର ସେ ନିଷ୍ଠ ହୋଇ ତୁମ୍ଭର । ତାହାକୁ ତୁମ୍ଭେ କିମ୍ପା ବିମୁକ୍ତ ବାଧାଂ ନ କୁରୁଷେ । କିମ୍ପା ଭଲ ନ କରୁଛ । ଏ କି କଥା । ଏ ହେତୁ ଜାଣିଲେ ତୁମ୍ଭେ ବଜ୍ରହୁଁ ଦାରୁଣ ହୃଦୟ ଅଛ । କିମ୍ପା[2] ବଜ୍ରହୁଁ ତୁମ୍ଭର ଲୋକ ମାନଙ୍କୁ ବାଧା କରି ନ ପାରଇ । ତୁମ୍ଭେ ପୁଣି ସ୍ତ୍ରୀ ବଧଯୁକ୍ତ ଦାରୁଣ ଅଛ । ତୁମ୍ଭଙ୍କୁ କି କହିବା । ୩ ।

**ଶ୍ଲୋକ**[3]

**କନ୍ଦର୍ପଜ୍ୱର ସଂଜ୍ୱରାକୁଳତନୋରାଶ୍ଚର୍ଯ୍ୟମସ୍ୟାଶ୍ଚିରଂ**
**ଚେତଶ୍ଚନ୍ଦନଚନ୍ଦ୍ରମାକମଳିନୀ ଚିନ୍ତାସୁ ସଂକ୍ରାମ୍ୟତି ।**
**କିନ୍ତୁକ୍ଲାନ୍ତିବଶେନ ଶୀତଳତରଂ ତ୍ୱାମେକମେବ ପ୍ରିୟଂ**
**ଧ୍ୟାୟନ୍ତୀ ରହସି[4] ସ୍ଥିତା କଥମପି କ୍ଷୀଣା କ୍ଷଣଂ ପ୍ରାଣିତି ॥ ୪ ॥**

ବ୍ରହ୍ମା କହନ୍ତି—ହେ ପ୍ରଭୁ ପ୍ରଭୋ କେଶବ, କନ୍ଦର୍ପଜ୍ୱରସଂଜ୍ୱରା[5]-କୁଳତନୋ ଅସ୍ୟା ରାଧାୟାଃ କିମାଶ୍ଚର୍ଯ୍ୟମ୍ । ହେ କୃଷ୍ଣ, କାମଜ୍ୱରେ ଜରି ଜରାକୁଳ ହୋଇଛନ୍ତି ଯେ ରାଧାର ତନୁ ତହିଁର କି ଆଶ୍ଚର୍ଯ୍ୟ କହିବା । କାମଜ୍ୱର ସନ୍ତାପ ବ୍ୟାକୁଳ ହୋଇ ଯେ ରାଧା ତାହାର ଚେତଃ ହୃଦୟଂ ନଃ ଚିରଂ ବହୁତରଂ

୧-ଖ. ଅଚ୍ୟୁତାନନ୍ତ
୨-ଖ. ଅଥବା
୩-କ. ଖ. ପୋଥିରେ ନିମ୍ନଲିଖିତ ଶ୍ଲୋକଟି ଥିଲେ ମଧ୍ୟ ତାହାର ଟୀକା ନାହିଁ ।
୪-କ.ଗ. ରହସ୍ଥିତା
୫-କ. ଜ୍ୱରାକୁଳୋ

**ସା ରୋମାଞ୍ଚତି ଶୀତ୍କରୋତି ବିଲପତ୍ୟୁତ୍କମ୍ପତେ ତାମ୍ୟତି**
**ଧ୍ୟାୟତ୍ୟୁଦ୍‌ଭ୍ରମତି ପ୍ରମୀଳତି ପତତ୍ୟୁଦ୍‌ଯାତି ମୂର୍ଚ୍ଛତ୍ୟପି ।**
**ଏତାବତ୍ୟତନୁଜ୍ୱରେ ବରତନୁର୍ଜୀବେନ୍ନ କିଂ ତେ ରସାତ୍**
**ସ୍ୱର୍ବୈଦ୍ୟପ୍ରତିମ ପ୍ରସୀଦସି ଯଦି ତ୍ୟକ୍ତୋଽନ୍ୟଥା ହସ୍ତକଃ ॥**

ଭ୍ରାମ୍ୟନ୍ତି । ଅନେକ ବେଳକୁଁ ଭ୍ରମୁଛନ୍ତି । ଚନ୍ଦନ ଚନ୍ଦ୍ରମା କମଳିନୀ ଚନ୍ଦ୍ରକିରଣ ଚନ୍ଦନ ଲେପନ କମଳିନୀ । କମଳ ଗନ୍ଧ ଶୀତଳ ପଦାର୍ଥ ଏମାନଙ୍କର ଶଙ୍କାରେ ଭ୍ରମି ପାଉଁଛନ୍ତି । କିନ୍ତୁ କି କଥା ଏ । କିନ୍ତୁ କ୍ଲାନ୍ତିବଶେନ ଅତି କାମୋତ୍କର୍ଷବଶେନ ଖିନ୍ନା ହୋଇଁ ଶୀତଳତରଂ ଅତ୍ୟନ୍ତ ଶୀତଳ ଯେ ତୁମ୍ଭର ଦେହ ତାହା ଲୋଡ଼ୁଛନ୍ତି । ଯେଣୁ-କରି ତ୍ୱମେକମେବ ପ୍ରିୟଂ ତୁମ୍ଭେ ତାହାର ଏକାନ୍ତ ପ୍ରିୟ ଅଟ । ତୁମ୍ଭ ବିହୁଁ ତାହାର ଆନ ପ୍ରିୟ ପଦାର୍ଥ ନାହିଁ । କେବଳ ପ୍ରାଣ ବଲ୍ଲଭ ଅଟ । ଧ୍ୟାୟନ୍ତି ରହସି ସ୍ଥିତା ଏକାନ୍ତେ ତ୍ୱାଂ ଧ୍ୟାୟନ୍ତି । ସେ ତୁମ୍ଭଙ୍କୁ ଏକାନ୍ତ ସ୍ଥାନରେ ବସି ଧ୍ୟାନ କରୁଛି । କଥଂ କଥମପି । କଷ୍ଟେ କଷ୍ଟ ହୋଇ ନିମେଷ ବଞ୍ଚୁଛି । ସା କ୍ଷୀଣା କ୍ଷଣଂ ପ୍ରାଣୀତି । ସେ ରାଧା ବଡ଼ କୃଶାଙ୍ଗୀ । ସ୍ୱଭାବେ କ୍ଷୀଣ । ବିକଳ ହୋଇଁଛି । କ୍ଷଣଂ ପ୍ରାଣୀତି । କ୍ଷଣମାତ୍ର ଜୀବନ । ଆଉ ନ ଜୀବ କାଳବଡ଼ି[1] । ହେ ପ୍ରଭୋ ତୁମ୍ଭେ କି ନ ଜାଣ ସେ ରାଧାର କଥା । ୪ ।

**କ୍ଷଣମପି ବିରହଃ ପୁରା ନ ସେହେ**
**ନୟନନିମୀଳନଖିନ୍ନୟା ଯୟା ତେ**
**ଶ୍ୱସିତି କଥମସୌ ରସାଳଶାଖାଂ**
**ଚିରବିରହେଽପି ବିଲୋକ୍ୟ ପୁଷ୍ପିତାଗ୍ରାମ୍ ॥ ୫ ॥**

ହେ ପ୍ରଭୋ, ତୁମ୍ଭେ ନ ଜାଣ । ପୂର୍ବ ପୂର୍ବ କାଳଂହୁ ସେ ରାଧା ତୁମ୍ଭଙ୍କୁ କ୍ଷଣମାତ୍ର ନୟନ ନିମୀଳନ ଚକ୍ଷୁ ପିଛୁଳା ବୁଜିବା ମାତ୍ରକେ ନ ସେହେ ଇତ୍ ବିରହ ତୁମ୍ଭର ବିରହ ସହି ନ ପାରଇ । ଅତ୍ୟନ୍ତ ଖିନ୍ନ ହୋଇଁ ଶରୀର ଧାରଣ ସହି ନ ପାରଇ (ସେ ରାଧା ଏବେ ଶ୍ୱସିତି କଥଂ । ସେ ତୁମ୍ଭଙ୍କୁ ନପାଇ ଏବେଂ ଯେମନ୍ତେ ଶ୍ୱସିତି ଶ୍ୱାସ ଘେଉଛନ୍ତି ତାହା କହିବା ଶୁଣ । ଅସୌ ରାଧା ଚିର ବିରହେଣ ଅନେକ ବିରହେ । ପୁଷ୍ପିତାଗ୍ରାଂ ରସାଳ ଶାଖାଂ ବିଲୋକ୍ୟ ଶ୍ୱସିତି[2] । ) ଏ ଯେ ଆମ୍ରବୃକ୍ଷ-ମାନଙ୍କରେ ବକୁଳ ବୃକ୍ଷ ମାନଙ୍କରେ କରି ଅଗ୍ରଭାଗ ପୁଷ୍ପିତ ହୋଇଛନ୍ତି ଏହାଙ୍କର ଏମନ୍ତ ଯେ ଡାଳମାନ ତହିଁକି ଗୃହିଁକରି ଜୀବନ ବହୁଛନ୍ତି । ଅଧିକ କି କହିବା ।

**ଇତି ଶ୍ରୀଗୀତଗୋବିନ୍ଦମହାକାବ୍ୟେ କବିଶ୍ରୀଜୟଦେବକୃତୌ**
**ବିରହିଣୀବର୍ଣ୍ଣନେ ସ୍ନିଗ୍ଧମାଧବୋ ନାମ ଚତୁର୍ଥଃ ସର୍ଗଃ ।**



୧-କ. କଟୀ ଖ. ଜୀବଟୀ ।
୨-କ.ରେ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।

# ପଞ୍ଚମଃ ସର୍ଗଃ

**ଶ୍ଳୋକ**

**ଅହମିହ ନିବସାମି ଯାହି ରାଧା-**
**ମନୁନୟ ମଦ୍‌ବଚନେନ ଚାନୟେଥାଃ ।**
**ଇତି ମଧୁରିପୁଣା ସଖୀ ନିଯୁକ୍ତା**
**ସ୍ୱୟମିଦମେତ୍ୟ ପୁନର୍ଜଗାଦ ରାଧାମ୍ ॥ ୧ ॥**

ଶ୍ରୀକୃଷ୍ଣ ବୋଲୁଛନ୍ତି—ହେ ଦୂତି ! ଅହମିହ ନିବସାମି । ମୁଁ ଏଠାରେ ବସିଥାଇଁ । ତୁମ୍ଭେ ଯାଅ । ରାଧାଂ ମମ ସଖୀମନୁନୟ । ତୁ ବେଗେ ଯାଇଁ ରାଧାକୁ ବୋଧ କରି କହ । ମଦ୍ ବଚନେନ । ମୋହର ବଚନେ କରି ତାହାକୁ ଏଠାକୁ ଆଣ । ଇତି ମଧୁରିପୁଣା ସଖି ନିଯୁକ୍ତା । ଏମନ୍ତ ଶୁଣି କୃଷ୍ଣର ଆଜ୍ଞା ପ୍ରମାଣେ ସେ ଦୂତି ଯାଇଁ ସ୍ୱୟମିଦମେତ୍ୟ ପୁନର୍ଜଗାଦ ରାଧାମ୍ । ଆପଣାର କାର୍ଯ୍ୟ ଘେନି ଆସି ପୁଣି ରାଧାକୁ ଏମନ୍ତ କହୁଛି[1] । ୧ ।

**ଗୀତ**

(ପଞ୍ଚମବରାଡ଼ୀରାଗେଣ ରୂପକେ)

**ବହତି ମଳୟସମୀରେ ମଦନମୁପନିଧାୟ ।**
**ସ୍ଫୁଟତି କୁସୁମନିକରେ ବିରହିହୃଦୟଦଳନାୟ ।**
**ତବ ବିରହେ ବନମାଳୀ ସଖି ସୀଦତି ॥ ୧ ॥**

ଧ୍ରୁବପଦମିଦମ୍ । [2]

କୃଷ୍ଣର ଆଜ୍ଞା ପ୍ରମାଣେ ଦୂତି ଯାଇଁ ରାଧାଙ୍କୁ କୃଷ୍ଣର ବିରହ ଦୁଃଖାନୁଭବ କଥା କହୁଛି । ହେ ସଖି, ତୁମ୍ଭର ବଚନେ ମୁଁ ବୃନ୍ଦାବନେ ସେ ହରିଙ୍କ ଅନେକ ପ୍ରକାରେ ଲୋଡ଼ି କରି ଏକ କୁଞ୍ଜଲତା ଭିତରେ ଦେଖିଲି । ସେବେକେ ତାହା ଶୁଣ ।

---

୧-କ.ଖ. ୦ମିବ          ୨-ଖ. ବୋଲୁଛି ।

ସଖି, ମଦନ ଉପନିଧାୟୁ କୁହୁା ମଳୟ ସମୀରେ ବହନ୍ତି । ହେ ସଖି ସେଠାରେ ବହୁଛି ମଳୟ ପବନ ମନ୍ଦ ମନ୍ଦ ସୁଶୀତଳ ହୋଇଁ । ମଦନ ସଙ୍ଗେ ଯେହ୍ନ ଅଗ୍ରେ କରି ବହୁଛି । ସେ ପବନର ସଂଯୋଗେ ସ୍ଫୁଟନ୍ତି କୁସୁମ ନିକରେ । ନାନା କୁସୁମମାନେ ଫୁଟୁଛନ୍ତି[1] । ସେ ପୁଷ୍ପ ଗନ୍ଧେ ବେଗ ମିଶାଇଁ ପବନ ବହୁଛି । କି ଉପମା କରିବା । କେବଳ ବିରହୀ ମାନଙ୍କର ହୃଦୟ ଦଳନାୟୁ କାନ୍ତା ବିଚ୍ଛେଦ କ୍ଳାନ୍ତ ପ୍ରାଣୀ ମାନଙ୍କର ହୃଦୟ ଯେ ମନ ତାହାକୁ ଦଳିବା ପାଇଁ ହେ ସଖି ଏଣୁକରି ତବ ବିନେହେ ଭ୍ରମର ବିରହ ବିଚ୍ଛେଦ ଦୁଃଖେ ବନମାଳୀ ସୀଦନ୍ତି । ଦେଖି ଅତ୍ୟନ୍ତ ଚିନ୍ତେ କରି ବଡ଼ ଖିନ୍ନ ହୋଇଛନ୍ତି । ହେ ସଖି ଆଉ କହିବା ଶୁଣ ।

**ଦହତି ଶିଶିରମୟୂଖେ ମରଣମନୁକରୋତି ।**
**ପତତି ମଦନବିଶିଖେ ବିଳପତି ବିକଳୀକରୋତି ॥ ୨ ॥**

ହେ ସଖି, ଶିଶିର ମୟୂଖ ଯେ ଚନ୍ଦ୍ର ତାହାର ମୟୂଖ ଯେ କିରଣ ତାହା ଲଗିବା ମାତ୍ରକେ କୃଷ୍ଣର ମନ ଦେହ ଏ ସବୁ ଦହୁଛି । କି ପ୍ରକାରର କରିବା ମରଣମନୁକରୋତି । ମରଣକୁ ନିକଟେ କରୁଛି । ଯେଉଁ କରି ମରଣ ନିକଟ ହୋଇଛି ତାହା ଶୁଣ । ପତତି ମଦନବିଶିଖେ । ମଦନର ବାଣମାନେ ଆସି ଉପରେ ପଡୁଛି । ଏଣୁ କରି ସେ ବାଣ ମାନଙ୍କର କ୍ଷତ ବ୍ୟଥା ପାଇଁ ବିଳପନ୍ତି । ପରିବେଦନ କରୁଛନ୍ତି । ସେ ବେଦନ ତାହାଙ୍କର ପ୍ରାଣକୁ ବଡ଼ ବିକଳ କରୁଛି[2] ।

**ଧ୍ୱନତି ମଧୁପସମୂହେ ଶ୍ରବଣମପି ଦଧାତି ।**
**ମନସି [3]ବଳିତବିରହେ ନିଶି ନିଶି ରୁଜମୁପଯାତି ॥ ୩ ॥**

ହେ ସଖି, ମଧୁପ ଭ୍ରମର ସମୂହେ ଧ୍ୱନିତ ଶବ୍ଦିତ ସନ୍ତି । ଭ୍ରମରମାନେ କୁସୁମ ମାନଙ୍କରେ ଶବ୍ଦ କରୁଛନ୍ତି । ତାହା ଶୁଣି କୃଷ୍ଣ ସେ ଭ୍ରମର ଧ୍ୱନି ସହି ନ ପାରି ଶ୍ରବଣମପି ଦଧାତି । କର୍ଣ୍ଣାଭ୍ୟାଂ ଆଚ୍ଛାଦୟନ୍ତି । ଶ୍ରବଣେ ଦୁଇ ହସ୍ତ ଦେଇ ଢାଙ୍କୁଛନ୍ତି । ଆଉ ଆଶ୍ଚର୍ଯ୍ୟ ଶୁଣ । ମନସି ବଳିତ[4] ବିରହେ । ମନରେ ବିରହ ବେଗ ଚଞ୍ଚଳ କରାଇଁ ବୁଲୁଛି । ହେ ସଖି ସେ ବେଗ ତାପେ କରି । ନିଶି ନିଶି [5]ରୁଜମୁପଯାତି । ରାତିକୁ ରାତି ବଡ଼ ଖିନ୍ନ ହୋଇଛି କୃଷ୍ଣର ଶରୀର ।

---

୧-ଖ. ଫୁଟିଛନ୍ତି ।
୨-ଖ. କରାଉଁଛି ।
୩-ଖ. ମନସିବଳିତ । କ. ମନସିଜ ଦଳିତ
୪-କ. ମନସିଜ କଳିତ
୫-କ.ଖ. ଭୁଜଂ

**ବସତି ବିପିନବିତାନେ ତ୍ୟଜତି ଲଳିତମପି ଧାମ[1] ।**
**ଲୁଠତି ଧରଣୀଶୟନେ ବହୁ ବିଲପତି ତବ ନାମ ॥୪॥**

ହେ ସଖି, ବନମାଳୀ ବିପିନ ବିତାନେ ଅର୍ଥାତ୍ ଗହନେ ବନେ ବସନ୍ତି । ସେ କୃଷ୍ଣ ଗହନବନେ ଲତା ଭିତରେ ବସିଛନ୍ତି । ସେ ଲତାର ବହୁତ ବିସ୍ତାର ଅଛି । ତହିଁ ବସି । ତ୍ୟଜନ୍ତି ଲଳିତ ଅପି ଧାମ । ଲଳିତ ସୁନ୍ଦର ମନୋହର କମନୀୟ ଚତୁର୍ବର୍ଗ[2] ପୂର୍ଣ୍ଣ ସେ ଶରୀର ସେ ଶରୀରକୁ ତ୍ୟଜନ୍ତି । ଛାଡୁଛନ୍ତି ତୋତେ ନ ପାଇଁ । କି କହିବା ହେ ସଖି, ସେ କୃଷ୍ଣ ବସି ନ ପାରି । ଲୁଠନ୍ତି ଧରଣୀଶୟନେ । ଭୂମିରେ ଶୋଇଁ ପୋଡୁଛି ଦେହ ତାହାଙ୍କର । ଛଟକୁଛନ୍ତି । ବହୁ ବିଳପନ୍ତି ତବ ନାମ । ତୁମ୍ଭର ନାମ ବହୁତ କରି ବିଳାପ କରୁଛନ୍ତି । ୪ ।

**ଭଣତି[3] କବିଜୟଦେବେ ବିରହିବିଳସିତେନ ।**
**ମନସି ରଭସବିଭବେ ହରିରୁଦୟତୁ ସୁକୃତେନ ॥ ୫ ॥**

ଜୟଦେବ କବି ବୋଲୁଛନ୍ତି—ହେ ବୈଷ୍ଣବ ଜନମାନେ ଶୁଣ । ମୋହର ଭଣିଲ ଏ ଗୀତ । କେମନ୍ତେ କରି ଭଣିତ । ବିରହ ବିଳସିତେନ । ବିରହ ହରି ରାଧିକା-ବିଚ୍ଛେଦପ୍ରବନ୍ଧେନ । ଏ କେମନ୍ତ ଅଛି । ମନସି ରଭସ[4]ବିଭବେ । ଏ ଗୀତ ଶୁଣିଲା ଲୋକ ମାନଙ୍କର ମନରେ ରଭସ ବିରସ ବିଭବେ । ହର୍ଷାଧିକର୍ଷ[5] କୈବଲ୍ୟ ପ୍ରାପ୍ତ ହେଉ । ହରିରୁଦୟନ୍ତୁ ସୁକୃତେନ । ଏ ଗୀତ ଶ୍ରବଣ କରିବାର ପୁଣ୍ୟେ କରି ତୁମ୍ଭମାନଙ୍କର ହୃଦୟରେ ହରି ରୁଦୟନ୍ତୁ । ପ୍ରତ୍ୟକ୍ଷ ହେଉ ।

**ଶ୍ଳୋକ**

**ପୂର୍ବଂ ଯତ୍ର ସମଂ ତ୍ୱୟା ରତିପତେରାସାଦିତାଃ ସିଦ୍ଧୟ-**
**ସ୍ତସ୍ମିନ୍ନେବ ନିକୁଞ୍ଜମନ୍ମଥମହାତୀର୍ଥେ ପୁନର୍ମାଧବଃ ।**
**ଧ୍ୟାୟଂସ୍ତ୍ୱାମନିଶଂ ଜପନ୍ନପି ତବୈବାଳାପମନ୍ତ୍ରାବଳୀଂ**
**ଭୂୟସ୍ତ୍ୱତ୍କୁଚକୁମ୍ଭନିର୍ଭରପରିରମ୍ଭାମୃତଂ ବାଞ୍ଛତି ॥ ୨ ॥**

କବି କହୁଛନ୍ତି—ହେ ସଖି, ଶୁଣ । ଯେଉଁଠାରେ କୃଷ୍ଣ ଏବେ ବିରହ ଦୁଃଖେ ଅଛନ୍ତି ପୂର୍ବଂ ପୂର୍ବଦିନେ ଯହିଁ ତୁମ୍ଭ ସଙ୍ଗତେ ରତି ରଙ୍ଗେ କରି । ରତିପତେଃ

---

୧-ଖ. ଲଳିତ ଧାମ
୨-କ. ଚତୁର୍ବର୍ଣ୍ଣ
୩-କ.ଖ. ଭଣିତ
୪-ଖ. ରଭଦ
୫-କ. ହର୍ଷାଦିକର୍ଷା

କାମସ୍ୟ ସିଦ୍ଧୟଃ ଆସାଦିତାଃ । ଚତୁଃଷଷ୍ଟୀ କଳା କାମ ବିକାର କ୍ରୀଡ଼ା ବିକାର-ମାନେ ଯହିଁ ସିଦ୍ଧ ହୋଇଲା । ପୂର୍ଣ୍ଣ ଭୋଗ ହୋଇଅଛନ୍ତି ଏ ଯେନ ସେଠାରେ ନିକୁଞ୍ଜ ଭିତରେ (ମନ୍ମଥ ମହାତୀର୍ଥ ବୋଲାଇଲା ସେ ସ୍ଥାନ । ତସ୍ମିନ୍ନେବ ନିକୁଞ୍ଜେ)[1] ମନ୍ମଥମହାତୀର୍ଥେ ପୁନଃ ମାଧବଃ ସେହିଠାରେ ପୁନରପି ଆସି ମାଧବ ଏମନ୍ତ ଅବସ୍ଥା ପାଇଁ ଲତାରେ ଅଛନ୍ତି ତାହା ଶୁଣ । ଧ୍ୟାୟଂ ସ୍ତ୍ୱାମନିଶମ୍ । ନିରନ୍ତରେ ଦିବାନିଶି ହୋଇଁ ତ୍ୱାଂ ଧ୍ୟାୟନ ତୁମ୍ଭଙ୍କୁ ଧ୍ୟାନ କରି । ଅପି ନିଶ୍ଚୟଂ ତବୈବାଳାପମନ୍ତ୍ରାବଳୀଂ ଜପନ୍ । ସେ କୃଷ୍ଣର ସଙ୍ଗେ ସଙ୍ଗମ କାଳରେ ତୁମ୍ଭେ ଯେମନ୍ତ କଥା ମାନ କହିଛ ସେ ଆଳାପ ମାନଙ୍କୁ ମନ୍ତ୍ରାବଳୀ କରି ଜପ (କରୁଛନ୍ତି । ମନ୍ତ୍ର ସାଧ୍ୟ କରି ପ୍ରାଣୀମାନେ ଯେମନ୍ତ ସିଦ୍ଧି କରନ୍ତି । ଜପ କରୁଥାନ୍ତି[2]) ସେହିମତ କରି କୃଷ୍ଣ ପୁନରପି । ଭୂୟ କୁଚକୁମ୍ଭନିର୍ଭରଂ ପରିରମ୍ଭ ତହିଁରୁ ସୁଖ ନ୍ନି ସେ ଅମୃତ ରସ ହୋଇଲା ତାହା ବାଞ୍ଛା କରୁଛନ୍ତି ।

## ଗୀତ

( ଗୁର୍ଜ୍ଜରୀରାଗେଣ ଗୀୟତେ )

**ରତିସୁଖସାରେ ଗତମଭିସାରେ ମଦନମନୋହର[3]ବେଶମ୍ ।**
**ନ କୁରୁ ନିତମ୍ବିନି ଗମନବିଳମ୍ବନମନୁସର ତଂ ହୃଦୟେଶମ୍ ।**
**ଧୀରସମୀରେ ଯମୁନାତୀରେ ବସତି ବନେ ବନମାଳୀ ॥ ୧ ॥**

( ଧ୍ରୁବପଦମିଦମ୍ )

ଦୂତୀ କହୁଛନ୍ତି ରାଧାକୁ—ହେ ନିତମ୍ବିନି ରାଧେ, ମନୋହର ନିତମ୍ବବତି ଶୁଣ । ଧୀର ସମୀରେ ଯମୁନା ତୀରେ । ମନ୍ଦବାୟୁ ଯୁକ୍ତ ଯମୁନାତଟେ ସଙ୍କେତ-ସ୍ଥାନେ ବନେ ବନମାଳୀ ବସତି । ହେ ସଖି, ସେ ବନରେ ଧୀର ମନ୍ଦଗତି ହୋଇଁ ସମୀର ଯେ ପବନ ମଳୟ ପର୍ବତରୁ ଆସି ସେ ସଙ୍କେତ ସ୍ଥାନରେ ଯମୁନା ତଟରେ ବହୁଛି । ଯହିଁ ବନମାଳୀ ନନ୍ଦସୁତ ବସିଛନ୍ତି । ସେ ବନମାଳୀ କେମନ୍ତ ଅଟନ୍ତି । ରତି ସୁଖ ସାରେ । ଅଭିସାରେ ଗତଂ ରତିକ୍ରୀଡ଼ା ମୁଖ୍ୟ ସ୍ଥାନେ ଅଭିସାରେ ଯମୁନା ତଟେ ସ୍ଥିତଂ ରତିକ୍ରୀଡ଼ା ଲୋଭିତଂ[4] ତୁମ୍ଭର ସଙ୍ଗ କ୍ରୀଡ଼ାକୁ ଲୋଭି ହୋଇ ସେ ସ୍ଥାନକୁ ଯାଇଅଛନ୍ତି । ପୁନଃ କିଂ ଭୂତଂ । ପୁଣି ସେ କୃଷ୍ଣ କେମନ୍ତ ଅଟନ୍ତି । ମଦନ

---

୧-କ.ରେ ନାହିଁ ।
୨-କ.ରେ ନାହିଁ ।
୩ କ.ଖ ମନୋରଥ
୪ ଖ. ଲୋଭନଂ

ମନୋହର ବେଶଂ । କାମ ହେତୁ ରମଣୀୟାଳଂକାର ଯୁକ୍ତଂ କାମଭୋଗ କରିବାରେ ହେତୁ ଯୋଗ୍ୟ ଯେତେ ଅଳଂକାର ବେଷ୍ଟନ କରି ବେଶ ହୋଇଁ ମଦନ ଦେବତାର ବେଶକୁ ଦକ୍ଷିଛନ୍ତି ସ୍ଥିରବେଶେ କରି । ହେ ନିତମ୍ବିନି ତ୍ୱଂ କୃଷ୍ଣଂ ଗନ୍ତୁଂ ବିଳମ୍ବଂ ନ କୁରୁ । କୃଷ୍ଣ ତହିଁକି ଯିବାକୁ ବିଳମ୍ବ ନ କର । ବେଗ ତ୍ୱଂ ଅନୁସର । ତାହାଙ୍କ ତହିଁ ବେଗେ ଯାଅ [1] । ସେ ପୁଣି କେମନ୍ତ ଅଟନ୍ତି । ହୃଦୟେଶଂ । ହୃଦୟେ ଯେ ମନ ତାହାର ଉପରକୁ ଈଶ୍ୱର ଅଟନ୍ତି । ସମସ୍ତ ବାଞ୍ଛା ଫଳଦାତା ଅଟନ୍ତି ।

**ନାମସମେତଂ କୃତସଂକେତଂ ବାଦୟତେ ମୃଦୁବେଣୁମ୍ ।**
**ବହୁ ମନୁତେ ନନୁ ତେ ତନୁସଙ୍ଗତପବନ[2]ଚଳିତମପି ରେଣୁମ୍ ।। ୨ ।।**

ହେ ସଖି, ସେ ହରି ତୁମ୍ଭର ନାମ ସଙ୍କେତ କରି ମୃଦୁ ବେଣୁଂ ବାଦୟତେ । ମନୋହର ବେଣୁ ବଜାଉ ଅଛନ୍ତି । ହେ ସଖି, ମୁଁ ଏମନ୍ତ ପ୍ରାୟେ ମଣଇଁ ! ତେ ତନୁ ତୋହର ଦେହ ସଙ୍ଗତ ଲାଗି ଯେ ପବନ ରେଣୁ ଚନ୍ଦନ ଧୂଳି ଘେନି ଚଳୁଛି ସେ ଧୂଳି ମୋତେ ଲାଗିବ କି । ତେବେ ଜୀବନ ପାଇବି । ଏମନ୍ତ ବଡ଼ଆଶା କରିଛନ୍ତି ।

**ପତତି[3] ପତତ୍ରେ ବିଚଳିତପତ୍ରେ ଶଙ୍କିତଭବଦୁପଯାନମ୍ ।**
**ରଚୟତି ଶୟନଂ ସଚକିତନୟନଂ ପଶ୍ୟତି ତବ ପନ୍ଥାନମ୍ ।। ୩ ।।**

ହେ ସଖି, ପତତି ପତତ୍ରେ ବିଚଳିତ ପତ୍ରେ । ପତତ୍ରି ଯେ ପକ୍ଷୀ ସେ ପତତି ପଡ଼େ ସନ୍ତି । ସଙ୍କେତ ସ୍ଥାନରେ ଯେ କୃଷ୍ଣ ଅଛନ୍ତି ତହିଁ ଉପର ଲତାରେ ଆସି ପକ୍ଷୀ ଗୋଟାକେତେ ବସିବା ମାତ୍ରକେ ସେ ଲତାରୁ ପତ୍ର ଗୋଟାଏ ତଳେ ପଡ଼ିଲା । ତଳେ ପଡ଼ନ୍ତେ ଯେତେ ଶୁଖିଲା ପତ୍ରମାନେ ତାହାଙ୍କ ଉପରେ ପଡ଼ି ବିଚଳିତ ହୋଇଁ ପବନରେ କରି ଚଳିଗଲାରେ ସେ କୃଷ୍ଣ ଭବଦୁପଯାନଂ ତୁମ୍ଭେ ସେଠାକୁ ଆଇଲ ପ୍ରାୟେ ମଣି ବେଗ ବେଗ କରି ଶୟନଂ ରଚୟତି । ଶୟନ ଯେ କୋମଳ ପତ୍ର ଶଯ୍ୟା ତାହାକୁ ଭଲ କରି ବିଛାଉଛନ୍ତି । ପୁଣି ସଚକିତ ନୟନଂ ଚଞ୍ଚଳ ନୟନ ହୋଇ ପନ୍ଥାନଂ ତବାଗମନ ମାର୍ଗଂ ପଶ୍ୟନ୍ତି । ତୁମ୍ଭେ ଆସିବାର ପଥକୁ ଚାହିଁଛନ୍ତି । ହେ ରାଧେ ତୁମ୍ଭେ ବିଳମ୍ବ ନ କର ।

---

୧. କ. ଧାଅ
୨-କ.ଖ. ଉପୋବନ
୩-କ.ଖ. ପତନ୍ତ

**ମୁଖରମଧୀରଂ ତ୍ୟଜ ମଞ୍ଜୀରଂ ରିପୁମିବ କେଳିଷୁ ଲୋଳମ୍ ।**
**ଚଳ ସଖି କୁଞ୍ଜଂ ସତିମିରପୁଞ୍ଜଂ ଶୀଳୟ ନୀଳନିଚୋଳମ୍ । ।୪ ।।**

ହେ ରାଧେ ! ତ୍ୱଂ ଇଦାନୀଂ ମଞ୍ଜୀରଂ ତ୍ୟଜ । ମଞ୍ଜୀର ଯେ ନୂପୁର ଏହା ତ୍ୟାଗ କର । ଏ ମଞ୍ଜୀର କେମନ୍ତ ଅଟଇ । ମୁଖରଂ ବଡ଼ ଶବ୍ଦ କରଇ । ଅଧୀରଂ ବଡ଼ ଚଞ୍ଚଳଂ । ସ୍ଥିର କରି ନୋହଇ । ପୁଣି ସେ କେମନ୍ତ ଅଟଇ । କେଳିଷୁ ଲୋଳଂ । କେଳି କ୍ରୀଡ଼ା ମାନଙ୍କରେ ବଡ଼ ଚଞ୍ଚଳ ଅଟଇ । ଏଣୁ କରି ମୁଁ ଏହାକୁ ଶତ୍ରୁ ପ୍ରାୟେ ମଣଇଁ । ତୁମ୍ଭେ ଏହାକୁ ବେଗେ ଫେଡ଼ି ପକାଅ । ହେ ସଖି କୁଞ୍ଜ ଭବନକୁ ଚାଲ ଯିବା । ସେ କୁଞ୍ଜ କେମନ୍ତ ଅଟଇ । ସତିମିରପୁଞ୍ଜଂ । ତିମିର ପୁଞ୍ଜେନ ସହ ବର୍ତ୍ତମାନଂ । ବଡ଼ ଅନ୍ଧକାର ଲତା ଗୃହ ଅଟଇ । ହେ ସଖି, ତୁମ୍ଭେ ଏବେ ଏମନ୍ତ କର । ନୀଳନିଚୋଳଂ ଶୀଳୟ । ନୀଳ ବସ୍ତ୍ର ବେଢ଼ି ହୋଇ ଚାଲ । ତେବେ ଯିବାର ବାଟେ କେହି ଜାଣି ନ ପାରିବେ ।

**ଉରସି ମୁରାରେରୁପହିତହାରେ ଘନ ଇବ ତରଳବଲାକେ ।**
**ତଡ଼ିଦିବ ପୀତେ ରତିବିପରୀତେ ରାଜସି ସୁକୃତବିପାକେ ।। ୫ ।।**

ଦୂତୀ ବୋଲୁଛନ୍ତି—ହେ ପୀତେ, ପୀତ ଗୌରବ ରାଧେ ତ୍ୱଂ ମୁରାରେ କୃଷ୍ଣସ୍ୟ ଉରସି ଶୋଭସେ । ତୁମ୍ଭେ କୃଷ୍ଣର ହୃଦୟରେ ରତି କାଳେ ବଡ଼ ସୁନ୍ଦର ଶୋଭା ପାଇବ । ସେ କୃଷ୍ଣର ଉର କେମନ୍ତ ଅଟଇ । ଉପହିତହାରେ ମୁକ୍ତା ହାରେ କରି ବଡ଼ ଶୋଭା ଦିଶୁଛି । ତହିଁକି କି ଉପମା ଦେବା । ଘନ ଇବ ତରଳ-ବଳାକେ । ତରଳ ବଳାକ ଯେ ବକ ପଂକ୍ତି ସେ ବକମାନେ ଉଡ଼ୁଥିଲେ ଯେମନ୍ତ ଗଗନ ଦିଶଇ ସେହିମନ୍ତ କୃଷ୍ଣର ହୃଦୟ ଦିଶୁଛି । ଏମନ୍ତ ଗୋବିନ୍ଦର ହୃଦୟରେ ତୁମ୍ଭେ ଶୋଭା ପାଇବ କାହାର ପ୍ରାୟେ । ଜଳଧରେ ତଡ଼ିଦିବ । ଜଳମେଘେ ବିଜୁଳି ଯେମନ୍ତ । ଯେଉଁବେଳେ (ପ୍ରାପ୍ତ ବିପରୀତ ତାହା ଶୁଣ । ରତି ବିପରୀତେ ଯେତେବେଳେ)[1] କୃଷ୍ଣକୁ ତଳେ କରି ତୁମ୍ଭେ ତାହାଙ୍କ ଉପରେ ଶୋଇଥିବ ତବ ସୁକୃତ ବିପାକେ ତୁମ୍ଭେ ଯେବେ ପୂର୍ବ ଜନ୍ମ ଏତେ ପୁଣ୍ୟ କରିଛ ତହିଁର ବିପାକ ପ୍ରାୟେ ଫଳ ପ୍ରାପ୍ତି ଯେବେ ହୋଇଥାଏ ତେବେ ଏମନ୍ତ ହୋଇବନ୍ତି । ଅଳ୍ପ ପୁଣ୍ୟ କଲେ ପ୍ରାଣୀ କାହିଁ ନରଙ୍କି ପାଇବ । ସେ କୃଷ୍ଣ ପୁଣି ତୁମ୍ଭଙ୍କ ବଡ଼ ଆଶା କରି ଯେମନ୍ତ ହୋଇଛନ୍ତି ତାହା ଶୁଣ ।

---

୧-କ.ରେ ନାହିଁ ।

**ବିଗଳିତବସନଂ ପରିହୃତରସନଂ ଘଟୟ ଜଘନମପିଧାନମ୍ ।**
**କିଶଲୟଶୟନେ ପଙ୍କଜନୟନେ ନିଧିମିବ ହର୍ଷନିଧାନମ୍ ।। ୬ ।।**

ହେ ସଖି, ସେ କୃଷ୍ଣର ଅବସ୍ଥା ଶୁଣ । ବିଗଳିତ ବସନଂ । ଫିଟି ପଡ଼ୁଛି ପରିଧାନ ବସ୍ତ୍ର । ପରିହୃତ ରସନଂ ରସନା ଯେ କଟି ମେଖଳା ସେହି ପରିହୃତ ଉଦ୍ଧ୍ୱାସ ହୋଇଛି । ତୁମ୍ଭେ ଏବେ ଯାଇଁ ଜଘନମପିଧାନଂ ଘଟୟ । ସେ କୃଷ୍ଣର ଜଘନକୁ ଭଲ କରି ବସ୍ତ୍ର ଘଟନା କର । କଟି ମେଖଳାହି ସୁନ୍ଦର କରି ଦିଅ । ସେ କୃଷ୍ଣ ଯହିଁ ଅଛନ୍ତି ତାହା ଶୁଣ । କିଶଳୟଶୟନେ କୋମଳ ପତ୍ର ଶଯ୍ୟାରେ । ସେ କୃଷ୍ଣ ହାଦ ପଙ୍କଜ ନୟନ ଅଟନ୍ତି । ସେଠାକୁ ଗଲେ କୃଷ୍ଣ ତୁମ୍ଭର ସନ୍ନିଧାନ ନିକଟ ହୋଇବେ । ତାହାଙ୍କୁ ତୁମ୍ଭେ ନିଧିମିବ ହର । ନିଧି ପାଇଲି ପ୍ରାୟେ କରି ହର । ଦରିଦ୍ର ଯେମନ୍ତ ନିଧିପାଇଁ ଯନ୍ତ୍ରକରି ସମ୍ଭାଳଇ ତୁମ୍ଭେ ସେହିମନ୍ତ କରି କୃଷ୍ଣଙ୍କୁ ସମ୍ଭାଳ । ଅଥବା ହରଷ ନିଧାନ ସମସ୍ତ ହର୍ଷ ମାନଙ୍କର ନିଧି ଅଟନ୍ତି ସେ କୃଷ୍ଣ ।

**ହରିରଭିମାନୀ ରଜନିରିଦାନୀମିୟମପି ଯାତି ବିରାମମ୍ ।**
**କୁରୁ ମମ ବଚନଂ ସତ୍ୱରରଚନଂ ପୂରୟ ମଧୁରିପୁକାମମ୍ ।। ୭ ।।**

ହେ ସଖି, ସେ ହରିର ମହିମା ଶୁଣ । ସେ ଅଭିମାନୀ ତାହାଙ୍କୁ ପ୍ରମାଣ କରି କେହି ନ ପାରନ୍ତି । କେତେ ପ୍ରମାଣ ତାହା କେ ଜାଣିବ । ତାହାଙ୍କର ବିଷୟେ ତୁମ୍ଭେ କିମ୍ପା ମାନ କର । କାହିଁ ତାହାଙ୍କର ପ୍ରମାଣ ପାଇବ । ଏ ରଜନୀରିଦାନୀଂ । ଏବେ ରଜନୀ ହୋଇଛି । ତୁମ୍ଭର ଏ ଜନ୍ମ ଅଜ୍ଞାନ ନିଦ୍ରା ଏହାକୁ ରାତି ବୋଲି । ଇୟମପି ଯାତି ବିରାମଂ । ଏ ରାତିହିଁ ପାଇବଟି । ଏ ଜନ୍ମ ବେଗେ ଯିବଟି । ହେ ସଖି, ଏ ଦେହ ରାତି ଥାଉଁ ଥାଉଁ ତୁମ୍ଭେ ହରିଙ୍କି ଭଜ । ରାତି ପାହିଲେ ନାହିଁଟି ସଙ୍ଗ ତାହାର । କୁରୁ ମମ ବଚନଂ । ମୋହୋର ବଚନ କର ସତ୍ୱର ରଚନଂ । ବେଗେ ଯିବାକୁ ଉଦ୍ୟମ କର । ପୂରୟ ମଧୁରିପୁକାମଂ । ମଧୁରିପୁ ସେ କୃଷ୍ଣ ତାହାଙ୍କର ତୁମ୍ଭର ବିଷୟେ ଯେ ବାଞ୍ଛା ତାହା ପୂରୟ ପୂର୍ଣ୍ଣ କରି ମନକୁ ସନ୍ତୋଷ କର ।

**ଶ୍ରୀଜୟଦେବେ କୃତହରିସେବେ[1] ଭଣତି ପରମରମଣୀୟମ୍ ।**
**ପ୍ରମୁଦିତହୃଦୟଂ ହରିମତିସଦୟଂ ନମତ ସୁକୃତକମନୀୟମ୍ ।। ୮ ।।**

ଜୟଦେବର କୃତ ଚରିତ । ଜୟଦେବର କଲା ଚରିତ୍ର । ସେ ଜୟଦେବ କବି କେମନ୍ତ ଅଟେ । କୃତ ହରି ସେବେ । କଲା ହରିର ସେବାକୁ ଯେ

୧-କ. ଧୃତସେବେ

କେଣେ କରି ଭଣନ୍ତି ରମଣୀୟଂ । ଏ ଯେ ପରମ ଉତ୍କୃଷ୍ଟ ରମଣୀୟ ମନୋହର ଗୀତ ଭଣତେ କରି । ପୁନଃ କଂ ଭୂତଂ । ପୁଣି ଏ ଗୀତ କେମନ୍ତ ଅଟଇ । ପରମ ରମଣୀୟଂ । ପରମାନନ୍ଦ ଯୁକ୍ତ ଅତି ସୁନ୍ଦରଂ । ଏହାକୁ ତୁମ୍ଭେମାନେ ପ୍ରମୁଦିତ ହୃଦୟଂ । ଆନନ୍ଦଚିତ୍ତ ହୋଇଁ ଅତି ସଦୟା ସର୍ବତ ବର୍ତ୍ତମାନଂ ହରିଂ ନମତ । ନମସ୍କାର କର । ସେ ହରି କେମନ୍ତ ଅଟଇ । ସୁକୃତ କମନୀୟଂ । ଜନ୍ମାନ୍ତରାର୍ଜିତ ପୁଣ୍ୟ ଲଭ୍ୟଂ । ସେ ହରିଙ୍କି ଅନେକ ଜନ୍ମାର୍ଜିତ ପୁଣ୍ୟେ ସେ ପାଇ । ଇଦାନୀଂ ଦୂତୀ ରାଧାୟାଃ ଶ୍ରୀହରିଗମନାର୍ଥଂ ଶ୍ଳୋକଚତୁଷ୍ଟୟମାହ ।

## ଶ୍ଳୋକ

ବିକିରତି ମୁହୁଃ ଶ୍ୱାସାନାଶାଃ ପୁରୋ ମୁହୁରୀକ୍ଷତେ
ପ୍ରବିଶତି ମୁହୁଃ କୁଞ୍ଜଂ ଗୁଞ୍ଜନ୍ମୁହୁର୍ବହୁ ତାମ୍ୟତି ।
ରଚୟତି ମୁହୁଃ ଶଯ୍ୟାଂ ପର୍ଯ୍ୟାକୁଳଂ ମୁହୁରୀକ୍ଷତେ
ମଦନକଦନକ୍ଳାନ୍ତଃ କାନ୍ତେ ! ପ୍ରିୟସ୍ତବ ବର୍ତ୍ତତେ ॥ ୩ ॥

ଦୂତୀ କହୁଛନ୍ତି—ହେ ରାଧେ, ସେ କୃଷ୍ଣ ତୁମ୍ଭଙ୍କୁ ନ ପାଇଁ ଯେମନ୍ତ କରି କ୍ଷଣ ବଞ୍ଚାଉଛନ୍ତି ତାହା କହିବା ଶୁଣ । ହେ କାନ୍ତେ, ହେ ସୁନ୍ଦରୀ ତବ ପ୍ରିୟ ବଲ୍ଲଭ ଯେ କୃଷ୍ଣ ସେ ମଦନ ବାଣ ଘାତେ କରି କ୍ଷୀଣବର୍ତ୍ତ[1] କ୍ଳାନ୍ତ ହୋଇଁ ଦିନ ବଞ୍ଚାଇବା ପାଇଁ ଯେମନ୍ତ ଉପାୟ କରିଛନ୍ତି ତାହା ଶୁଣ । ମୁହୁର୍ବାରଂ ବାରଂ ଶ୍ୱାସାନ୍ ବିକିରନ୍ତି । ଅନ୍ତରୀୟ କାମାର୍ତ୍ତିଯୁକ୍ତ ନିଃଶ୍ୱାସ ମାନଙ୍କୁ ଛାଡୁଛନ୍ତି । ଆଶାଂପୁରୋ ମୁହୁରୀକ୍ଷତେ । ପୁରଃ ଅଗ୍ରେ ମୁହୁଃରପି ଆଶାଂ ଦିଶଂ ଈକ୍ଷତେ । ଅଗ୍ରେ ଦୃଷ୍ଟେ ପାର୍ଶ୍ୱେ ଦ୍ୱୟେ ଦିଗମାନଙ୍କୁ ପୁନଃପୁନଃ କରି ଚାହୁଁଛନ୍ତି । ଯେ ଦିଗେ ରାଧା ଆସଇ ବୋଲି । ପୁନଃ ପ୍ରବିଶନ୍ତି ମୁହୁଃ କୁଞ୍ଜଂ । ପୁନରପି କୁଞ୍ଜଲତା ଭିତରେ ପଶୁଛନ୍ତି । ପଶି କରି ଗୁଞ୍ଜନ୍ମୁହୁର୍ବହୁ ତାମ୍ୟନ୍ତି । ବହୁତ ପ୍ରକାର କରି ପ୍ରଳାପ କରୁଛନ୍ତି । ତୁମ୍ଭଙ୍କୁ ନ ପାଇଁ । ରଚୟନ୍ତି ମୁହୁଃ ଶଯ୍ୟାଂ । ପୁନଃ ପୁନଃ ପତ୍ର ଶଯ୍ୟାକୁ ଭଲକରି ରଚନା କରୁଛନ୍ତି । ବିହ୍ୱଳ କରି ବସୁଅଛନ୍ତି । ପର୍ଯ୍ୟାକୁଳଂ ମୁହୁରୀକ୍ଷତେ । ପୁନଃ ପୁନଃ କରି ଚାରି ଦିଗକୁ ଚାହୁଁଛନ୍ତି । ଏମନ୍ତ ଦୁଃଖ ତାହାଙ୍କର ତୁମ୍ଭେ ନ ଜାଣ । ଆଉ କି କହିବା । ଏବେ ଭଲ ହୋଇଲା । ତୁମ୍ଭ ଦୁହିଁଙ୍କର ସୁଖ କହିବା । ୩ ।

[1]—କ୍ଷ. ବର୍ତ୍ତ

**ତ୍ୱଦ୍‌ବାଷ୍ପୈର୍ୟନ ସମଂ ସମଗ୍ରମଧୁନା ତିଗ୍ମାଂଶୁରସ୍ତଂ ଗତୋ**
**ଗୋବିନ୍ଦସ୍ୟ ମନୋରଥେନ ଚ ସମଂ ପ୍ରାପ୍ତଂ ତମଃ ସାନ୍ଦ୍ରତାମ୍ ।**
**କୋକାନାଂ କରୁଣସ୍ୱନେନ ସଦୃଶୀ ଦୀର୍ଘା ମଦଭ୍ୟର୍ଥନା**
**ତନ୍ମୁଗ୍‌ଧେ ବିଫଳଂ ବିଳମ୍ବନମସୌ ରମ୍ୟୋଽଭିସାରକ୍ଷଣଃ ॥ ୪ ॥**

ଦୂତୀ କହୁଛି—ହେ ସଖି, ତୁମ୍ଭର ବାଷ୍ପୈର୍ୟନ ସମଂ । ନୟନ ଲୋତକ ଜଳ ତାହା ଯେଣ ସମଗ୍ରଂ ସବୁ ଯେଣ ଅଧୁନା ଏବେ ତିଗ୍ମାଂଶୁରସ୍ତଂ ଗତଃ । ତିଗ୍ମାଂଶୁ ଯେ ସୂର୍ଯ୍ୟ ସେ ଅସ୍ତାଚଳକୁ ଗଲେ । ଆଉ ହାଦେ ଗୋବିନ୍ଦସ୍ୟ ମନୋରଥେନ ଚ ସମଂ ପ୍ରାପ୍ତଂ ତମଃ ସାନ୍ଦ୍ରତାଂ । ଗୋବିନ୍ଦର ମନୋବାଞ୍ଛା ସଙ୍ଗେ ଅନ୍ଧକାର ବଡ଼ ନିବିଡ଼ ଗହଳ ହୋଇଁ ପ୍ରକାଶ ହୋଇଲା । ଦେଖ ଅନ୍ଧକାରକୁ । ହେ ସଖି ତୁମ୍ଭର ଶୋକ ଦୁଃଖ ଯେଣ ସୂର୍ଯ୍ୟ ଗଲା । ଶ୍ରୀକୃଷ୍ଣର ମନ ବାଞ୍ଛା ଯେଣ ଅନ୍ଧକାର ଉଦୟ ହୋଇଲା । ତୁମ୍ଭ ଦୁହିଁଙ୍କର କଥା ଭଲ ହୋଇଲା । କିନ୍ତୁ ମୋହର ଅଭ୍ୟର୍ଥନା ଯେ ସେ କୋକାନାଂ କରୁଣସ୍ୱନେନ ସଦୃଶୀ ଦୀର୍ଘା । ହେ ମୁଗ୍‌ଧେ ମୂଢ଼ ବୁଦ୍ଧେ ତୁମ୍ଭର ଦୁହେଁ ପ୍ରମୁଦିତ ହୃଦୟ ହୋଇଁ । ଅବଶ୍ୟ ପୁଣି ମୋହର ଗୃହକୁ ଆଇବା ଦୀର୍ଘ ହୋଇଲା ! ତାହାର ଦୃଷ୍ଟାନ୍ତ ହୋଇଁ ଶୁଣ କହିବା । କୋକ ଯେ ଚକ୍ରବାକ ପକ୍ଷୀ ସେ ଯେମନ୍ତ ରାତ୍ର ମଧ୍ୟେ ସ୍ତ୍ରୀ ପୁରୁଷ ଦୁଇ ଆଡ଼େ ଥାଆନ୍ତି ପୁଣି କେହି କାହାକୁ ଛୁଇଁ ନ ପାରନ୍ତି ଶ୍ରୀ ରାମଚନ୍ଦ୍ରଙ୍କ ଶାପ ପ୍ରମାଣେ । ସେ ଚକ୍ରବାକ ଯେମନ୍ତ ମଦନେ ପୀଡ଼ିତ ହୋଇଁ ଚକ୍ରବାକୀକୁ ଗୃହକୁ କହୁଁ କହୁଁ ରାତ୍ର ପାହାଇ । ସେହିମତ ହୋଇ ମୋହର ପ୍ରାର୍ଥନା ହୋଇଲା । ଏଣୁ କରି ହେ ସୁନ୍ଦରୀ ଅସୌ ବିଳମ୍ବ ବିଫଳ ତବ । ତୁମ୍ଭେ ବଡ଼ ମୂଢ଼ ଅଟ । କାର୍ଯ୍ୟ ନ ବୁଝ । ଏ ବିଳମ୍ବ ବିଫଳକି । ରମ୍ୟୋଭିସାରକ୍ଷଣଃ । ଦେଖ କୃଷ୍ଣର ତୁହିଁଙ୍କ ଅଭିସାରିକା ହୋଇ ମିଳିବାର ଏ କ୍ଷଣ ବଡ଼ ରମ୍ୟ ହୋଇଛି । ଏମନ୍ତ ସମୟ ନ ପାଇବଟି । ଏ ହାଦେ ପୂର୍ବ ଦମ୍ପତ୍ତି ବଡ଼ମାନ ଅନ୍ଧକାର ପ୍ରାପ୍ତେ ହୋଇଛି । ସେ ଅନ୍ଧକାରର ମହିମା କହିବା ଶୁଣ । ୪ ।

**ଆଶ୍ଳେଷାଦନୁ ଚୁମ୍ବନାଦନୁ ନଖୋଲ୍ଲେଖାଦନୁ ସ୍ୱାନ୍ତଜ—**
**ପ୍ରୋଦ୍‌ବୋଧାଦନୁ ସଂଭ୍ରମାଦନୁ ରତାରମ୍ଭାଦନୁ ପ୍ରୀତୟୋଃ ।**
**ଅନ୍ୟାର୍ଥଂ ଗତୟୋର୍ଭ୍ରମାନ୍ମିଳିତୟୋଃ ସଂଭାଷଣୈର୍ଜାନତୋ--**
**ର୍ଦମ୍ପତ୍ୟୋରିହ କୋ ନ କୋ ନ ତମସି ବ୍ରୀଡାବିମିଶ୍ରୋ ରସଃ ॥ ୫ ॥**

ହେ ସଖି, ପୂର୍ବେ ଦମ୍ପତ୍ତି ଦୁଇ ସ୍ତ୍ରୀ ପୁରୁଷ ତାହାଙ୍କର କଥା ଶୁଣ । ଏକ ପୁରୁଷ ଏକ ସ୍ତ୍ରୀ କୁ ସଙ୍କେତ କଲା ଯେ ସ୍ଥାନରେ ରମିବାକୁ¹ ସେହି ସ୍ଥାନକୁ ସଙ୍କେତ

୧-ଖ ରମିବା ପାଇଁ

କଲେ ଅନ୍ୟ ଏକ ପୁରୁଷର ସ୍ତ୍ରୀ । ସେ ସ୍ତ୍ରୀର ସ୍ୱାମୀ ଏମନ୍ତ ସନ୍ଦେହ ବେଗେ କରି ଏ ଯେ ପୁରୁଷ ସେ ସଙ୍କେତ ସ୍ଥାନଠାକୁ ଗଲା । କାମ ପୀଡ଼ିତ ହୋଇଁ ତାହାର ଭାର୍ଯ୍ୟା ଅନ୍ୟ ପୁରୁଷ ଆଶାରେ ଆପଣାର ସ୍ୱାମୀ ଯେ ଆଗେ ଯାଇଁ ଅଛି ତାହାର ତହିଁ ମିଳିଲା । ପର ପୁରୁଷ ପ୍ରାୟେ ମଣି ଅନ୍ଧକାରେ ଜାଣି ନ ପାରି ଦୁହେଁ କାମ ପୀଡ଼ିତ ହୋଇଁ କ୍ରୀଡ଼ା କଲେ । ଯେମନ୍ତ ରତିମାନେ ତାହାଙ୍କର ଅନ୍ୟ ଅନ୍ୟରେ ହୋଇଲା ତାହା ଶୁଣ । ଆଶ୍ଳେଷ୍ୟତ । ଆଗେ ନିବିଡ଼ କରି ଆଲିଙ୍ଗନ କଲେ । ତଦନୁ ଚୁମ୍ବନାତ୍ ତେବେ ଚୁମ୍ବନ ଦେଲେ । ତଦନୁ ନଖୋଲ୍ଲେଖାତ୍ । ତଦନୁ ତେବେ ନଖ କ୍ଷତ କଲେ । ତଦନୁ ସ୍ୱାନ୍ତଜ ପ୍ରୋଦ୍‌ବୋଧାତ୍ ଅତ୍ୟନ୍ତ କାମ ଖେଦାତ୍ ଅତ୍ୟନ୍ତ କାମଖେଦେ କରି ଅଜ୍ଞାନ ହୋଇଛନ୍ତି । ଅନୁ ସଂଭ୍ରମାତ୍ । ଅତ୍ୟନ୍ତ କାମ ଖେଦେ କରି ଭ୍ରମ ହେଉଛନ୍ତି । ତଦନୁରତାତ୍ କ୍ରୀଡ଼ାନନ୍ତରମ୍ମୈଥୁନକରଣାରମ୍ଭାତ୍ । କାର୍ଯ୍ୟ ଜାତାନନ୍ତରଂ । ପ୍ରୀତଯୋଃ ଅତ୍ୟନ୍ତ ପ୍ରୀତ ହୋଇଁ । ସେ ଦୁହେଁ ପୁଣି କେମନ୍ତ ଅଟନ୍ତି । ଅନ୍ୟାର୍ଥଂ ଗତୟୋ ଆନକୁ ରମିବା ପାଇଁ ଯାଇଁ ଅଛନ୍ତି । ପୁଣି ଭ୍ରମାନ୍ଧିତଯୋଃ । ଅନ୍ଧକାର ଭ୍ରମେ କରି ନ ଜାଣି ସେଠାରେ ମିଳି ଏତେ କର୍ମ କଲେ । ପଶ୍ଚାତ୍ ସମ୍ଭାଷଣୈର୍ଜ୍ଞାନତୋ । ପଛେ କଥା ସମ୍ଭାଷଣ କରି ଜାଣିଲେ । ଆପଣାର ସ୍ତ୍ରୀ ସ୍ୱାମୀ ବୋଲି । ଜାଣିଲାରେ ସେ ଲଜ୍ୟାମିଶ୍ରିତ ରସ ହୋଇଲା ତାହା ଶୁଣ । ଦେଖ ଇହ ତମସି । ଅନ୍ଧକାରେ କୋ ନ କୋ ନ କ୍ରୀଡ଼ ମିଶ୍ରିତ ନୋହିଲା । ହେ ସଖି, ଏଡ଼େ ଅନ୍ଧକାର ଆଜ ହୋଇବ । ତୁମ୍ଭେ ହରିଙ୍କି ରମ ଯା । ଯେମନ୍ତ ହୋଇଁ ତୁମ୍ଭେ ଯିବ ତାହା ଶୁଣ । ୫ ।

**ସଭୟ୍ୱଚକିତଂ ବିନସ୍ୟନ୍ତୀଂ ଦୃଶଂ ତିମିରେ ପଥି**
**ପ୍ରତିତରୁ ମୁହୁଃ ସ୍ଥିତ୍ୱା ମନ୍ଦଂ ପଦାନି ବିତନ୍ୱତୀମ୍ ।**
**କଥମପି ରହଃ ପ୍ରାପ୍ତାମଙ୍ଗୈରନଙ୍ଗତରଙ୍ଗିଭିଃ**
**ସୁମୁଖି ସୁଭଗଃ ପଶ୍ୟନ୍ ସ ତ୍ୱାମୁପୈତି କୃତାର୍ଥତାମ୍ ।। ୬ ।।**

ଦୂତୀ କହୁଛନ୍ତି—ହେ ରାଧେ ! ତୁମ୍ଭେ ସଭୟ ଭୟ ପାଇଁ ଚକିତ ହୋଇଁ ବିନସ୍ୟନ୍ତି ଦୃଶଂ ତିମିରେ । ତୁମ୍ଭେ ହାଦେ ବେଗ ବେଗ ହୋଇଁ ତିମିରେ ପଥି ଅନ୍ଧକାର ବାଟେ ଯିବାରେ ପ୍ରତିତରୁ ମୁହୁଃ ସ୍ଥିତ୍ୱା ପ୍ରତି ବୃକ୍ଷମୂଳେ କ୍ଷଣେ କ୍ଷଣେ ରହିଁ କୃଷ୍ଣଙ୍କୁ ଖୋଜ ଖୋଜ ମନ୍ଦ ପଦାନି ବିତନ୍ୱତୀଂ । ସ୍ଥିର ସ୍ଥିର କରି ପାଦମାନ ବଢ଼ାଇଁ ଗୁଳିବାରେ । କଥମପି । କଷ୍ଟେ କଷ୍ଟେ କରି ରହଃ ପ୍ରାପ୍ତା ଏକାନ୍ତ ସ୍ଥାନରେ କୃଷ୍ଣଙ୍କୁ ପାଇବ । ଅଙ୍ଗୈରନଙ୍ଗତରଙ୍ଗିଭିଃ ଅନଙ୍ଗ ତରଙ୍ଗ ଯେ କାମ ସମୁଦ୍ର

---

୧-୯.ରେ ନାହିଁ

ଲହରୀ ମାନଙ୍କର ଭ୍ରାନ୍ତିରେ ଯେ ତୁମ୍ଭର କର ଚରଣାଦି ଚେଷ୍ଟା କର ସେଠାରେ ମିଳିଲେ । ହେ ସୁମୁଖୀ, ସୁନ୍ଦର ବଦନେ ସୁଭଗଃ ପଶ୍ୟନ୍ । ଶ୍ରୀକୃଷ୍ଣଃ ତ୍ୱାଂ ପଶ୍ୟନ୍ କୃତାର୍ଥତାଂ ଉପୈତି । ସେ ଅଷ୍ଟ ଐଶ୍ୱର୍ଯ୍ୟଯୁକ୍ତ ଯେ ହରି ସେ ତୁମ୍ଭଙ୍କୁ ଦେଖିବା ମାତ୍ରେକେ ବଡ଼ କୃତାର୍ଥ ହୋଇବେ । ତୁମ୍ଭେ ବେଗେ ଚଳ ।

**ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ ଜୟଦେବକୃତୌ ଅଭିସାରିକାବର୍ଣ୍ଣନେ ସାକାଂକ୍ଷପୁଣ୍ଡରୀକାକ୍ଷୋ ନାମ ପଞ୍ଚମଃ ସର୍ଗଃ ।**

---

# ଷଷ୍ଠଃ ସର୍ଗଃ

**ଅଥ ତାଂ ଗନ୍ତୁମଶକ୍ତାଂ ଚିରମନୁରକ୍ତାଂ ଲତାଗୃହେ ଦୃଷ୍ଟ୍ୱା ।**
**ତଚ୍ଚରିତଞ୍ଚ ଗୋବିନ୍ଦେ ମନସିଜମନ୍ଦେ ସଖୀ ପ୍ରାହ ॥ ୧ ॥**

ସେ ରାଧା ବୋଇଲେ, ହେ ସଖି ଦୂତି ମୁଁ ଯାହେ ଗୋବିନ୍ଦ ବିରହ ଦୁଃଖେ କରି ବଡ଼ ବିକଳ ହୋଇଛି । ମୁଁ ହରିର ତହିଁକି ଯାଇ ନ ପାରିବି । ତୁ ମୋହର ଦୁଃଖ ହରିଙ୍କୁ କହି ଏଠାକୁ ଆଣ । ତାହା ଶୁଣି ଦୂତୀ ତାଂ ଗନ୍ତୁଂ ଅଶକ୍ତାଂ । ସେ ରାଧାଙ୍କୁ ଦେଖିଲା ଯିବାକୁ ଅତ୍ୟନ୍ତ ଅଶକ୍ତ । ଶକ୍ତ ନାହିଁ । ଆଉ ବିଶେଷ ଚିର-ମନୁରକ୍ତାଂ ବହୁକାଳ ମନୁରକ୍ତଂ ବହୁତ ପ୍ରେମାଶକ୍ତ ହୋଇଁ କୃଷ୍ଣର ବିଶେଷେ ମଜ୍ଜୁଛି । ଏମନ୍ତ ଯେ ରାଧା ତାହାଙ୍କୁ ଲତା ଗୃହେ ଦୃଷ୍ଟ୍ୱା । କୁଞ୍ଜଲତା ଗୃହେ ଦେଖିକରି ତଚ୍ଚରିତଂ ସେ ରାଧାର ଚରିତ ଯେତେ ଚେଷ୍ଟା ସେ କଥାମାନ ଗୋବିନ୍ଦେ ଗୋବିନ୍ଦର ସମ୍ମୁରେ ସଖୀ ପ୍ରାହ । ଦୂତୀ କହୁଛି । ସେ ଗୋବିନ୍ଦ କେମନ୍ତ ଅଟନ୍ତି । ମନସିଜ ମନ୍ଦେ । ମନସିଜ ଯେ କନ୍ଦର୍ପ ଗୋବିନ୍ଦର ମନରେ ପ୍ରବିଷ୍ଟ ହୋଇ କାମାର୍ତ୍ତ ବିକଳ ହୋଇଛନ୍ତି । ଏମନ୍ତ କୃଷ୍ଣ ସମ୍ମୁଖରେ ଦୂତୀ କହିଲା ।

**ଗୀତ**

(ଗୁଣ୍ଡକିରୀରାଗେଣ ଗୀୟତେ)

**ପଶ୍ୟତି ଦିଶି ଦିଶି ରହସି ଭବନ୍ତମ୍ ।**
**ତଦଧରମଧୁରମଧୂନି ପିବନ୍ତମ୍ ।**
**ନାଥ ହରେ, ସୀଦତି ରାଧା ବାସଗୃହେ ॥ ୧ ॥**

(ଧ୍ରୁବପଦମିଦମ୍)

ଦୂତୀ ଶ୍ରୀକୃଷ୍ଣଙ୍କୁ ବୋଲୁଛି—ହେ ନାଥ, ହେ ହରେ, ହେ ଭକ୍ତ ଆର୍ତ୍ତିହର ସା ମମ ସଖୀ ରାଧା ବାସଗୃହେ ସୀଦତି । ମୋହର ସଖି ରାଧା ବାସ ଲତା ଗୃହେ

---

୧—ପା. ଭେ. ତ୍ୱଦଧରଂ

ସୀଦତି । ଅବସାଦ ପ୍ରାପ୍ତ ହେଉଛନ୍ତି । ବଳ ଶୀର୍ଣ୍ଣ ବିକଳ ହୋଇଁଣ୍ଟି ଲତା ଗୃହ ଭିତରେ । ଅଥବା ହେ ନାଥ ହେ ହରେ ହେ ଫଣୀ ! ନଷ୍ଟେ ତୁମ୍ଭେ ପଶୁ ଅଟ । ପଶୁ ଯେମନ୍ତ ମନୁଷ୍ୟର ଭଲ ମନ୍ଦ କଥା ନ ଜାଣନ୍ତି । ଶୁଣ ସେ ରାଧା ଏପରି କରି ଦିନ ବଞ୍ଚୁଛନ୍ତି । ଚଦମି ଏକାନ୍ତ ସ୍ଥାନରେ ବସି । ଭବନ୍ତଂ ତ୍ୱାଂ ଦଶ ଦଶ ଚକ୍ଷୁଷ୍ଟି । କେବଳ ତୁମ୍ଭଙ୍କୁ ଦଶମାନଙ୍କୁ ଗୃହଁ ଲୋଡୁଛନ୍ତି । ତୁମ୍ଭେ କେମନ୍ତ ଅଟ । ତ୍ୱଦଧର ମଧୁର ମଧୂନି ପିବନ୍ତଂ । ଚୁମ୍ବନେ କରି ତାହାର ଅଧର ପାନ କରୁଥାଅ । ଏମ୍ଭ କରି ତୁମ୍ଭଙ୍କୁ ଦଶପାଦେ ଲୋଡୁଛନ୍ତି । ହେ ଅନାଥ ନାଥ ହାଦେ ଶୁଣ ତାହାର ଦୁଃଖ ।

**ତ୍ୱଦଭିସରଣରଭସେନ ବଳନ୍ତୀ ।**
**ପତତି ପଦାନି କୟନ୍ତି ଚଳନ୍ତୀ ॥ ୨ ॥**

ହେ ଗୋବିନ୍ଦ । ଶୋକ ବର୍ଦ୍ଧନ, ସେ ରାଧା ଲତା ଗୃହେ ସ୍ଥିର ହୋଇଁ ବସି ତୁମ୍ଭେ ଆସିବ ବୋଲି ସେ ହର୍ଷ ତେତେ ବେଗ ବନ୍ତ ହୋଇ ବସିଛନ୍ତି । ପୁଣି ବସି ନ ପାରି କେତେ ହିଁଣ୍ଟି ଦୂର ତୁମ୍ଭଙ୍କୁ ପାଶ୍ରେ ଯିବାକୁ କେତେ ହେଁ ପାଦ ଚଳିବା ମାତ୍ରକେ ବିକଳେ ପଡନ୍ତି । ପଡୁଛନ୍ତି । ହେ ପ୍ରଭୋ ସେ ଚଳିବା ମାତ୍ର ପଡ଼ଇ । ପୁଣି କେମନ୍ତ ରକ୍ଷା ପାଏ ତାହା ଶୁଣ ।

**ବିହିତବିଶଦବିସକିଶଲୟବଳୟା ।**
**ଜୀବତି ପରମିହ ତବ ରତିକଳୟା ॥ ୩ ॥**

ଦୂତୀ କହୁଛି—ହେ କୃଷ୍ଣ, କୃତ ସ୍ୱଚ୍ଛ ପଦ୍ମନାଳ ବଳୟା ଭୂଷଣାଃ ବିରହାଗ୍ନି ଖେଦ ଦୁଃଖେ କରି ଶୁକ୍ଳ ପଦ୍ମନାଡ଼ ମାନଙ୍କୁ ବଳୟାଦି କରି ଦେହ ଯାକେ ଭୂଷଣ କରିଛି ନାନାଳଙ୍କାର କରି । ତେଣୁ କରି ଜୀବତି ପରଂ ଇହ ବୃନ୍ଦାବନେ ପଡ଼ିବା ମାତ୍ରକେ କେବଳ ଜୀବନ୍ତି । ନ ମ୍ରିୟତେ କେବଳ ଜୀଅଇ ନ ମରଇ । ଯେଣେ କରି ଜୀଅଇ ତାହା ଶୁଣ । ତବ ରତିକଳୟା । ତୁମ୍ଭ ସଙ୍ଗେ ରତି କେଳି କଳାମାନ କରିବାର ଯେ ଆଶା ଏତେ ମାତ୍ରକେ ଜୀଅଇ । ନୋହିଲେ ମରନ୍ତାଇ [୧] ।

**[୨]ମୁହୁରବଲୋକିତମଣ୍ଡନଲୀଳା ।**
**ମଧୁରିପୁରହମିତି ଭାବନଶୀଳା ॥ ୪ ॥**

ହେ କୃଷ୍ଣ, ସେ ରାଧାର ଦେହରେ ଯେତେ ହାର କଙ୍କଣାଦି ଭୂଷଣ-ମାନଙ୍କର ମଣ୍ଡନ ହୋଇଛି ଯେ ଅଳଙ୍କାର ମାନ ତହିଁର ଲୀଳା ଯେ ସୁନ୍ଦର ତାହା

---

୧-ଖ. ମରନ୍ତାନି
୨-କ.ଖ. ମୁହୁଂ

ପୁନଃ ପୁନଃ କରି ଦେଖି ବୋଲୁଛୁ ମୁଁ ମଧୁରିପୁ । ଏମନ୍ତ ସେ ଭାବନା ସେହି ସେ ଶୀଳ ସ୍ୱଭାବ ଯାହାର ସେ ରାଧା ଏମନ୍ତ ହୋଇଛନ୍ତି । ହେ ନାଥ ରାଧାଙ୍କୁ ନ ପୁଣି ବୋଲ ।

**ତ୍ୱରିତମୁପୈତି ନ କଥମଭିସାରମ୍[୧] ।**
**ହରିରିତି ବଦତି ସଖୀମନୁବାରମ୍ ॥ ୫ ॥**

ହେ ନାଥ ! ତୁମ୍ଭେ ଯେବେ ବୋଲିବ ସେ ଯେମନ୍ତ ତେବେ କଥଂ ତ୍ୱରିତଂ ବେଗେ ନ ମାମୁପୈତି ଅଭିସାରଂ । ଅଥବା ସ ହରି ଅଭିସାରଂ ପ୍ରତି ତ୍ୱରିତଂ କଥଂ ନୋପୈତି ଇତି ଅନୁବାରଂ ସଖି ବଦତି । ସେ ରାଧା ଅଭିସାର ସ୍ଥାନକୁ କାହିଁ ବେଗେ ଉପଗତ ନୋହିଲା । ଏଠାକୁ ନ ଆସି କାହିଁ ବାରମ୍ବାର ସଖି ଅନୁରତ ହରିରିତି ବଦନ୍ତି । ହରିନ୍ତରା ହରି ହରି ବୋଲୁଛି କ କଥା ଏ । ତାହାଙ୍କ କହିବା ଶୁଣ । ତୁମ୍ଭ ତାହାଙ୍କ ଚିତ୍ତ ଦେଲେ ବାତୁଳ ଚେଷ୍ଟା ପ୍ରାୟେ ହୋଇ ଯାହା କରୁଛି ତାହା ଶୁଣ ।

**ଶ୍ଲିଷ୍ୟତି ଚୁମ୍ବତି[୨] ଜଳଧରକଳ୍ପମ୍ ।**
**ହରିରୁପଗତ ଇତି ତିମିରମନଳ୍ପମ୍ ॥ ୬ ॥**

ଜଳଧର କଳ୍ପ ଯେ ଜଳାମେଘର ପ୍ରାୟେ ଯେ ତୁମ୍ଭର ରୂପ ସେ ରୂପକୁ ନିକଟେ ପାଇଲା ପ୍ରାୟେ ମଣି କହେ ହରି ରୂପଗତଂ ଇତି । ତେମନ୍ତ ପ୍ରାୟେ ମଣି । ତିମିରଂ ଅନଳ୍ପଂ । ବହୁ ନିବିଡ଼ାନ୍ଧକାରଂ । ବହୁ ନିବିଡ଼ାନ୍ଧକାରକୁ ଶ୍ଲିଷ୍ୟତି । ଆଲିଙ୍ଗନକୁ କରୁଛି । ଏମନ୍ତ ହୋଇଛି ରାଧା ତୁମ୍ଭ ବିହେତୁ । ଆଉ ଅଧିକ କ କହିବା ।

**ଭବତି ବିଳମ୍ବିନୀ ବିଗଳିତଲଜ୍ଜା ।**
**ବିଳପତି ରୋଦିତି ବାସକଶଜ୍ଜା ॥ ୭ ॥**

ହେ ପ୍ରଭୁ । ଭବତି ତ୍ୱୟି ବିଳମ୍ବିନୀ ସତି[୩] ତୁମ୍ଭେ ବିଳମ୍ବ ଦେଖି ସେ ରାଧାର ବିଗଳିତ ଲଜ୍ଜା । ଲାଜ ଗ୍ଳାଉଛିଲେ । ଏବେ ନିଲଜ୍ଜ ହୋଇ ବିଳପତି । ବିଳାପ କରୁଛନ୍ତି । ରୋଦତି । ରୋଦନ କରୁଛନ୍ତି । ହେ ପ୍ରଭୋ ଆଉ ବାସକଶଯ୍ୟା ଲତା

୧-କ.ଙ. ତ୍ୱମଭିସାରଂ
୨-ଖ ରମୟତି
୩-ଙ. ସ୍ୟତି

ଗୃହ ମଧ୍ୟେ ନାନାଳଙ୍କାର ଶୃଙ୍ଗାର ବେଶଯୁକ୍ତ ଅଥବା ସ୍ୱରତସଙ୍କିତେନ କଳ୍ପିତ-ସ୍ୱାମୀସଙ୍ଗ ମନ୍ତ୍ର ଏବେମେବଂ କରୋତି ଏମନ୍ତ ଚେଷ୍ଟା କଥାମାନ କରୁଛି ।

**ଶ୍ରୀ ଜୟଦେବକବେରିଦମୁଦିତମ୍[1] ।**
**ରସିକଜନଂ ତନୁତାମତି ମୁଦିତମ୍ ॥ ୮ ॥**

ଜୟଦେବ କବି ବୋଲୁଛନ୍ତି--ହେ ବୈଷ୍ଣବ ଜନମାନେ ଶୁଣ । ମୁମେବି-ଉକ୍ତଂ ଗୀତମ୍ । ମୋହର ଭଣିଲା ଏ ଗୀତ । ଏ କେମନ୍ତ ଅଟଇ । ଅତି ମୁଦିତଂ । ଆନନ୍ଦଯୁକ୍ତଂ । ହରଷ ଜନକଂ । ଅତ୍ୟନ୍ତ ସୁଖଦଂ । ପୁନଃ କିଂ ଭୂତଂ । ରସିକ-ଜନଦ୍ୟାନନ୍ଦଂ କରୋତି । ରସିକ ଜନମାନଙ୍କର ଆନନ୍ଦ ହର୍ଷକୁ ବିସ୍ତାର କରଇ ।

**ଶ୍ଳୋକ :**

**ବିପୁଳପୁଲକପାଳିଃ ସ୍ଫୀତସୀତ୍କାରମନ୍ତ-**
**ର୍ଜନିତଜଡ଼ିମକାକୁବ୍ୟାକୁଳଂ ବ୍ୟାହରନ୍ତୀ ।**
**ତବ କିତବ ବିଧାୟା[2] ମନ୍ଦକନ୍ଦର୍ପଚିନ୍ତାଂ**
**ରସଜଳଧିନିମଗ୍ନା ଧ୍ୟାନଲଗ୍ନା ମୃଗାକ୍ଷୀ ॥ ୨ ॥**

ଶ୍ରୀକୃଷ୍ଣଙ୍କୁ ଦୂତୀ କହୁଛି--ହେ କିତବ, ହେ କପଟ ଧୂର୍ତ୍ତ ! ସା ମୃଗ-ଲୋଚନା ରାଧା ଯେମନ୍ତ ହୋଇଛି ତାହା ଶୁଣ କହିବା । ବିପୁଳ ପୁଲକ ପାଳିଃ ବିସ୍ତୃତ ରୋମାଞ୍ଚବଳୀ ତାହା ଦେହ ଅତ୍ୟନ୍ତ ରୋମାଞ୍ଚିତ ହୋଇ ରୋମାବଳୀମାନେ ପଂକ୍ତି ହୋଇ ଦେହ ମଧ୍ୟରେ ଦିଶୁଛି । ସ୍ଫୀତଶୀତ୍କାରଂ । ବହୁତ ଶୀତ ଲାଗିଲା ପ୍ରାୟେ ହୋଇ ଅନ୍ତର୍ଜନିତ ଜଡ଼ିମକାକୁ ଅନ୍ତର୍ଗତ ବହୁତ ଜାଡ଼ ଜନ୍ମ ହୋଇଲାର ବ୍ୟାକୁଳଂ ବ୍ୟାହରନ୍ତୀ । କାକୁ ଯେ ବ୍ୟଗ୍ର ଶୀତ ପ୍ରେରିତ ହୋଇ ବ୍ୟାକୁଳ ବଚନନ୍ତ ବୋଲୁଛି ଯେମନ୍ତ କର ତାହା ଶୁଣ । ତବ ମନ୍ଦ କନ୍ଦର୍ପ ଚିନ୍ତା । ତୁମ୍ଭର ମନ୍ଦ କନ୍ଦର୍ପ ଚିନ୍ତାରେ କରି ବହୁତ କାମକେଳି ଚିନ୍ତାକୁ ବିଧାନ କରୁଛି । ବିସ୍ତୁରୁଛି । ପୁନଃ କିଂ ଭୂତା ସା । ପୁଣି ସେ କେମନ୍ତ ହୋଇଛି । ରସ ଜଳଧି ନିମଗ୍ନା । ଅପାର ଶୃଙ୍ଗାର ରସ ସମୁଦ୍ରେ ନିମଗ୍ନା । ଏମନ୍ତ ରସ ଜଳଧିରେ ମଜ୍ଜି ସେ ମୃଗାକ୍ଷୀ ଭାସି ଯାଉଁ ଯାଉଁ କେବଳ ଧ୍ୟାନ ଲଗ୍ନା । ତୁମ୍ଭଙ୍କୁ ଅବଶ୍ୟ ପାଇବ ଏମନ୍ତ ଯେ ଆଶା ସେହି ସେ ଥିର ହୋଇଲା । ତହିଁ ତୁମ୍ଭର ଧ୍ୟାନରେ କରି ଲାଗିଛି । ନୋହିଲେ ଭାସି ଯାଆନ୍ତାନ ! ୨ ।

---

1-ଝ.ରେ 'ଇଦମୁଦିତମ୍' ନଷ୍ଟ ହୋଇଛି
2-କ. ଝ. ବିଧାୟ

ଅଙ୍ଗେଷ୍ୱାଭରଣଂ କରୋତି ବହୁଶଃ ପତ୍ରେଽପି ସଂଚାରିଣି
ପ୍ରାପ୍ତଂ ତ୍ୱାଂ ପରିଶଙ୍କତେ ବିତନୁତେ ଶଯ୍ୟାଂ ଚିରଂ ଧ୍ୟାୟତି ।
ଇତ୍ୟାକଳ୍ପବିକଳ୍ପତଳ୍ପରଚନାସଂକଳ୍ପଲୀଳାଶତ-
ବ୍ୟାସକ୍ତାପି ବିନା ତ୍ୱୟା ବରତନୁର୍ନୈଷା ନିଶାଂ ନେଷ୍ୟତି ।। ୩ ।।

(ହେ ମାଧବ ! ସା ବରତନୁ ସୁନ୍ଦର ଗାତ୍ରୀ ତ୍ୱୟା ବିନା ତ୍ୱାଂ ପ୍ରାଣନାଥ ଅପ୍ରାପ୍ତେନ । ଏଷାଂ ନିଶାଂ ରାତ୍ରିଂ ନେଷ୍ୟତି ।)[1] ନ ସଂପ୍ରାପ୍ସ୍ୟତି । ହେ ପ୍ରଭୁ ମୋହର ସଖି ସେ ବରତନୁ ସୁନ୍ଦରୀ ରାଧା ପରମ କୋମଳାଙ୍ଗୀ ଅତ୍ୟନ୍ତ କୋମଳ ଅଙ୍ଗ ତାହାର । ସେ ତୁମ୍ଭ ବିନା ସେ ତୁମ୍ଭଙ୍କୁ ନ ପାଇଲେ ଏ ରାତ୍ରି ସେ ଭଲେ ନ ପାଇବ[2] । ନିଶ୍ଚେ ମରିବ । ମୁଁ ଯେମନ୍ତ ଦେଖିଲି ବର୍ଣ୍ଣିଲି ତାହା କହିବା । ଏବେ ରାତ୍ରି କଥା ତୁ ଶୁଣ । ଅଙ୍ଗେଷୁ କର ଚରଣାଦିରେ ଆଭରଣଂ କରୋତି । ବହୁଶଂ ବହୁ ପ୍ରକାରଂ ବିରଚୟତି । ସେ ରାଧା ଅଙ୍ଗରେ ସବୁଠାରେ ଯେତେକ ସେ ଅଳଙ୍କାର ମାନଙ୍କୁ ବହୁତ ଶ୍ରଦ୍ଧାଯୁକ୍ତ ହୋଇ ଆଭରଣ କରୁଛି । ମନ୍ଦେ ପବନ ଯୋଗେ ଶୁଖିଲା ପତ୍ର ବିଚଳିତ ହେଲେ ପ୍ରାପ୍ତଂ ତ୍ୱାଂ ତୁମ୍ଭେ ଆଇଲ ଏମନ୍ତ ମଣି ପରିଶଙ୍କତେ । ଶଙ୍କା ପାଇଁ କରି ବିତନୁତେ ଶଯ୍ୟାଂ । ପୁଷ୍ପଶଯ୍ୟାକୁ ବିସ୍ତାର କରି ବିଛାଉଛି । ପୁନଃ ଚିରଂ ଧ୍ୟାୟତି । ପୁଣି ତୁମ୍ଭଙ୍କୁ ଅପାର କରି ଧ୍ୟାନ କରୁଛି । ଇତ୍ୟାକଳ୍ପବିକଳ୍ପତଳ୍ପରଚନା-ସଂକଳ୍ପଲୀଳାଶତ । ସଂକଳ୍ପ ଯେ ହୃଦୟ ଧ୍ୟାନ ଆକଳ୍ପ ନୀଳା ଯେ ନାନାରଙ୍ଗ ଲୀଳା ଏ ମାନଙ୍କର ଶତ ପ୍ରକାର କରି । ବହୁବାରଂ ଖେଳନାମନାଶକ୍ତଃ । ବହୁତ ପ୍ରକାରେ ଚଞ୍ଚଳମନ ହୋଇଁ ବଞ୍ଚୁଛନ୍ତି । ସେ ପୁଣି କେମନ୍ତ ହୋଇଛି । ବାସକସଜ୍ଜା ଅଳଙ୍କାରେ ଚିତ୍ତ ଚେତନ ହୋଇଛି । ପୁଣି ସେ ତୁମ୍ଭର ଆଗମେ ଜ୍ଞାନ ହୋଇବନି ।

ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ କବିରାଜଜୟଦେବକୃତୌ
ବାସକଶଯ୍ୟାବର୍ଣ୍ଣନେ ସୋତ୍କଣ୍ଠବୈକୁଣ୍ଠୋ ନାମ ଷଷ୍ଠଃ ସର୍ଗଃ ।

---

୧-କ. ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।

୨-ଖ. ପାଇବ ।

# ସପ୍ତମଃ ସର୍ଗଃ

ତଦନନ୍ତରେ ଦୂତୀ କୃଷ୍ଣଙ୍କ ଆଗେ ରାଧାର କଥାମାନ କହୁଁ କହୁଁ ତେଣେ ଲତା ଗୃହ ମଧ୍ୟେ ରାଧା ଏକାକୀ ହୋଇ ଅଛନ୍ତି । ସଖୀ ନିକଟେ ନାହାଁନ୍ତି । ଏ ଅନ୍ତରେ ଚନ୍ଦ୍ର ଅଭ୍ୟପୟତ୍[୧] । ଚନ୍ଦ୍ରୋଦୟ ହୋଇଲା ।

**ଶ୍ଲୋକ**

**ଅତ୍ରାନ୍ତରେ ଚ କୁଳଟାକୁଳବର୍ତ୍ମ ପାତ—**
**ସଂଜାତପାତକ ଇବ ସ୍ଫୁଟଲାଞ୍ଛନଶ୍ରୀଃ ।**
**ବୃନ୍ଦାବନାନ୍ତରମଦୀପୟଦଂଶୁଦୀପୈ-**
**ର୍ଦିକ୍ସୁନ୍ଦରୀବଦନଚନ୍ଦନବିନ୍ଦୁରିନ୍ଦୁଃ ॥ ୧ ॥**

ଚନ୍ଦ୍ରୋଦୟ ହୋଇଲା । ସେ ଚନ୍ଦ୍ର କେମନ୍ତ ଅଟଇ । ଅତ୍ରାନ୍ତରେ ଇନ୍ଦୁଃ । ବୃନ୍ଦାବନ ମଧ୍ୟେ ଅଂଶୁଦୀପୈରଦୀପୟତ୍ । ଚନ୍ଦ୍ରୋଦୟ ହୋଇଲା । ବୃନ୍ଦା-ବନାନ୍ତର ବୃନ୍ଦାବନ ମଧ୍ୟ ପର୍ଯ୍ୟନ୍ତ ସମସ୍ତ ଠାରେ ଅଂଶୁଦୀପୈ । ସେ ଚନ୍ଦ୍ର କିରଣ ମାନେ ସେ ଦୀପ ପ୍ରାପ୍ତେ ହୋଇ ପ୍ରକାଶ ହୋଇଛି । କିମିବ । କାହାର ପ୍ରାପ୍ତେ ହୋଇଁ ପ୍ରକାଶ ହୋଇଲା । କୁଳଟା କୁଳବର୍ତ୍ମ ପାତ ସଂଜାତ ପାତକଇବ । କୁଳଟା ଅସତୀ ସ୍ତ୍ରୀ ମାନେ ତାହାଙ୍କର କୁଳ ଯେ ସମୂହ ସେମାନଙ୍କର ବର୍ତ୍ମରକୁ ଦିବାର ବାଟେ ଖଣ୍ଡ ହୋଇଁ ଉଦୟ ହୋଇଲା । ପୁଣି ସେ ଚନ୍ଦ୍ର ସୁନ୍ଦର ଅଟଇ ସ୍ଫୁଟବେଂ । ବଢ଼େଶେ ଅସତୀ ମାନଙ୍କର ବାଟ ଚଢ଼ିବାର ପାପେ କରି ତେତେଡ଼ ଶ୍ରୀବନ୍ତ ଶୋଭା ଦେହରେ ସ୍ଫୁଟ ପ୍ରକାଶ ଲାଞ୍ଛନ ହୋଇଲା । ପୁଣି ସେ ଚନ୍ଦ୍ରକୁ କି ଦୃଷ୍ଟାନ୍ତର କରିବା । ଦିକ୍ସୁନ୍ଦରୀବଦନଚନ୍ଦନବିନ୍ଦୁରିବ । ଦିକ୍ ସୁନ୍ଦରୀ ଯେ ଦିଗମାନେ ତାହାଙ୍କର ମୁଖମଣ୍ଡଳ ଶ୍ରୀ ଚନ୍ଦନବିନ୍ଦୁ କଲ୍ପିତ ତିଳକମିବ । କଳ୍ପିତ ଚନ୍ଦନ ତିଳକର ପ୍ରାପ୍ତେ । ୧ ।

---

[୧] ପା. ଉଦୀପୟତ୍

**ପ୍ରସରତି ଶଶଧରବିମ୍ବେ ବିହିତବିଳମ୍ବେ ମାଧବେ ବିଧୁରା ।**
**ବିରଚିତବିବିଧବିଳାପଂ ସା ପରିତାପଂ ଚକାରୋଚ୍ଚୈଃ ॥ ୨ ॥**

ଶଶଧର ବିମ୍ବେ ଚନ୍ଦ୍ର ମଣ୍ଡଳେ ପ୍ରସରନ୍ତି ସନ୍ତି । ଶଶଧର ବିମ୍ବ, ଯେ ଚନ୍ଦ୍ର-ମଣ୍ଡଳ ସେ ଉଦୟ ହୋଇଗଲେ । ଏଣେ ମାଧବର ବା ବିଳମ୍ବ ହୋଇଗଲେ ସା ବିଧୁରା ଦୁଃଖମାନବଦନୀ ରାଧା ବିରଚିତ ବିବିଧ ବିଳାପଂ କୃତନାନା ପରିବେଦନଂ ପରିତାପଂ । ଉଚ୍ଚୈଃ ଚକାର । ନାନାବିଧ ବିଳାପମାନ ଉଚ୍ଚ ବଡ଼ କରି କଲା ଯେମନ୍ତ ବିଳାପମାନ କଲା ତାହା ଶୁଣ କହିବା । ୨ ।

**ଗୀତ**

(ମାଳବଗୌଡ଼ରାଗେଣ ଗୀୟତେ)

**କଥିତସମୟେଽପି ହରିରହହ ନ ଯଯୌ ବନମ୍ ।**
**ମମ ବିଫଳମିଦମମଳରୂପମପି ଯୌବନମ୍ ।**
**ଯାମି ହେ କମିହ ଶରଣଂ ସଖିଜନବଚନବଞ୍ଚିତା ॥ ୧ ॥**

(ଧ୍ରୁବପଦମିଦମ୍)

ସେ ରାଧା ବୋଲୁଛନ୍ତି, ହେ ଦେବ ଇହ ବୃନ୍ଦାବନେ ଅହଂ କଂ ଶରଣଂ ଯାମି । ଏ ବୃନ୍ଦାବନରେଂ ମୁଁ କାହାର ଶରଣ ଯିବି ! ସଖି ଜନ ବଚନେ ବଞ୍ଚିତା ! ମୁଁ ସଖି ମାନଙ୍କର ବଚନ ଯେ ଅବଜ୍ଞା କଲି ତହିଁର ଫଳ ଏବେ ପ୍ରତ୍ୟକ୍ଷ ହୋଇଲା ! ଯେଣୁକରି କଥିତ ସମୟେଽପି ହରି କହିଲେ ସଙ୍କେତ କାଳ ବୃନ୍ଦାବନ ମଧ୍ୟେ ତୋତେ ରମିବି ବୋଲି ସମୟ କଲା । ଏବେ ବନଂ ନ ଯଯୌ । ବନକୁ ନ ଆଇଲେ । ସେ ଶ୍ରୀକୃଷ୍ଣଙ୍କୁ ନ ପାଇଁ ମମ ଅମଳଂ ରୂପଂ ଯୌବନଞ୍ଚ ବିଫଳଂ । ମୋହର ଏ ନିର୍ମଳ ରୂପ ଯୌବନ ସବୁ ବିଫଳ ହୋଇ । ଏ ବୃନ୍ଦାବନରେ ।

**ଯଦନୁଗମନାୟ ନିଶି ଗହନମପି ଶୀଳିତମ୍ ।**
**ତେନ ମମ ହୃଦୟମିଦମସମଶରକୀଳିତମ୍ ॥ ୨ ॥**

ଯସ୍ୟ ଶ୍ରୀକୃଷ୍ଣସ୍ୟ ଅନୁଗମନାୟ । ଅନୁସରଣାର୍ଥଂ ନିଶି ରାତ୍ରିରେ ଗହନଂ ବୃନ୍ଦାବନଂ ମୟା ଶୀଳିତଂ । ଆଲୋଡ଼ିତଂ । ହେ ଦେବ ମୁଁ ଶ୍ରୀକୃଷ୍ଣର ପଛେ ପଛେ ତାହାଙ୍କୁ ପାଇବି ବୋଲି ଏ ରାତ୍ରେ ଗହନ ଘୋର ଭୟଙ୍କର ବୃନ୍ଦାବନ ପର୍ଯ୍ୟନ୍ତ ଖୋଜିଲେ ହେଁ ନ ପାଇଲି । ଏବେ ଦ୍ୱିଗୁଣ ହୋଇ ସେ ଦୁଃଖ କ୍ରମେ କରି ଅନେକ ହେଉଛି । ମମ ହୃଦୟଂ । ମମ ଇଦଂ ହୃଦୟଂ । ଅସମଶରକୀଳିତଂ । ତେନ

କୃଷ୍ଣାନୁଶରଣ ନେଇ ମୁଁ ନା କୃଷ୍ଣଙ୍କୁ ଖୋଜିବାର ହେତୁରେ କରି ମୋହର ହୃଦୟ । ଅସମ ଶର ଯେ କାମ ବାଣ ତେଣେ କରି ବ୍ୟାକୁଳ । ମୂର୍ଚ୍ଛିତ । ଅଭୂତ ମୁଦ୍ରିତ ହୋଇଲା କୃଷ୍ଣଙ୍କୁ ନ ପାଇଲାରେ ।

**ମମ ମରଣମେବ ବରମତିବିତଥକେତନା ।**
**କିମିହ ବିଷହାମି ବିରହାନଳମଚେତନା ॥ ୩ ॥**

ହେ ସଖୀଗଣ, ମମ ମରଣମେବ ଇଦାନୀଂ ବରଂ ଶ୍ରେଷ୍ଠଂ ବାଞ୍ଛନୀୟଂ । ଏବେ ମୋହର ମରିବାର ବରଂ ବାଞ୍ଛିତ ଶ୍ରେଷ୍ଠ ଅଟଇ । ଏକେ ଭଲ ହୋଇ । ଏମନ୍ତ ହୋଇଁ ଜୀଇଁବା ଗ୍ଲାନ କି ଭଲ । ଯେ ପ୍ରାଣୀ ପରକୁ ଆଶ କରିଥାଇ ସେ ଜୀବନ ଥାଉଁ ମରୁ । ଦେଖ କେମନ୍ତ ହୋଇଲି ମୁଁ ଅତି ବିତଥକେତନା । ଅତି ବିନଷ୍ଟ ସଙ୍କେତ ସ୍ଥାନ । ଅତ୍ୟନ୍ତ ହୋଇ ମୋହର ଏତେ ସଙ୍କେତ ସ୍ଥାନ ନିରର୍ଥ ହୋଇଲା । ଏବେ ମୁଁ ବିନଷ୍ଟ ସଙ୍କେତ ଦୁଃଖେ କରି ଅଚେତନା ହୋଇଲି ହତଜ୍ଞାନ ହୋଇଁ । ଇହ ବନେ ବିରହାନଳ କିଂ ବିଷହାମି । ବିରହାନଳଂ କୃଷ୍ଣବିଚ୍ଛେଦଜନିତାଗ୍ନିଂ କିମର୍ଥଂ ବିଷହାମି । ଏବେ ମୁଁ ବୃନ୍ଦାବନ ଗହନେ କୃଷ୍ଣ ବିରହ ବିଚ୍ଛେଦରୁଂ ଜାତ ହୋଇଲା ଯେ ଅନଳ ସେ ଅଗ୍ନି କି ନିମନ୍ତେ ସହିବ । ଅନୁଭବ କରିବ । ମୁଁ ଏବେ ଚେତନା ବିସ୍ମର ଶୂନ୍ୟା । ଅହୋ ବିରହାଗ୍ନି ସହନାନ୍ମରଣମେବ ବରଂ । ଏ ଅଗ୍ନି ସହିବାରୁ ମରଣ ବରଂ ଶ୍ରେଷ୍ଠ ଅଟଇ ।

**ଅହହ କଳୟାମି ବଳୟାଦିମଣିଭୂଷଣମ୍ ।**
**ହରିବିରହଦହନବହନେନ ବହୁଦୂଷଣମ୍ ॥ ୪ ॥**

ପୁଣି ରାଧା ବୋଲୁଛନ୍ତି—ହେ ଦୈବ ଅହହ କଷ୍ଟଂ । ବଳୟାଦି ମଣି-ଭୂଷଣଂ ଏ ଯେ ବଳୟାଦି କରି ଅଳଙ୍କାର ମଣିମୟ ଭୂଷଣ ମୋହର ଦେହେ ଅଛନ୍ତି ଏମାନଙ୍କୁ ମୁଁ ହରି ବିରହ ଦହନ ବହନେନ ବିରହ ବିଚ୍ଛେଦରୁଁ ଜନ୍ମ ହୋଇଁଲା ଯେ ଦହନ ଅଗ୍ନି ସେ ଅଗ୍ନିରେ କରି ଦହନ ହେଉଁଛି ଯେ ମନ ମୋହର ଏଣୁ କରି ବହୁ ଦୂଷଣଂ ମନ୍ୟେ । ଏମାନଙ୍କୁ ବଡ଼ ଦୂଷଣ ଜାଳଙ୍କ ସ୍ଥାନେ ମଣୁଛି । ସେଣୁ କରି ହରି ବିରହ ଦହନକୁ ରହି ମନରେ ।

**ମାମହହ ବିଧୁରୟତି ମଧୁରମଧୁଯାମିନୀ ।**
**କାପି ହରିମନୁଭବତି କୃତସୁକୃତକାମିନୀ ॥ ୫ ॥**

ଅହହ କଷ୍ଟଂ । ବଡ଼ କଷ୍ଟ ମୋତେ ହୋଇଲା । ସେମାନେ ମଧୁର ମଧୁ ଯାମିନୀ ଏ ଯେ ବସନ୍ତ ମନୋହର ରାତ୍ରୀମାନ ଚନ୍ଦ୍ର କିରଣ ଶାନ୍ତି ଏତେ ସୁନ୍ଦର

ଯାମିନୀ । ମାଂ ବିଧୁରଯନ୍ତି । ମୋତେ ବଡ଼ ମଳିନ କରି ବ୍ୟଥା ଜନ୍ମ କରାଉଛନ୍ତି । ଏମନ୍ତ ସଙ୍ଗେ । କାପି ସୁକୃତ କାମିନୀ ହରିଂ ଅନୁଭବନ୍ତି । କେ ପୁଣ୍ୟ କଲା କାମିନୀ ଏ ସଙ୍ଗେହଂ ହରି କ ଯେଜ ଅନୁଭବ କରୁଛନ୍ତି ନାନା କଳା ରସମାନଙ୍କୁ । ମୁଁ ଏଡେ ଅଭାଗିନୀ ।

କୁସୁମସୁକୁମାରତନୁମତନୁଶରଲୀଳୟା ।
ସ୍ରଗପି ହୃଦି ହନ୍ତି ମାମତିବିଷମଶୀଳୟା ॥ ୭ ॥

ପୁଣି ରାଧା ବୋଲୁଛନ୍ତି—ହେ ଦୈବ, ପୁଷ୍ପାଧିକ କୋମଳ ଦେହାଂ ମାଂ । ସ୍ରଗପି ପୁଷ୍ପମାଳାଽପି ହୃଦି ବର୍ତ୍ତମାନା ହନ୍ତି । ମରଚାଉଛନ୍ତି । କୁସୁମ ଯେ ପୁଷ୍ପ ତହୁଁ ଅତ୍ୟନ୍ତ କୋମଳ ଯେ ମୋହର ତନୁ ମୋ ତନୁକୁ ହୃଦୟରେ ଥାଇ ଏ ସ୍ରକ ଯେ ପୁଷ୍ପମାଳା ମୋ ମାଳା ମୋତେ ବଡ଼ ପ୍ରମାଦ ତାପ କରାଉଛନ୍ତି । ସର୍ପର ପ୍ରାୟେକ ଖାଉଛନ୍ତି । ଏମନ୍ତ ପ୍ରାୟେ ମୁଁ ମରୁଛି । ଯତଃ ଅତନୁଶରଲୀଳୟା । କାମବାଣ ଚେଷ୍ଟା ଏ କରି । ମୋ କାମ ବାଣ ଲୀଳା କେମନ୍ତ ଅଟଇ । ଅତି ବିଷମ ଶୀଳା । ଅତ୍ୟନ୍ତ ବିଷମ ଅଟଇ ତାହାର ସ୍ୱଭାବ । ଅତି ଦୁଃଖ ସ୍ୱଭାବ ହେଉଛିରେ କରି ।

ଅହମିହ ନିବସାମି ନ ଗଣିତବନବେତସା ।
ସ୍ମରତି ମଧୁସୂଦନୋ ମାମପି ନ ଚେତସା ॥ ୭ ॥

ରାଧା ବୋଲୁଛନ୍ତି—ହେ ଦୈବ । ଘର ଗୃହ କରି ମନୁଷ୍ୟ ଦେହ ହୋଇ ଛାଡ଼ି ଘୋର ଭୟଙ୍କର ଏ ଘୋର ବନ ମଧ୍ୟେ ବନ ବେତସା ବିଗଣେଯ୍ୟ ଅହଂ ନିବସାମି । ମୁଁ ଏବେ ଏ ଘୋର ବନ ମଧ୍ୟରେ [୧] ବସିଲା । ନବଗଣିତ ବନ ବେତସ: ନ ଗଣିଲ ଅରଣ୍ୟ ବନ ସମ୍ଭବଭୂମି । ଭୂମି ନ ଜାଣି ଏ ବେତଭୂମିକ । ମୁଁ ଏଥେ ସ୍ୱସ୍ୱଭାବେନ ମୃଗୈର୍ଦ୍ଦେଶ ଘୋର ନିକୁଞ୍ଜ ବନ ବେତସଂ ନ ଗଣିତା ବସାମି । ମୋହର ସହାୟ ଲୋକ କେହି ନାହିଁ [୨] । ଆପଣାର ଧୈର୍ଯ୍ୟ ଭାବେ ନିର୍ଭୟ ହୋଇ ଘୋର ଲତା ଭିତରେ ବସିଲି । ତଥାପି ମଧୁସୂଦନ ମୋତେ ଚେତସା ନ ସ୍ମରନ୍ତି । ମଧୁସୂଦନ ମୋତେ ଚିତ୍ତରେ ସ୍ମରଣା ନ କଲେ । ମୁଁ ଏବେ ବନେ କାହିଁ କାହାର ଶରଣକୁ ଯିବି । କି ଅବା କରିବି ।

---

୧-ଖ. ମଧ୍ୟେଂ

୨-ଖ. ଲୋକ ନାହିଁ ।

**ହରିଚରଣଶରଣଜୟଦେବକବିଭାରତୀ ।**
**ବସତୁ ହୃଦୟେ ଯୁବତିରିବ କୋମଳକଳାବତୀ ॥ ୮ ॥**

ଜୟଦେବ କବି କହୁଛନ୍ତି—ହେ ବୈଷ୍ଣବ ଜନମାନେ ଶୁଣ । ହରି ଚରଣ ସ୍ମରଣ କରିବା ନିମନ୍ତେ ଜୟଦେବ କବି ଭାରତୀ ଜୟଦେବ ଭାରତୀ ଗୀତରୂପା ବାଣୀ । ଜୟଦେବ କବିର ଗୀତ ରୂପ ବଚନ ଅଟଇ । ଏ ବାଣୀ କେମନ୍ତ ଅଟଇ । କୋମଳ କଳାବତୀ । ଅତ୍ୟନ୍ତ କୋମଳ ସ୍ୱରର ମୂର୍ଚ୍ଛନା ଯୁକ୍ତ ଅଟଇ । ଏମନ୍ତ ଯେ ଏ ବାଣୀ ସେ ଭକ୍ତମାନଙ୍କର ହୃଦୟରେ ବସୁ ନିରନ୍ତରେ । (କାହିଁ କାହାରି ପ୍ରାୟେ ହୋଇ । ଯୁବତୀ ଇବ କୋମଳ କଳାବତୀ । କାମୀ ପୁରୁଷମାନଙ୍କର ହୃଦୟରେ ଯେମନ୍ତ ସୁନ୍ଦର କୋମଳ କଳାବତୀ ଯୁବତୀର ଚିନ୍ତା ନିରନ୍ତରେ ବସିଥାଇ । ସେହିମନ୍ତ ହୋଇ ଏ ବାଣୀ ଭକ୍ତମାନଙ୍କର ହୃଦୟରେ ବସୁ ।)[1] ତଦନନ୍ତରେ ସେ ରାଧା (ବୋଲୁଛନ୍ତି ମନରେ ଖେଦ ପାଇ)[2] ହେ ଦୈବ ! କୃଷ୍ଣ କିମ୍ପା ନଇଲେ । ଏଥିର କି ହେଲୁ ମୁଁ କିଁ କରିବି ? କୃଷ୍ଣ କି ହୋଇଲେ ?

**ଶ୍ଲୋକ**

**ତତ୍ କିଂ କାମପି କାମିନୀମଭିସୃତଃ କିଂ ବା କଳାକେଳିଭି—**
**ର୍ବଦ୍ଧୋ ବନ୍ଧୁଭିରନ୍ଧକାରିଣି ବନାଭ୍ୟର୍ଣ୍ଣେ କିମୁଦ୍‌ଭ୍ରାମ୍ୟତି ।**
**କାନ୍ତଃ କ୍ଳାନ୍ତମନା ମନାଗପି ପଥି ପ୍ରସ୍ଥାତୁମେବାକ୍ଷମଃ**
**ସଂକେତୀକୃତମଞ୍ଜୁବଞ୍ଜୁଳଲତାକୁଞ୍ଜେଽପି ଯନ୍ନାଗତଃ ॥ ୩ ॥**

କାନ୍ତଃ ଶ୍ରୀକୃଷ୍ଣଃ କଥଂ ନାଗତଃ । କୃଷ୍ଣ କିମ୍ପା ନଇଲେ । ତତ୍ କିଂ । କି କଥା ଏ । କାମପି କାମିନୀମଭିସୃତଃ । କେହୁଣି ସ୍ତ୍ରୀ କାମିନୀ ତହିଁକି ଗଲେ କିମ୍ବା କଳା-କେଳିଭିର୍ବଦ୍ଧଃ । କାମକେଳି ଚତୁଃଷଷ୍ଠି କଳା କୌତୁକ ତହିଁରେ ଭାବରସେ ବାନ୍ଧି ହୋଇଲେ ବା ଅଥବା ବନ୍ଧୁଭିର୍ବଦ୍ଧଃ କିମ୍ବା ବନ୍ଧୁମାନଙ୍କର ସଙ୍ଗେ ବନ୍ଧୁଲୀଳାରେ ବନ୍ଧ ହୋଇଲେ । ଅଥବା କୃଷ୍ଣର ବନ୍ଧୁ ଯେ ଭକ୍ତ ବୈଷ୍ଣବଜନମାନେ ତାହାଙ୍କର ପ୍ରେମ-ଭକ୍ତି ବଶ ହୋଇ ଏବା ବାନ୍ଧି ହୋଇଲେ । କିମ୍ବା ଅନ୍ଧକାରିଣି ବନାଭ୍ୟର୍ଣ୍ଣେ ଭ୍ରାମ୍ୟତି କିମୁ କିମ୍ବା ଅନ୍ଧକାର ବନ ସମୀପେ ବାଟ ନ ପାଇ ବଣା ହୋଇ ଭ୍ରମୁଛନ୍ତି ଅଥବା ମମକାନ୍ତ ଜଗତ୍‌କାନ୍ତଃ କ୍ଳାନ୍ତମନା ବଡ଼ ଦୁଃଖୀ ଖିନ୍ନ[3] ଦୁର୍ବଳ ମନ ହୋଇ

---

୧ କ. ରେ ନାହିଁ ।
୨-୨. ମନରେ ଖେଦ ପାଇ ଏମନ୍ତ ବୋଲୁଛନ୍ତି ।
୩ କ. କ୍ଷୀଣ

ମନାଗପି ପ୍ରସ୍ଥାତୁଂ । ଅଳ୍ପ ହୋଇ ଭଚ ଆସିବାକୁ ଅବା ଅକ୍ଷମଃ । ସମର୍ଥ ନୋହନ୍ତି କିମ୍ବା ସଙ୍କେତକୃତମଞ୍ଜୁବଞ୍ଜୁଳଲତା ଅଥବା ସଙ୍କେତ କରିଥିଲେ ଯେ ବେତଲତା [1] କୁଞ୍ଜକୁ ସେ କଥା ପାଶୋରିଲେ । ଅଥବା କୁଞ୍ଜେଽପି କେହୁଣିମି କୁଞ୍ଜେ ସୁଚ୍ଛେ ହୋଇ ଛନ୍ତି [2] । କିମ୍ବା ନାଗରଃ । ମୂଳରୁହିଁ ବା ଏ ବୃନ୍ଦାବନକୁ ଆସି ନାହାନ୍ତି ଯେଣୁ କରି ନ ଅଇଲେ । ଅଥାନନ୍ତରେ ଶ୍ରୀକୃଷ୍ଣର ଚହ୍ନିଁ ବାହୁଡ଼ ଦୂତୀ ରାଧାର ନିକଟରେ ମିଳିଲାରେଂ ସେ ରାଧା ଦୂତୀକ ପୁଛିଁଲେ । ସେ ଦୂତୀ କେମନ୍ତ ଦିଶୁଛି [3] ।

**ଅଥାଗତାଂ ମାଧବମନ୍ତରେଣ ସଖୀମିୟଂ ବୀକ୍ଷ୍ୟ ବିଷାଦମୂକାମ୍ ।**
**ବିଶଙ୍କମାନା ରମିତଂ କୟାପି ଜନାର୍ଦ୍ଦନଂ ଦୃଷ୍ଟବଦେତଦାହ ॥ ୪ ॥**

ଅଥାନନ୍ତରଂ ଇୟଂ ରାଧା ମାଧବମନ୍ତରେଣ ଆଗତାଂ ସଖୀଂ ବୀକ୍ଷ୍ୟ । ଗୋବିନ୍ଦର ଚହ୍ନିଁ ଲେଉଟି ଅଇଲା ଯେ ସଖୀ ତାହାକୁ ଦେଖିଁଲେ ସେ ରାଧା ସେ କେମନ୍ତ ଦିଶୁଛି । ମାଧବର ଚହ୍ନିଁ ଆସି ବଡ଼ ବିଷାଦ ହୋଇଁ ମୂକାଂ । ବିମୁଖ ଯୁକ୍ତାଂ । ତୁନି ହୋଇଁ ବିମୁଖ ପ୍ରାପ୍ତ ହୋଇଛି । ଏମନ୍ତ ସଖୀ କ ବୀକ୍ଷ୍ୟ ଦେଖିବା ମାତ୍ରକେଂ ଏମନ୍ତ ବିଚାରିଲେ । ସଙ୍କମାନା ମନ୍ତ ବଡ଼ ଶଙ୍କା ପାଇ ଅହୋ ଉତ୍ପ୍ରେକ୍ଷା, ରମିତଂ କୟାପି [3] । କୟାପି ନାୟିକା ମାଧବଂ ରମିତଂ । ସେ କୃଷ୍ଣ ଅବା କାହାର ସଙ୍ଗେ ରମୁଛି । ଜନାର୍ଦ୍ଦନକୁ ଏମନ୍ତ ପ୍ରାପ୍ତେ ମର୍ଣ ଦୃଷ୍ଟବନ୍ତ ଦେଖିଲା ପ୍ରାୟେ କରି ଏମନ୍ତ କଥା ବୋଲୁଛନ୍ତି ।

**ଗୀତ**

(ବସନ୍ତରାଗେଣ ଗୀୟତେ)

**ସ୍ମରସମରୋଚିତବିରଚିତବେଶା ।**
**ଗଳିତକୁସୁମଦରବିଲୁଳିତକେଶା ।**
**କାପି ମଧୁରିପୁଣା ବିଳସତି ଯୁବତିରଧିକଗୁଣା ॥ ୧ ॥**

(ଧ୍ରୁବପଦମିଦମ୍) ॥ ୧ ॥

ରାଧା ବୋଲୁଛନ୍ତି— ହେ ଦୂତି, ତୋତେ ଦେଖି ମୁଁ ଏମନ୍ତ ପ୍ରାୟେ ମଣୁଛି । କାପି ଅଧିକ ଗୁଣା ଯୁବତୀଃ । ମଧୁରିପୁଣା ବିଳସତି । ସେ କୃଷ୍ଣ ସଙ୍ଗେ କେ

---

୧-କ. ତ୍ରିତଲତା
୨-ଖ. ହୋଇଛନ୍ତି ।
୩-କ. ଓ ମଧ୍ୟାନ୍ତି

ଅବା ଗୋପନାଙ୍କ ବିଳାସ କରୁଛି । ସେ ଅବା ମୋ ଠାରୁଁ ଅଧିକ ଗୁଣୀ ଅଟଇ । ଅବଶେଷ କଳାରେ ଅଧିକ ଅଟଇ । ସେ ହାଦେଂ ସ୍ମରସମରେ ଉଚିତବରଚିତ-ବେଶା । ସ୍ମର ଯେ କନ୍ଦର୍ପ ତାହାର ରଣରଣ ଯେ ଶୃଙ୍ଗାର ରସ । ସମର ଉଚିତକ ଉଚିତ ବେଶ ବିରଚିତ ହୋଇଛି । ନାନା ଅଳଙ୍କାର ଯେହ ଯୋଦ୍ଧା ଯେମନ୍ତ ସମରକୁ ଶସ୍ତ୍ରମାନ ଯେହ ସଜ ହୋଇ ସେନ୍ନ୍ୟମନ୍ତ ବେଶ ହୋଇଛି । ପୁଣି ସେ କେମନ୍ତ ଅଟଇ । ଗଳିତକୁସୁମଦରବିଲୁଳିତକେଶା । ତାହାର କେଶ ଯେ କବରୀ ସେ ଦର ବିଲୁଳିତ । ଅଳ୍ପ ଫିଟିଲା ହୋଇ ଗଳିତ କୁସୁମ ଠାରୁଁ ଗଳି ପଡ଼ୁଛି କୁସୁମ ମାଳା ଏମନ୍ତ କେଶ-ବେଶ ତାହାର ହୋଇଛି ।

[୧]ହରିପରିରମ୍ଭଣବଲ୍ଲିତବିକାରା ।
କୁଚକଳଶୋପରି ତରଳିତହାରା ॥ ୨ ॥

ହେ ସଖି, ପୁନରପି ତାହାର ଅଧିକ ଗୁଣ କହିବା ଶୁଣ । ହରି ଅଟେରମ୍ଭଣ ହରିଙ୍କ ଆଲିଙ୍ଗନ କରିବାକୁ ବଳିତ ବିକାର । ବଳିଛି କାମ ବିକାର କାମ ବାଞ୍ଛା ତାହାର । ସେ ପୁଣି କେମନ୍ତ ଅଟଇ । କୁଚ କଳଶୋପରି ତରଳିତ ହାର । କୁଚ କଳଶ ଉପରେ ତରଳ ସନ୍ଧିତ ମୁକ୍ତାହାର ଶୋଭା ପାଉଛି ।

ବିକଚଜଳଦଲଲଳିତାନନଚନ୍ଦ୍ରା ।
ତଦଧରପାନରଭସକୃତତନ୍ଦ୍ରା ॥ ୩ ॥

ହେ ସଖି, ପୁଣି ସେ କେମନ୍ତ ଅଟଇ । ବିକଶିତ ପଦ୍ମବତ୍[୨] । ଲଳିତ ଶୋଭନ ଅଟଇ ଆନନ ମୁଖ ଚନ୍ଦ୍ର ତାହାର । ପୁଣି କେମନ୍ତ ଅଟଇ । ତଦଧରପାନଃ ତସ୍ୟାଧରପାନାର୍ଥଂ ରଭସ ବେଗେନ କୃଷ୍ଣକୃତ ଚୁମ୍ବନ ପାନ ତନ୍ଦ୍ରାମୁଦ୍ରଂ ତସ୍ୟାଃ । ବିଳାସରେ କୃଷ୍ଣ ତାହାର ମୁଖ ଚୁମ୍ବନ କରିବାରେ ଉପ୍ତ କରି ତନ୍ଦ୍ରାଃ ପ୍ରମୀଳିତ ହୋଇଛି ମୁଖ ତାହାର । -

ଚଞ୍ଚଳକୁଣ୍ଡଳଲଳିତକପୋଳା
ମୁଖରିତରସନଜଘନଗଚ୍ଛଲୋଳା ॥ ୪ ॥

ହେ ସଖି, ଚଞ୍ଚଳ ହୋଇଁ ରହିବାରେ ଲଳିତ ସୁନ୍ଦର ମଣ୍ଡିତ[୩] କୁଣ୍ଡଳ ଯେଉଁମାନେ କରି ବିକଳିଛି କପୋଳ ଦୁଇ ତାହାର । ନାନା କ୍ଷୁଦ୍ର ଘଣ୍ଟିକାମାନ ସୁବର୍ଣ୍ଣ

---

୧-କ. ଦର
୨-ଖ. ଏହି ସ୍ଥାନରେ ଅଛି—
ଲଳିତ ଶୋଭନେନ୍ଦୁମୁଖୀ । ବିକାଶ ହୋଇ ଫୁଟିଲା ଯେ ପଦ୍ମ । ତାହାଙ୍କର ପ୍ରାଏ ।
୩-ନ. ମଣ୍ଡିତ

ଘଣ୍ଟିକା ମାନଙ୍କରେ ଜଡ଼ିତ ଯେ କଟିମେଖଳା ସେ ମୁଖରିତ ଜଘନ ଉପରେ ଗତି ହେଲା ଖେଳିବାରେ ଚଞ୍ଚଳେ କରି ଶବ୍ଦ କରୁଛି ତାହାର ।

**ଦୟିତବିଲୋକିତ[1] ଲଜ୍ଜିତହସିତା**

**ବହୁବିଧକୂଜିତରତିରସରସିତା ।। ୫ ।।**

ହେ ସଖି, ସେ କାମିନୀ ଦୟିତ ଯେ ପ୍ରାଣନାଥ ଶ୍ରୀକୃଷ୍ଣ ତାହାଙ୍କୁ ଚାହିଁକରି ଲଜ୍ଜିତ ଲାଜ ପାଇଁ ହସିତା । ହସୁଛି । ବହୁବିଧ କୂଜିତ ନାନା ପ୍ରକାରେ ଶୃଙ୍ଗାର ଜନିତ ଅବ୍ୟକ୍ତ ଶବ୍ଦ ଦେଇଛି । ଶୃଙ୍ଗାର ରସକୁ ଜାତକଲା । ଅବ୍ୟକ୍ତଃ ପରକୁ ନ ଶୁଭଇ ଶବ୍ଦ କରୁଥାଇ । ଏଣେ ରସିଛି ।

**ବିପୁଳପୁଲକପୃଥୁବେପଥୁଭଙ୍ଗା ।**
**ଶ୍ୱସିତନିମୀଳିତବିକଶଦନଙ୍ଗା ।। ୬ ।।**

ବିପୁଳ ରୋମାଞ୍ଚ ବହୁ କମ୍ପୋଦ୍‌ଗମ ରୋମ ପଂକ୍ତି । ବିପୁଳ ବିସ୍ତାର ପୁଲକ ରୋମୋଦ୍‌ଗମ ବହୁ କମ୍ପନ ଦେହରେ କରି ଭଙ୍ଗୀଭାବ ଯୁକ୍ତା ନିଃଶ୍ୱସନ ଚକ୍ଷୁ ନିମୀଳନ ପ୍ରକାଶମାନ କାମରସିକା । କାମରସ କରି ନିଶ୍ୱାସ ଛାଡ଼ୁଛି । ଚକ୍ଷୁ ଦୁଇ ଅଳ୍ପ ବୁଜି ଅଳ୍ପ କରି ମୁନ୍ଦୁଛି । ବିକଶଦନଙ୍ଗା ବିକାଶ କରୁଛି କାମଦେବ ଦେହରେ ଯାହାର ।

**ଶ୍ରମଜଳକଣଭର[2] ସୁଭଗଶରୀରା**
**ପରିପତିତୋରସି ରତିରଣଧୀରା ।। ୭ ।।**

ହେ ସଖୀ, ମୋ ଏବଂବିଶିଷ୍ଟା ସେ ଏମନ୍ତ ଅଟଇ । ରତି ଖେଦ ସମ୍ପାଦକ ସମ୍ପୂର୍ଣ୍ଣ ସୁନ୍ଦର ଶରୀର ରତିଖେଦରୁଂ ଜାତ ହୋଇଲା ଯେ ଶ୍ରମଜଳ ଘେନିଣ କରି ସୁଭଗ ସମ୍ପୂର୍ଣ୍ଣ ସୁନ୍ଦର ଦିଶୁଛି ଦେହ ତାହାର । ପୁନଃ କିଂ ଭୂତା । ରତି ସଂଗ୍ରାମ ଖେଦଯୁକ୍ତା ସତି କ୍ଲିଷ୍ଟା ଭୂତ୍ୱା କୃଷ୍ଣୋରସି ପତିତା । ସେ ସଂଗ୍ରାମେ ଯୁଝି କରି କୃଷ୍ଣ ହୃଦୟରେ ପଡ଼ୁଛି । ସେଥିକରି ରତିରଣ ଧୀରା ଶୂର ସେ ଅଟଇ ଜିଣିଲା ଭୂମି ମାଡ଼ି ବସିଲା ।

---

୧-କ. ବିଲୋକିତ

୨-କ କଳଭର

**ଶ୍ରୀଜୟଦେବଭଣିତହରିରମିତମ୍ ।**

**କଳିକଳୁଷଂ ଜନୟତୁ ପରିଶମିତମ୍ ॥ ୮ ।**

ଶ୍ରୀ ଜୟଦେବ ବୋଲୁଛନ୍ତି—ହେ ବୈଷ୍ଣବ ଜନମାନେ ଶୁଣ । ଜୟଦେବ ଭଣିତ ଗୀତଂ । ଜୟଦେବ ଭଣିଲ ଏ ଗୀତ । ଏ କେମନ୍ତ ଅଛଇ । ହରି ରମିତଂ । ହରିର ନୀଡ଼ା ରସ ବର୍ଣ୍ଣନା । ଏହା ଶ୍ରବଣ ପଠନ ମାତ୍ରକେ କଳିକଳୁଷ ଯେ କଳି-ଯୁଗାଗ୍ରର ପାପ ତାହା ନାଶ କରନ୍ତୁ । ତଦନନ୍ତରେ[1] ରାଧା ଦୂତୀକି ପୁଣି ଏମନ୍ତ ବୋଲୁଛନ୍ତି । ହେ ସଖି, ଏ ଚନ୍ଦ୍ର ଉଦୟ ହୋଇ ମୋତେ ଯେମନ୍ତ କରୁଛି ତାହା କହିବା ଶୁଣ ।

**ଶ୍ଲୋକ**

**ବିରହପାଣ୍ଡୁମୁରାରିମୁଖାମ୍ବୁଜ—**
**ଦ୍ୟୁତିରୟଂ ତିରୟନ୍ନପି ଚେତନାମ୍ ।**
**ବିଧୁରତୀବ ତନୋତି ମନୋଭୁବଃ**
**ସୁହୃଦୟେ ହୃଦୟେ ମଦନବ୍ୟଥାମ୍ ॥ ୯ ॥**

ଏ ହାଦେ, ଅଚେତନାଂ ତିରୟନ୍ ଆଚ୍ଛାଦୟନ୍ । ମୋହର ଚେତନାକୁ ଝାଙ୍କି କରି । ହୃଦୟେ ମନସି ମନୋଭବ କନ୍ଦର୍ପବ୍ୟଥାଂ । ଅତି ବିତନୋତି । ବିସ୍ତାରୟତି । ବିସ୍ତାର କରୁଛି । ପୁଣି ଏ ଚନ୍ଦ୍ର କେମନ୍ତ ଅଛଇ । ବିରହ ପାଣ୍ଡୁ ମୁରାରି ମୁଖାମ୍ବୁଜଦ୍ୟୁତି । ରାଧାର ବିରହେ କରି ଶ୍ରୀକୃଷ୍ଣର ମୁଖ ଯେମନ୍ତ ଦିଶୁଛି । ସେହିମତ ଏହାର କାନ୍ତି । ଏ ଚନ୍ଦ୍ର ମୋହର ଚିତ୍ତକୁ ଆଚ୍ଛାଦିଲରେ ମୋହର ଧୈର୍ଯ୍ୟ ହେତୁ ବିବେକ ବୁଦ୍ଧି ଏତେ ମାନଙ୍କୁ ଝାଙ୍କି କାମ ଚିନ୍ତାରେ ମନକୁ ବଡ଼ ବ୍ୟଥା କରାଉଅଛି[2] । ଏ ବେଳେ ମନୋଭବ ଯେ କନ୍ଦର୍ପ ତାହାର ସୁହୃଦୟ ମିତ୍ର ଅଟେ ।

---

୧-ଖ. ତଦନନ୍ତରେ

୨-ଖ. କରାଉଛି ।

## ଗୀତ

(ଗୁର୍ଜ୍ଜରୀରାଗେଣ ଗୀୟତେ)

**ସମୁଦିତମଦନେ ରମଣୀବଦନେ ଚୁମ୍ବନବଳିତାଧରେ ।**
**ମୃଗମଦତିଲକଂ ଲିଖତି ସପୁଲକଂ ମୃଗମିବ ରଜନୀକରେ ।**
**ରମତେ ଯମୁନାପୁଳିନବନେ ବିଜୟୀମୁରାରିରଧୁନା ॥ ୧ ॥**

(ଧ୍ରୁବପଦମିଦମ୍)

ରାଧା ବୋଲୁଛନ୍ତି—ହେ ସଖି, ଅଧୁନା ଇଦାନୀଂ ଯମୁନାପୁଳିନବନେ ଯମୁନା ବାଲିକୁଦ ସ୍ଥଳ ଭୂମୀ ମୁରାରି ରମତେ । ହେ ସଖି, ମୁଁ ଜାଣିଲି ଯେବେ ତୋ ବଚନେ ନଇଲେ ତାହାଁର କଥା ଶୁଣ । ସେ କିମ୍ପା ଆସିବେ । ସେ କୃଷ୍ଣ ହୋଇବେ ବିଜୟୀ ରତି ବିଷୟେନ ଜୟନଶୀଳ । ସେ ସମସ୍ତ ରତି ସଂଗ୍ରାମେ ଜୟ କରନ୍ତି । କୁତ୍ରାପି ନ ହୀୟତେ । କେବେ ହେଁ ସେ ନ ହାରନ୍ତି । ଯତୋ ଅଚ୍ୟୁତଃ । ଯେଣୁକରି ସେ ଅଚ୍ୟୁତଃ । ତାହାଙ୍କର ଚ୍ୟୁତ ନାହିଁ । ସେ କୃଷ୍ଣ ଯମୁନାର ଯେ ବାଲିକୁଦ ତାହାଁର ସୁଶପାଖେ ଘୋରବନ । ସେଠାରେ ସ୍ୱଚ୍ଛନ୍ଦ ହୋଇ ରମତେ । ରମଣ କରୁଛନ୍ତି । ଗୋପୀମାନଙ୍କୁ ଘେନି । ମୋତେ କିମ୍ପା ସେ ଲୋଡ଼ିବେ । ସେ ହାଦେ‌ଂ ମୁରାରି ବା ହୋଇଲେ । ପୁଣି ସେ ସ୍ତ୍ରୀମାନେ ତ ସେବା କରନ୍ତି । ଶୁଣ କହିବା । ମୋତେ ଦିଶୁଛି ତାହାଙ୍କର ସେବକ ପଣ । ହାତେ ଏକ ରମଣୀର ବଦନରେ ଚନ୍ଦନ ତିଳକ ଦେଇଁ କରି ମୃଗନାଭି କସ୍ତୁରୀ ଘେନି ତିଳକ ଲେଖୁଛନ୍ତି । ହେ ସଖି ସେ ରମଣୀର ବଦନକୁ କି ଉପମା କରିବା । ସମୁଦିତ ମଦନେ । ସୁବେଶ କରି ସବୁ ପ୍ରକାରେ କାମ ଦେବତା କି ମୁଖ ରୂପେ ଉଦୟ ହୋଇଛନ୍ତି । ପୁଣି ସେ ମୁଖ କେମନ୍ତ ଅଟଇ । ଚୁମ୍ବନାର୍ଥ ଯା ଶତ୍ରୁ ଓଷ୍ଠ ପୂଟେ । ମୁଖ ତୋଳି କୃଷ୍ଣଙ୍କୁ ଚୁମ୍ବନ ଯାଚୁଛି । ଏମନ୍ତ ଯେ ମୁଖ ତାହାଁରେ ଲଲାଟୋପରି ସେ ମୁରାରି ଚନ୍ଦନତିଳକ ଲେଖିଲେ । ସେ ତିଳକ କେମନ୍ତ ଦିଶୁଛି । ପ୍ରବଳସପଦଳକଂ । ଷୁଦ୍ର କୁନ୍ତଳସ୍ୟ । ଶୋଭାୟୁକ୍ତଂ କୁଟିଳ କୁନ୍ତଳା ମାନଙ୍କର ତଳେଂ ହାର୍ଦ୍ଦି ହୋଇଁ ବଡ଼ ଶୋଭା ପାଇଲା । ସେ ତିଳକକୁ ପଟାନ୍ତର କରିବା । ମୃଗମିବ ରଜନୀକରେ । ରଜନୀକର ଯେ ଚନ୍ଦ୍ର ତାହାଁର ମୃଗ ଲାଞ୍ଛନ ଯେମନ୍ତ ଦିଶଇ । ଏବେ ହେ ସଖି ସେ ମୁରାରି ତାହାଙ୍କୁ ଯେମନ୍ତ କରି ସେବା କରୁଛନ୍ତି ତାହା ଶୁଣ ।

**ଘନଚୟରୁଚିରେ ରଚୟତି ଚିକୁରେ ତରଳିତତରୁଣାନନେ ।**
**କୁରୁବକକୁସୁମଂ ଚପଳାସୁଷମଂ ରତିପତିମୃଗକାନନେ ।। ୨ ।।**

ହେ ସଖି, ଘନଚୟ ଯେ ମେଘ ସମୂହ ତାହାର ପ୍ରାୟେ କଳା ଅଟଇ । (ଯେ ଚିକୁରେ ତାହାର) [1] ତହିଁରେ କବରୀ ରଚୟତି । କବରୀ ଯେ ଖୋସା ତାହାର ରଚନା କରୁଛି । ସେ କବରୀ କଳାରେ ତାହାର ମୁଖ ତରଳିତ ତରଳାନନେ କାମ ଚକିତ ପୁଷ୍ପ ଚଞ୍ଚଳ ମୁଖ କାଂକ୍ଷିତେ ଅତ୍ୟନ୍ତ କାମ ଆଶକ୍ତେ କରି ଚଞ୍ଚଳ ହୋଇଁଛି । ସେ ଖୋସା ଉପରେ କୁରୁବକ କୁସୁମଂ କୁରୁବକ କୁସୁମ ଯେ ହଳଦିଆ ଝିଣ୍ଟି ତହିଁ ହଳଦିଆ ଯେ ଅମ୍ଳାନ ଅଁଳା ପୁଷ୍ପ ତାହାରୁ ସମ୍ବନ୍ଧେ ମାଳା ଗୁନ୍ଥି କରି ଉପରେ ବେଢ଼ାଇଁ ବାନ୍ଧିଲାରେ ଯେମନ୍ତ ଦିଶିଲା କି ପଟାନ୍ତର କରିବା । ଚପଳା ସୁଷମଂ । ବିଦ୍ୟୁଦଧିକଶୋଭନଂ । ବିଜୁଳିହୁଁ ଅଧିକ ଶୋଭା ପାଇଲି । କଳା ମେଘରେ ବିଜୁଳି ଯେମନ୍ତ । ପୁଣି ସେ କବରୀକି କି ପଟାନ୍ତର କରିବା । ରତିପତି ମୃଗ-କାନନେ । ରତିପତି ଯେ କାମ ତାହାର ମୃଗୟା କରିବାର କାନନ କି ସେ କାମ ଦେବତାର କ୍ରୀଡ଼ାବନ ।

**ଘଟୟତି ସୁଘନେ [2] କୁଚଯୁଗଗଗନେ ମୃଗମଦରୁଚିରୁଷିତେ ।**
**ମଣିସରମମଳଂ ତାରକପଟଳଂ ନଖପଦଶଶିଭୂଷିତେ ।। ୩ ।।**

ହେ ଦୂତି, ସେ କୃଷ୍ଣ ବଡ଼ କାମବଶ ହୋଇଁ ସେ ରମଣୀର ଦୁଇସ୍ତନ ଉପରେ ମଣିସରମମଳଂ ଘଟୟତି । ମଣିମୟ ସ୍ୱଚ୍ଛ ମୁକ୍ତାମାଳ ଦେଉଁଛି । ସେ ମୁକ୍ତା-ମାଳା କେମନ୍ତ ଦିଶୁଛି । ତାରକ ପଟଳଂ । ତାରାପନ୍ତି ଯେମନ୍ତ ବିରାଜଇ ସେହିମନ୍ତ ଅତ୍ୟନ୍ତ ନିର୍ମଳ ହୋଇ ସୁନ୍ଦର ଦିଶୁଛି । ତାହାର ଦୁଇ ସ୍ତନକୁ କି ପଟାନ୍ତର କରିବା । ସୁଘନେ । ସୁନ୍ଦର ବର୍ତ୍ତୁଳ ଘନ ନିବିଡ଼ । ପୁଣି କେମନ୍ତ ଅଟଇ (ଗଗନେ । ଉଚ୍ଚ ଅଟଇ । ଉପରକୁ ମୁଖ କରିଛି ଗଗନକୁ । ଏଣୁକରି ଗଗନେ ଦ୍ୱିବଚନାନ୍ତଂ ପଦଂ । ପୁଣି ସେ କୁଚ କେମନ୍ତ ଅଟଇ ।) [3] ମୃଗମଦ ଯେ କସ୍ତୁରୀ ସେ ଲେଖନ ହୋଇଛି । ସ୍ୱଭାବେଂ ସ୍ୱର୍ଣ୍ଣ ବର୍ଣ୍ଣ ଅଟଇ । ପୁଣି କି ପଟାନ୍ତର କରିବା । ନଖପଦ ଶଶି ଭୂଷିତେ । ନଖରେଖ ସ୍ଥାନ ଚନ୍ଦ୍ର ଶୋଭେ । ଶ୍ରୀକୃଷ୍ଣର ନଖ ସେ କୁଚରେଂ ପୂର୍ବେ ଲାଗିକରି ତହିଁ ଚନ୍ଦ୍ର ପ୍ରାୟେ ଶୋଭା ପାଉଁଛି । ଦ୍ୱିତୀୟା ଚନ୍ଦ୍ର ଯେମନ୍ତ ସେହିମନ୍ତ ନଖକ୍ଷତ ଚିହ୍ନ ଭୂଷଣ ହୋଇଛି ।

---

୧-ଖ. ଯେ ତାହାର ଚିକୁର

୨-କ. ଖ. ଜଘନେ

୩-କ.ରେ ନାହିଁ ।

**ଜିତବିସଶକଳେ[1] ମୃଦୁଭୁଜଯୁଗଳେ କରତଳନଳିନୀଦଳେ**
**ମରକତବଳୟଂ ମଧୁକରନିଚୟଂ ବିତରତି ହିମଶୀତଳେ ॥ ୪ ॥**

ହେ ସଖି, ମୃଦୁତପ୍ତ ଜିତପଦ୍ମନାଳ ଖଣ୍ଡେ ଅଟନ୍ତି କୋମଳ ମୃଣାଳ ଖଣ୍ଡର ପ୍ରାୟ ମୃଦୁ ଭୁଜ ଯୁଗଳେ କୋମଳ ଭାବେ କରି ଜିଣିଲା । ମୃଣାଳ ଖଣ୍ଡକୁ ଯେ ଭୁଜ ଯୁଗ ତାହାର । ପୁଣି କରତଳ ଯେ ଦୁଇ ହସ୍ତ ତଳ ସେ ନଳିନୀ ଦଳେ । ପଦ୍ମ ପତ୍ରର ପ୍ରାୟେ ଚିକ୍କଣ ସ୍ନିଗ୍ଧ ଅଛି ।

**ରତିଗୃହଜଘନେ ବିପୁଳାପଘନେ ମନସିଜକନକାସନେ**
**ମଣିସରରସନଂ ତୋରଣହସନଂ ବିକରତି କୃତିବାସନେ[2] ॥ ୫ ॥**

ହେ ସଖି, ସେ ରମଣୀର ଦୁଇ ଜଘନକୁ ବର୍ଣ୍ଣିବା ଶୁଣ । ରତିଗୃହ ଜଘନେ ମୈଥୁନ ଯୋଗ୍ୟ ଯାନୁଦ୍ୱୟ ମଧ୍ୟେ । କିଂ ଭୂତେ । ବିପୁଳାପଘନେ । ବିପୁଳ ବଳିତା-ଘନ ନିବିଡ଼ ସୁନ୍ଦରେ । ପୁନଃ କିଂ ଭୂତେ । ମନସିଜ କନକାସନେ କାମରାଜସ୍ୟ ସୁବର୍ଣ୍ଣ ସିଂହାସନେ । ଏମନ୍ତ ଯେ ଯାନୁଦ୍ୱୟ ଯୁକ୍ତ କଟିଭାଗ ତହିଁରେ ମଣିସର ସ୍ୱଚ୍ଛ ମୁକ୍ତା ରତ୍ନ କଟିମେଖଳାଂ ବିକରନ୍ତି । ତାହାର ଅଭାବରେ ରତ୍ନ କଟିମେଖଳା ବୋଲି ବସ୍ତ୍ର ପରିଧାନ କରାଉଛନ୍ତି ।

**ଚରଣକିଶଳୟେ କମଳାନିଳୟେ ନଖମଣିଗଣପୂଜିତେ ।**
**ବହିରପବରଣଂ ଯାବକଭରଣଂ ଜନୟତି ହୃଦି ଯୋଜିତେ ॥ ୬ ॥**

ହେ ସଖି, କୋମଳ ପଦ୍ମ ପତ୍ର ପ୍ରାୟେ ଯେମନ୍ତ ସୁନ୍ଦର ଯାହାର ଚରଣ ସେହିମତ ଦିଶୁଛି । ପୁଣି କି ପଟାନ୍ତର କରିବା ଚରଣକୁ । ନଖମଣିଗଣ ପୂଜିତେ । ସେ ଚରଣ ଆଙ୍ଗୁଳି ଅଗ୍ରେ ନଖମାନେ ମାଣିକ୍ୟ[3] ପ୍ରାୟେ ଦିଶୁଛନ୍ତି । ତୈର୍ନଖୈଃ ପୂଜିତେ । ସେ ନଖମାନଙ୍କରେ କରି କି ପୂଜିତ ମଣ୍ଡିତ ହୋଇଛି ଚରଣ । ଏମନ୍ତ ଚରଣକୁ ଆପଣାର ହୃଦ ଯୋଜନେ ହୃଦପୁରେ ଲଗାଉଛନ୍ତି । ସେ ହୃଦୟ ତାହାର[4] କେମନ୍ତ ଅଛଇ । କମଳା ନିଳୟେ । କମଳା ଯେ ଲକ୍ଷ୍ମୀ ତାହାଙ୍କର ଘର ଅଟଇ ସେ ହୃଦପୁରେ ଲଗାଇ କରି ସେ ନଖମାନଙ୍କ ଉପରେ ପାଖେ ବେଢ଼ାଇ କରି ଯାବକ-ଭରଣଂ ଉପବରଣଂ ଜନୟନ୍ତି । ଯାବକ ଯେ ଅଳତା ରସ ତାହା ଆଭରଣ କରୁଛନ୍ତି ହେ ସଖି ଦେଖ ମୋ ମନରେ ଦାରୁଣ କଥା । ଯେ ହୃଦପୁରେ କମଳା ଘର କରି ରହିଛି । ତହିଁ ଉପରେ ତାହାର ଦୁଇ ପାଦ ଦେଇ ଅଳତା ଦେଉଛି ।

---

୧-ଖ. ୦ବିଷପକଳେ
୨-କ. ବାସନେ
୩-ଖ.ରେ ଅଧିକ 'ମାନର'
୪-ଖ. ତାହାଙ୍କର

**ଧ୍ୟାୟତି ସଦୃଶଂ କାମପି ସୁତନୁଂ ଖଳୁ ହଳଧରସୋଦରେ ।**
**କମଫଳମବସଂ[1] ଶରମିହ ବଳସଂ ବଦ ସଖି ବଟପୋଦରେ ॥ ୭ ॥**

ହେ ସଖି, କୃଷ୍ଣଙ୍କୁ ମୁଁ କି ବୋଲିବି । ସେ ଗୋପୀଙ୍କ ଏମନ୍ତ ସଙ୍ଗ କରୁଁ କରୁଁ ତାହାଙ୍କୁ ଗୁହ୍ମିକରି ସଦୃଶଂ ତସ୍ୟାଃ ସଦୃଶଂ କାମପି ନାୟିକାଂ ଧ୍ୟାୟନ୍ତି । ମୋହର ସଦୃଶୀ ଆଉ ନାୟିକା ସୁନ୍ଦରୀ ଅଛି କି ? ଏମନ୍ତ ବିଚାରି ସମସ୍ତ ଗୋପୀମାନଙ୍କୁ ଗୁହ୍ମୁଁଛନ୍ତି । ସୁତନୁଂ । ଅତି ଭ୍ରମ ପାଇଁ ତାହାଙ୍କୁ ଆଉ କି ବୋଲିବା । ସେ 'ଯେମନ୍ତ ଅଟନ୍ତି ତୁ କି ନ ଜାଣୁ । ଯେ ଖଳୁ ନିର୍ଣ୍ଣିତଂ ହଳଧର ସୋଦର ତସ୍ୟ ସେ ହଳଧର ନିରନ୍ତରେ କାଦମ୍ବରୀ ଖାଇଁ ଭୋଳ ହୋଇଥାନ୍ତି । ଏ କୃଷ୍ଣ ତାହାଙ୍କର ଭାଇ ନୁହନ୍ତି କି ? ଏ କୃଷ୍ଣର ଭୋଳ ଭ୍ରମ ହୋଇବାକୁ କି କଥା । ପୁନସ୍ତସ୍ମିନ୍ କୃଷ୍ଣଃ କିଂ ବିଚାରଣୀୟଂ । ଅବଶଂ କମଫଳଂ । କାହାରି ବଶ ନୋହିବା କି ଅଫଳ । ଆପଣାରଂ ଆୟତ୍ତ ହୋଇଥିଲେ ସବୁ କାର୍ଯ୍ୟରେ ଫଳ କି ନପାଇ । ପରବଶ ହୋଇ ଥିବାରୁ ଏହି ଫଳ । ହେ ସଖି ବଦ କହ ତ । ଏ ବଟପୋଦରେ ଏ ବନ ବୁଦା ଭିତରେ ଥିବାର ଆଉ କି ପ୍ରୟୋଜନ । ଏଥର ବିଳାସ ଭୋଗ ଏ ଦୁଃଖିନି ଏବେ କି କରିବା କହ ତ ।

**ଇହ ରସଭଣନେ କୃତହରିଗୁଣନେ ମଧୁରିପୁପଦସେବକେ ।**
**କଳିଯୁଗଚରିତଂ ନ ବସତୁ ଦୁରିତଂ କବିନୃପଜୟଦେବକେ ॥ ୮ ॥**

ଜୟଦେବ କବି କହୁଅଛନ୍ତି[2] ହେ ବୈଷ୍ଣବଜନମାନେ ଶୁଣ । ଇହ ରସଭଣନେ[3] । ଗୋବିନ୍ଦର ଶୃଙ୍ଗାର ରସ ଭକ୍ତି ରସ ଭଣନା ଏ । କିଂ ଭୂତେ । ଏ ଶୃଙ୍ଗାର ରସ ଭକ୍ତି ରସ କେମନ୍ତ ଅଟଇ । କୃତ ହରି ଗୁଣନେ । ବିହିତ କୃଷ୍ଣାନୁସ୍ମରଣେ ନିରନ୍ତରେ କୃଷ୍ଣର ଗୁଣମାନଙ୍କରେ ଅନୁସ୍ମରଣା ଏଥେ ଅଛନ୍ତି । ସେ ଜୟଦେବ କେମନ୍ତ ଅଟଇ । ମଧୁରିପୁ ପଦ ସେବକେ ଶ୍ରୀକୃଷ୍ଣର ପାଦ ପଦ୍ମର ସେବକ ଅଟଇ । ଏ ଗୀତ ସ୍ମରଣ ଗାୟନ କଲ ପ୍ରାଣୀମାନଙ୍କ କଳି ଯୁଗ ଚରିତଂ ଦୁରିତଂ ନ ବସନ୍ତୁ । କଳି ଯୁଗର ଆଚରଣ ଯେ ଦୁରିତ ସେ ନ ଲାଗଇ । କବି ନୃପ ଜୟଦେବଙ୍କ । କବିରାଜ ଜୟଦେବଙ୍କର ବଚନେ ।

---

୧-କ. ଖ. ୦ମନସଂ
୨-ଖ. ବୋଲୁଛନ୍ତି
୩-କ. ଭଣନେ ।

**ଶ୍ଳୋକ**

**ନାୟାତଃ ସଖି ନିର୍ଦ୍ଦୟୋ ଯଦି ଶଠସ୍ତ୍ୱଂ ଦୂତି କିଂ ଦୂୟସେ**
**ସ୍ୱଚ୍ଛନ୍ଦଂ ବହୁବଲ୍ଲଭଃ ସ ରମତେ କିଂ ତତ୍ର ତେ ଦୂଷଣମ୍ ।**
**ପଶ୍ୟାଦ୍ୟ ପ୍ରିୟସଙ୍ଗମାୟ ଦୟିତସ୍ୟାକୃଷ୍ୟ ମାଣଂ ଗୁଣୈ—**
**ରୁତ୍କଣ୍ଠାର୍ତ୍ତିଭରାଦିବ ସ୍ଫୁଟଦିଦଂ ଚେତଃ ସ୍ୱୟଂ ଯାସ୍ୟତି ॥ ୭ ॥**

ଅଥାନନ୍ତରେ ରାଧା ବୋଲୁଛନ୍ତି, ହେ ସଖି ଏଥି ବସି ଆଉ କି କରିବା। ନାୟାତଃ ସଃ । ସେ କୃଷ୍ଣ ତ ଏତେବେଳେହେଁ ନ ଆସିଲେ । ଯେଣୁ ନିର୍ଦ୍ଦୟଃ ହେ ସଖି ଦୟା ରହିତ ସେ କୃଷ୍ଣ ନିର୍ଦ୍ଦୟ ଦୟା ତାହାଙ୍କୁ ବଶ କରି ନ ପାରଇ । ଯତୋ ମାଧବଃ । ଯେଣୁ କରି ନିର୍ଲେପ ନିରଞ୍ଜନ ଅଟନ୍ତି । ଯଦି ଶଠଃ ଯଦ୍ୟପି ମନ୍ଦ କପଟ ସ୍ୱଭାବଃ ସ । ତଥାପି ତ୍ୱଂ କିଂ ଦୂୟସେ ପରିତାପ୍ୟସେ । ତୁ କିମ୍ପା ଏମାନ କହିଁ ପରିତାପ କରୁଁ । ତୋହର କି ଦୋଷ । ସେ ହାବେଂ ସ୍ୱଚ୍ଛନ୍ଦଃ । ନ କସ୍ୟାପି ବଶଃ । ସେ କାହାର ହିଁ ବଶ ନୋହନ୍ତି । ଯତୋ ବହୁ ବଲ୍ଲଭଃ ସମସ୍ତ ଜନମାନଙ୍କର [୧] ପ୍ରାଣ ବଲ୍ଲଭଃ ସ ରମତେ । ସେ ହାବେ ଆତ୍ମାରାମ । ସମସ୍ତ ଜନମାନଙ୍କର ଦେହରେଂ କ୍ରୀଡା କରୁଅଛନ୍ତି କିଂ ତତ୍ର ତେ ଦୂଷଣଂ । ତହିଁରେ ତୋହର କି ଦୋଷ। ଅଦ୍ୟ ପଶ୍ୟ ପଶ୍ୟ । ଏବେ ମୋତେ ଗୁହାଁ ତ । ମୁଁ ପ୍ରିୟ ସଙ୍ଗମାୟ କୃଷ୍ଣର ସଙ୍ଗେ ମିଳିବା ପାଇଁ ଦୟିତସ୍ୟ ବାସୁଦେବସ୍ୟ ମୋହର ପ୍ରିୟ ଯେ ବାସୁଦେବ ସେ ଗୁଣୈରାକୃଷ୍ୟମାଣଂ ତାହାଙ୍କର ଗୁଣମାନେ ମୋହର ମନକୁ ଆକର୍ଷି ନେଉଛନ୍ତି । ତେଣୁ କରି ମୋହର ଚିତ୍ତ ଉତ୍କଣ୍ଠାର୍ତ୍ତିଭରାତ୍ ସ୍ଫୁଟିତେବ କୃଷ୍ଣଂ ପ୍ରତି ଯାସ୍ୟତି । ଅନ୍ୟେନ ହୋଇଁ କୃଷ୍ଣର ତହିଁକି ମନ ମୋହର ସ୍ୱୟଂ ଯାସ୍ୟତି । ଆପଣା ଇଚ୍ଛାରେ ଯାଉଛି । ମୁଁ କି କରିବି ।

**ଗୀତ**

(ଦେଶୀବରାଡିରାଗେଣ ଗୀୟତେ)

**ଅନିଲତରଳକୁବଲୟନୟନେନ ।**
**ତପତି ନ ସା କିଶଳୟଶୟନେନ ।**
**ସଖି ଯା ରମିତା ବନମାଳିନା ॥ ୧ ॥**

( ଧ୍ରୁବପଦମିଦମ୍ )

ହେ ଦୂତି, ଶ୍ରୀକୃଷ୍ଣେନ ସହ ଯା ଗୋପୀ ରମିତା କୃଷ୍ଣର ସଙ୍ଗେ ଯେ ଗୋପୀ ରମିଲା ତାହାର ଭାଗ୍ୟ ଧନ୍ୟ । ସେ ବନମାଳୀ କେମନ୍ତ ଅଟନ୍ତି । ଅନିଲ ଯେ ପବନ

[୧]-ଖ. ଜନ୍ତୁମାନଙ୍କର

ସେ ପବନେ କରି ଚଞ୍ଚଳ ହୋଇଲା । କୁବଳୟ କୁମୁଦ ସେହିମନ୍ତ ତାହାର ନୟନ । ସେ ବନମାଳୀର ସଙ୍ଗେ ଥାଇଁ କରି କଳେୟ ଶୟନେ ପଡ଼ନ୍ତି । ସେ କାମିନୀ ବନମାଳୀକ ପାଇଁ କଣଳୟ ସେ କୋମଳ ପତ୍ର ଶଯ୍ୟା ଦେଖି ସେ ଆଉ ନ ପଡ଼ନ୍ତି । ନ ମୋହଂ ଯାନ୍ତି । ସେ ଆଉ ମୋହ ନ ଯାଇଁ ମୁଁ ଯେମନ୍ତ କୃଷ୍ଣଙ୍କୁ ନ ପାଇଁ ମୋହେ ହେଉଛି ସେ ତେମନ୍ତ ନୋହଇ ।

**ବିକଶିତସରସିଜଲଳିତମୁଖେନ ।**
**ସ୍ଫୁଟତି ନ ସା ମନସିଜବିଶିଖେନ ॥ ୨ ॥**

ହେ ସଖି, ବିକାଶ ହୋଇଁ ଫୁଟିଲା ସେ ସରସିଜ ପଦ୍ମ ତାହାର ପ୍ରାୟ ଲଳିତ ସୁନ୍ଦର ଅଟଇ ମୁଖ ଯାହାର । ଏମନ୍ତ ସେ ବନମାଳୀ ତାହାଙ୍କର ସଙ୍ଗେ ଥିଲାକୁ ସେ କାମିନୀ ମନସିଜ ବିଶିଖେନ ନ ସ୍ଫୁଟନ୍ତି । ସେ କାମବାଣେ କରି ସେ କ୍ଷତ ହୋଉଛି ।

**ଅମୃତମଧୁରମୃଦୁତରବଚନେନ ।**
**ଜ୍ୱଳତି ନ ସା ମଳୟଜରଚନେନ ॥ ୩ ॥**

ଅମୃତବତ୍ ମଧୁରକୋମଳ ବଚନ ଯାହାର ଏମନ୍ତ ବଚନ ବନମାଳୀ ଯାହାକୁ ରମୁଛନ୍ତି ସେ । ମଳୟଜ ରଚନେନ । ଚନ୍ଦନ ଲେପନେନ ଦେହେନ ନ ଜ୍ୱଳନ୍ତି । ନ ସନ୍ତାପୟନ୍ତି । ସେ ଦେହରେ ଚନ୍ଦନ ଲେପନ କରନ୍ତେ ଜ୍ୱାଳା ନ ପାଉଁଛି ।

**ସ୍ଥଳଜଳରୁହରୁଚିକରଚରଣେନ ।**
**ଲୁଠତି ନ ସା ହିମକରକିରଣେନ ॥ ୪ ॥**

ହେ ସଖି, ସ୍ଥଳଭୂମିରେ ଥାଏ ସେ ଜଳରୁହ । ସ୍ଥଳ କମଳ ପୁଷ୍ପ ତାହାର ସେ ରୁଚି ଶୋଭା ସେହିମନ୍ତ ଅଟଇ । ସେ କୃଷ୍ଣର କର ଚରଣ ସେ ବନମାଳୀ ଅଙ୍ଗ ସଙ୍ଗେ ଥିବାରୁ[୧] ସା ହିମକରକିରଣେନ ଶୀତାଂଶୁରଶ୍ମିନା ନ ଲୁଠନ୍ତି[୨] । ସେ ହିମକର ସେ ଚନ୍ଦ୍ର ତାହାର କିରଣେ କରି ସେ ନ ଲୁଠନ୍ତି[୩] । ନ ପଡ଼ୁଛି ।

---

୧-ଖ. ଥିବାକୁ
୨-ଖ. ଲୁଳତି
୩-ଖ. ଲୁଳତି

**ସଜଳଜଳଦସମୁଦୟରୁଚିରେଣ ।**
**ଦଳତି ନ ସା ହୃଦି ବିରହଭରେଣ ॥ ୫ ॥**

ହେ ସଖି, ଜଳ ସହିତ ଯେ କଳାମେଘ ସେ ମେଘର ସମୂହ ଯେମନ୍ତ ସୁନ୍ଦର ସେହିମତ ରୁଚିର ଶୋଭା ଯେ କୃଷ୍ଣର ଦେହ ସେ କୃଷ୍ଣଙ୍କୁ ହୃଦୟେ ଲଗାଇଁ କରି ସେ ରମଣୀ ବିରହଭରେଣ ନ ଦଳନ୍ତି । କୃଷ୍ଣସ୍ୟାଧିକକାଳବର୍ତ୍ତନେନ ନ ତସ୍ୟା ହୃଦୟଂ ଦଳତି । ନ ବଶୀଯଁତ୍ତେ । ହାଦେ ଶ୍ରୀକୃଷ୍ଣ ବିୟୋଗକାଳ ବିଳମ୍ବେ କରି ମୋହର ହୃଦୟ ଯେମନ୍ତ କାମ କୋପରେ ବିଦାରି ହୋଇଁ ବ୍ୟାକୁଳ ହେଉଁଛି ତାହାର ତେମନ୍ତ ନୋହଇ ।

**କନକନିକଷରୁଚିଶୁଚିବସନେନ**
**ଶ୍ୱସିତି ନ ସା ପରିଜନହସିତେନ ॥ ୬ ॥**

କନକ ନିକଷ ଯେ ସୁବର୍ଣ୍ଣ ସମୂହ ତଦ୍‌ବତ୍ ସେହିମତ ରୁଚି ଶୋଭା ଶୁଚି ପବିତ୍ର ବସନେନ ବନମାଳିନା । ଏମନ୍ତ ବସ୍ତ୍ର ପିନ୍ଧିକରି ବନମାଳୀ ଯାହାକୁ ରମୁଛନ୍ତି ସେ ରମଣୀ ପରିଜନ ସେବକ ଜନ ହସିତେନ ପରିହାସ ବଚନେନ[1] ନ ଶ୍ୱସନ୍ତି । ବ୍ୟଗ୍ରଂ ନିଶ୍ୱାସଂ ନ ବିସ୍ତାରୟନ୍ତି । ପରିବାରି ଜନ ମାନଙ୍କର ବାକ୍ୟପରିହାସ୍ୟେ ସେ କରି ବିଷାଦ ନିଶ୍ୱାସ ମାନଙ୍କୁ ନ ଛାଡୁଛି ।

**ସକଳଭୁବନଜନବରତରୁଣେନ**
**ବହତି ନ ସା ରୁଜମତିକରୁଣେନ ॥ ୭ ॥**

ହେ ସଖି, ସକଳ ଜଗତଜନାଶ୍ରେଷ୍ଠ ତରୁଣେନ କରୁଣେନ ଚ ବନମାଳିନା ହେ ସଖି ସକଳ ଚତୁର୍ଦ୍ଦଶ ଭୁବନ ସ୍ଥିତ ଯେ ଜନମାନେ ତାହାଙ୍କର ମଧ୍ୟେ ଶ୍ରେଷ୍ଠ ତରୁଣ ସୁନ୍ଦର । କରୁଣ । କରୁଣା ସମ୍ପନ୍ନ ଯେ ବନମାଳୀ ସଙ୍ଗେ ଯେ ରମଣୀ କ୍ରୀଡ଼ା କରୁଛି ସେ ଅତି କରୁଣେନ ଦୟା ବଚନେନ ରୁଜଂ ସନ୍ତାପଂ ନ ବହନ୍ତି । ନ ପ୍ରାପ୍ନୋତି । ରୁଜ ଯେ ସନ୍ତାପ ତାହା ନ ପାଉଁଛି ।

**ଶ୍ରୀଜୟଦେବଭଣିତବଚନେନ**
**ପ୍ରବିଶତୁ ହରିରପି ହୃଦୟମନେନ ॥ ୮ ॥**

ଜୟଦେବ କବି ବୋଲୁଛନ୍ତି, ହେ ବୈଷ୍ଣବ ଜନମାନେ ଶୁଣ । ମମ ଭଣିତଂ ବଚନଂ । ମୋହର କହିଲା ବଚନ ଏ । ଏତଦ୍‌ନେନ । ଏହା ମନରେ

---

୧-ଚ.ରେ 'ପରିହସନ ବଚନେନ' ନାହିଁ

ମଣିକର ରମନ୍ତ ଯେ ପ୍ରାଣୀମାନେ ସେ ପ୍ରାଣୀମାନଙ୍କର ହୃଦୟରେ ଦଶଃ ପ୍ରବେଶନ୍ତୁ । ଶ୍ରବଣ ବଚନ ମନ ଧ୍ୟାନ ଜ୍ଞାନେ କରି ପ୍ରବେଶ ହେଉ ।

**ଶ୍ଳୋକ**

**ମନୋଭବାନନ୍ଦନ ଚନ୍ଦନାନିଳ ପ୍ରସୀଦ ରେ ଦକ୍ଷିଣ ମୁଞ୍ଚ ବାମତାମ୍ ।**
**କ୍ଷଣଂ ଜଗତପ୍ରାଣ ବିଧାୟ ମାଧବଂ ପୁରୋ ମମ ପ୍ରାଣହରୋ ଭବିଷ୍ୟସି ॥୭ ॥**

ଅଥାନନ୍ତରେ ରାଧା ପବନ ଦେବତାଙ୍କୁ ବୋଲୁଛନ୍ତି ହେ ମନୋଭବାନନ୍ଦନ ତ୍ୱଂ ପ୍ରସୀଦ ପ୍ରସନ୍ନୋଭବ । ହେ ପବନ ତୁ ମୋତେ ପ୍ରସନ୍ନ ହୁଅ । ତୋହର ମହିମା କ କହିବା । ତୁ କେମନ୍ତ ଅଛୁ । କନ୍ଦର୍ପର ସଖା ତୁ । ସେ କାମ ତୁ ଆନନ୍ଦ କରାଉ । ଆପଣା ତୁ ଚନ୍ଦନାନିଳ । ମଳୟ ପବନ ଅଛୁ । ତୁ ମୋତେ ପ୍ରସନ୍ନ ହୋଇ ଏମନ୍ତ କର । ଦକ୍ଷିଣ ମୁଞ୍ଚ ବାମତାଂ ଅଦ୍ୟ ଦକ୍ଷିଣ ବାମର ବର୍ତ୍ତି ଧୀର ଦକ୍ଷିଣଂ ମୁଞ୍ଚ । ତ୍ୟଜ । ହେ ଜଗତ ପ୍ରାଣ । ତୁ ପ୍ରାଣ ରୂପେ ଜଗତକୁ ବଞ୍ଚାଉ । ଏବେ ତୁ କ୍ଷଣଂ କ୍ଷଣମାତ୍ରଂ ମମ ପୁରୋ । ଅଗ୍ରେ ମାଧବଂ ବିଧାୟ କୃତ୍ୱା କ୍ଷଣେ ମାତ୍ର ମାଧବଙ୍କୁ ମୋହର ଆଗେ ଉଡ଼ାଇ ଆଣି ଦେବା । ନୋହିଲେ ମମ ପ୍ରାଣ ହରୋ ଭବିଷ୍ୟସି ତ୍ୱଂ । ମାଧବଙ୍କୁ ଆଣି ଦେଖାଇ ନ ପାରିଲେ ତୁ ମୋହର ପ୍ରାଣ ନେ ନେବୁ । ମାଧବ ନ ଆଇଲେ କ୍ଷଣେ ମାତ୍ର ମୁଁ ନ ବଞ୍ଚିବି ।

**ରିପୁରିବ ସଖୀସମୀରଣୋଽୟଂ ଶିଖୀବ ହିମାନିଳୋ।**
**ବିଷମିବ ସୁଧାରଶ୍ମିର୍ଯସ୍ମିନ୍ ଦୁନୋତି ମନୋଗତେ ।**
**ହୃଦୟମଦୟେ ତସ୍ମିନ୍ନେବଂ ପୁନର୍ବଳତେ ବଳାତ୍ ।**
**କୁବଳୟଦୃଶାଂ ବାମଃ କାମୋ ନିକାମନିରଙ୍କୁଶଃ ॥ ୮ ॥**

ରାଧା ବୋଲୁଛନ୍ତି—ହେ ଦେବ, ଯସ୍ମିନ୍ ଶ୍ରୀକୃଷ୍ଣ ମନୋଗତେ ସତି ହୃଦୟଂ ଦୁନୋତି ଚେତଃ ପରିତାପୟତି । ହେ ବିଧାତା ଶ୍ରୀକୃଷ୍ଣର ତାହାଙ୍କ ମୋହର ମନ ଗଲେ ତାହାଙ୍କ ସ୍ମରଣ କଲେ ହୃଦୟଂ ଦୁନୋତି । ପରିତାପୟତି । ତପ୍ତ ହୋଇ । କନ୍ତୁ ଚନ୍ଦ୍ରବକାରତ୍ ମୋହର ଶତ୍ରୁ ବଜ୍ର ବିକାର ଖେଦ ପାଇ । ଦେଖ ଯେଣୁ କରି ଅୟଂ ସଖୀସମୀରଃ ରିପୁରିବ । ଏ ଯେ ସଖୀଜନମାନଙ୍କର ମଧ୍ୟେ ସ୍ଥିତି ଯେ ଘର ଶତ୍ରୁବତ ହୋଇ । ଶିଖୀବ ହିମାନିଳୋ । ଏ ଯେ ଶୀତଳ ପବନ ସ୍ୱଭାବେ ହିମର ପ୍ରାପ୍ତେ (ପ୍ରେ ବହନ୍ତି । ଏମନ୍ତ ପବନ ମୋତେଂ ଶିଖୀ ଯେ ଅଗ୍ନି ତାହାର ପ୍ରାପ୍ତ)[୩] ହୋଇ

୧-ଖ. ରୂତ ୩-କ.ରେ ନାହିଁ
୨. ଖ. କ୍ଷଣେହେଂ ଅଉ ନ ବଞ୍ଚିବ ।

ପୋଡ଼ୁଛି । ବିଷମିବ ସୁଧାରଶ୍ମିଃ ସେ ଯେ ଅମୃତନିଧି ଚନ୍ଦ୍ର, ଏହାର ରଶ୍ମି, ବିଷର ପ୍ରାୟେ ଦହୁଛି । ଯଦି ନିଦୟେ ଦୟା ବର୍ଜିତେ ନିର୍ଦୟେ ଶ୍ରୀକୃଷ୍ଣେ ମମ ହୃଦୟଂ ମନଃ ପୁନଃ ବଳାତ୍ ବ୍ରଜତେ । ହେ ସଖି, ନିର୍ଦୟ ଯେ ହରି ତାହାର ତହିଁକି ମୋହର ମନ ବଳେକରି ପୁଣି ବ୍ରଜୁଛି । ତାହାଙ୍କ ତହିଁକି ନିରନ୍ତରେ ଯିବାକୁ ଚାହୁଁଛି । ମୁଁ କି କରିବି ? ହେ ସଖି ! କୁବଳୟଦୃଶାଂ ନୀଳୋତ୍ପଳ ବଳବ ଦର୍ଶିଣୀନାଂ କାମିନୀନାଂ ବାମଃ । ବିପରୀତ କର୍ତ୍ତା । କାମ ନିକାମଃ ସ୍ୱଭାବ କୁଟିଳଃ ପଞ୍ଚବାଣ ଯୁକ୍ତଃ ନିରଙ୍କୁଶ-ସ୍ତୁ । ହେ ସଖି ! କୁବଳୟ ଯେ ନୀଳୋତ୍ପଳ ତାହାର ପ୍ରାୟ ଚକ୍ଷୁ ଯେ କାମିନୀମାନଙ୍କର (ସେ କାମିନୀମାନଙ୍କର ବିପରୀତ କର୍ତ୍ତା ଯେ କାମ । ସେ କାମ ସ୍ୱଭାବ ବକ୍ର ପଞ୍ଚବାଣ ଯୁକ୍ତ ନିରଙ୍କୁଶଃ ।)[1] ତାହାକୁ ନିଗ୍ରହ କରିବାକୁ ଅଙ୍କୁଶ ନାହିଁ । ସେ ମୋତେ ବୈରୀ ହୋଇ ମୋହର ମନକୁ ସେ କୃଷ୍ଣର ତହିଁକି ନିରନ୍ତରେ ବଳଂ ବଳାତ୍କାର କରି ବଳାଉଅଛି । ମୋହର ନିସ୍ତାର ନାହିଁ ନି ।

**ବାଧାଂ ବିଧେହି[2] ମଳୟାନିଳ ପଞ୍ଚବାଣ**
**ପ୍ରାଣାନ୍ ଗୃହାଣ ନ ଗୃହଂ ପୁନରାଶ୍ରୟିଷ୍ୟେ ।**
**କିଂ ତେ କୃତାନ୍ତଭଗିନୀ କ୍ଷମୟା ତରଙ୍ଗୈ-**
**ରଙ୍ଗାନି ସିଞ୍ଚ ମମ ଶାମ୍ୟତୁ ଦେହଦାହଃ ॥ ୯ ॥**

ପୁନର୍ବାର ସେ ରାଧା ବିରହ ତାପ ସହି ନପାରି ଏମନ୍ତ ବୋଲୁଛନ୍ତି—ହେ ମଳୟାନିଳ ! ମଳୟାଚଳ ସ୍ଥିତ ପବନ ତ୍ୱଂ କିମର୍ଥଂ ମାଂ ବାଧାଂ ବିଧେହି କୁରୁଷେ । ଅହଂ ତବ ରିପୁ ନ । ହେ ମଳୟ ପବନ ମୁଁ ତୋହର ବୈରୀ ନୁହଇ । ତୁ ମୋତେ କିମ୍ପା ବାଧା ପୀଡ଼ା କରୁଛୁ । ହେ ପଞ୍ଚବାଣ ! ମମ ପ୍ରାଣାନ୍ ଗୃହାଣ । ହେ କାମ ! ହେ ପଞ୍ଚବାଣଧର ତୁ କିମ୍ପା ମୋହର ପ୍ରାଣକୁ ନେଉନୁଛୁ । ଯେବେ ମୋହର ପ୍ରାଣ ନେବୁ ତେବେ ନେଉ । ମୁଁ ନ ଗୃହଂ ପୁନରାଶ୍ରୟିଷ୍ୟେ । ପୁନରପି ଗୃହକୁ ଆଶ୍ରୟ ନ କରିବି । ମୋର ଘରେ ଦେହରେ କାର୍ଯ୍ୟ ନାହିଁ । ହେ କୃତାନ୍ତ ଭଗିନି ଯମୁନେ ! ତେ ତୁମ୍ଭ କ୍ଷମୟା । କିନ୍ତୁ ମୋତେ କିମ୍ପା କ୍ଷମା କରୁଛୁ । ତରଙ୍ଗୈରଙ୍ଗାନି ସିଞ୍ଚ । ମମ ଦେହ ଶାମ୍ୟତୁ । ତୁମ୍ଭର ତରଙ୍ଗ ଯୁକ୍ତ ଜଳରେ ସେଚନ କର । ମୋହର ଦେହ ଦାହ ଶାମ୍ୟ ହେଉ । ଯେବେ ଶୀତଳ ହେଉ ।

**ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ କବିରାଜଜୟଦେବକୃତୌ ବିପ୍ରଲବ୍ଧାବର୍ଣ୍ଣନେ ନାଗରନାରାୟଣୋ ନାମ ସପ୍ତମଃ ସର୍ଗଃ ।**

—✻—

୧-କ.ରେ ନାହିଁ ।
୨-କ. ବିଦେହି ।

# ଅଷ୍ଟମଃ ସର୍ଗଃ

**ଶ୍ଲୋକ**

**ଅଥ କଥମପି ଯାମିନୀଂ ବିନୀୟ**
**ସ୍ମରଶରଜର୍ଜରିତାପି ସା ପ୍ରଭାତେ ।**
**ଅନୁନୟବଚନଂ[1] ବଦନ୍ତମଗ୍ରେ**
**ପ୍ରଣତମପି ପ୍ରିୟମାହ ସାଭ୍ୟସୂୟମ୍ ॥ ୧ ॥**

ଅଥାନନ୍ତରେ ସା ରାଧା କଥମପି ଅତି କଷ୍ଟେନ ଯାମିନୀଂ ରାତ୍ରିଂ ବିନୀୟ ନୀତ୍ୱା ସ୍ମରଶରଜର୍ଜରିତାପି କାମବାଣବ୍ୟଥିତାପି ପ୍ରଭାତକାଳେ ଅନୁନୟଂ ବିନୟଂ ବଦନ୍ତଂ ଅଗ୍ରେ ପ୍ରଣତମପି ନମ୍ରୀଭୂତମପି ଶ୍ରୀକୃଷ୍ଣଂ ଅଭ୍ୟସୂୟଂ[2] ନିନ୍ଦାଯୁକ୍ତବଚନଂ ବ୍ରୂତେ । ଅଥାନନ୍ତରେ ସେ ରାଧା ଅତିକଷ୍ଟ କରି ରାତି ବଞ୍ଚିଲେ । ସେ ରାଧା କେମନ୍ତ ଅଟନ୍ତି । ସ୍ମର ଯେ କନ୍ଦର୍ପ ତାହାର ଯେ ଶର ତେଣେକରି ଜର୍ଜରିତ ଅତ୍ୟନ୍ତ ବ୍ୟଥା ପାଇଁ ରାତି ଯାହାଲରେ ଅତ୍ୟନ୍ତ ପ୍ରାତଃ କାଳେ ସେ ରାଧାର ନିକଟେ ଅରୁଣୋଦୟ ବେଳେ ଶ୍ରୀକୃଷ୍ଣ ଆସି ମିଳିଲେ । ରାଧାଙ୍କୁ ଦେଖି ସେ କୃଷ୍ଣ ବିରହ ବେଗେଁ ପୀଡ଼ିତା ହୋଇଁ ପ୍ରିୟ ବଚନମାନ ଗୁନ୍ଥିକରି ଅତ୍ୟନ୍ତ ବିନୟ ନମ୍ରୀଭୂତ ଦୈନ୍ୟ ହୋଇ ରାଧାର ଅଗ୍ରେ ବୋଲୁଛନ୍ତି । ରାଧାର ପାଦତଳେ ପଡ଼ୁଛନ୍ତି । ସ୍ୱଭାବେ ରାଧାର ପ୍ରିୟ ବଲ୍ଲଭ ଅଟନ୍ତି । ଏମନ୍ତ କୃଷ୍ଣଙ୍କୁ ସା ରାଧା ଅଭ୍ୟସୂୟଂ ସେ ରାଧା ନିନ୍ଦାଯୁକ୍ତ ବଚନ ବୋଲୁଛନ୍ତି ।

**ଗୀତ**

( ଭୈରବୀରାଗେଣ ଗୀୟତେ )

**ରଜନିଜନିତଗୁରୁଜାଗରରାଗକଷାୟିତମଲସନିମେଷମ୍**
**ବହତି ନୟନମନୁରାଗମିବ ସ୍ଫୁଟମୁଦିତରସାଭିନିବେଶମ୍ ।**
**ଯାହି ମାଧବ ଯାହି କେଶବ ମା ବଦ କୈତବବାଦଂ**
**ତାମନୁସର ସରସୀରୁହଲୋଚନ ଯା ତବ ହରତି ବିଷାଦମ୍ ॥ ୧ ॥**

( ଧ୍ରୁବପଦମିଦମ୍ )

ତଦନନ୍ତରେ ରାଧା ଗୋବିନ୍ଦଙ୍କୁ କୋପେ ବୋଲୁଛନ୍ତି—ହେ ମାଧବ, ମାଧୁ ଧବ ହେ କେଶବ ତ୍ୱଂ ଯାହି ତୁମ୍ଭେ ବେଗେ[3] ଯାଅ । ତୁମ୍ଭେ କେଶବ । କେଶୀ ପ୍ରାଣ

---

୧-କ.ଖ. °ବିନୟଂ　　　　୩-ଖ ଅଧିକପାଠ---ଏଠାରୁଂ

୨-କ.ଖ. ଅନୁସୂୟଂ

ହର । ନର୍ଦ୍ଦସ୍ୱ ତୁମ୍ଭେ ବେଗେ ଯାଅ ବେଗେଯାଅ । ମା ବଦ କୈତବବାଦଂ । ମୋତେ କପଟବାଦ ବଚନ ମିଥ୍ୟାବଚନ ମା ବଦ । ନ ବୋଲ । ହେ ସରସୀରୁହ ଲୋଚନ, ତୁମ୍ଭେ ସ୍ୱଭାବେ କମଳଲୋଚନ । ଏବେ କୁମୁଦ ଲୋଚନ ପ୍ରାପ୍ତ ହଉଛ । କୁମୁଦ ଯେମନ୍ତ ସୂର୍ଯ୍ୟଙ୍କୁ ଦେଖିଲେ ମୁଦ୍ରିତ ହୋଇ ଯେହ୍ନେ ମତ ନୟନେ ଚାହିଁ ନ ପାରୁଛ । ଆଜ ରାତ୍ରଯାକ ଯାହା ସଙ୍ଗତେ ଉନିଦ୍ର ହୋଇ ବଞ୍ଚିଲ ତାଂ ଅନୁସର । ତାହା ତହିଁକି ଯାଅ । ଯା ତବ ବିଷାଦଂ ହରନ୍ତି । ତୁମ୍ଭର ବିଷାଦ ଯେ ହରିଲା ତାହା ତହିଁକି ଯାଅ । ଯା ତାହାଙ୍କୁ ପ୍ରସନ୍ନ ହୁଅ । ତୁମ୍ଭେ ଅବା ବୋଲିବ ମୁଁ କାହାରି ତହିଁ ଗଲି ନାହିଁ । ତେବେଂ ମୋହର ନ୍ୟାୟକୁ ସାକ୍ଷ୍ୟ ତୁମ୍ଭର ଦୁଇ ଲୋଚନ । ତାହାଙ୍କୁ ତୁମ୍ଭର ଯେତେ ସ୍ନେହ ତା ହିଁ ତୁମ୍ଭର ବନ୍ଧନ କହୁଛି । ଦେଖ ଅନୁରାଗଂ । ସେ କାମିନୀଙ୍କ ଯେତେ ଅନୁଗ୍ରହ ତାହା ସ୍ଫୁଟଂ ଯଥା ସେହ୍ନମନ୍ତ ଉଦିତଂ ଉମାଭିବେଶଂ । ସ୍ଫୁଟିତ ଶୃଙ୍ଗାରରସ ତଦ୍‌ବଦ୍ ଭାବ । ଶକ୍ତିତା ଉଦୟ ହୋଇ ଶୃଙ୍ଗାର ରସ ଭାବରେ ଆସକ୍ତ ହୋଇଛି ତୁମ୍ଭର ନୟନ । ହାନେ ଏ ରାତ୍ରେ ଗୁରୁ ବହୁତ ଜାଗର ରାଗେ କରି କୃଶ ଦିଶୁଛି । ପୁନଃ କଂ ଭୂତଂ । ପୁଣି ମୋ ନୟନ କେମନ୍ତ ଶୁଣ । ଅଳସନମେତଂ । ଅଳସ କରି ନମେତ ଗାନ ସମ୍ପାଦିତ ଅତ୍ୟନ୍ତ ନିଦ୍ରାକ୍ଷୟ ନୋହିବାତ କଷାୟୋପ୍ରତିଃ । ଏତେ ପ୍ରତ୍ୟକ୍ଷ କଥାକୁ ମୋତେ ଭଣ୍ଡୁଛ । ଯାଅ ତୁମ୍ଭେ ମୋ ଆଗରୁ ଚ ରହ । ହେ ମାଧବ ତୁମ୍ଭର ଦୃଷ୍ଟିରେ ମୋହର ସାକ୍ଷ୍ୟ ପ୍ରତ୍ୟକ୍ଷ ଦେଖା କହିବା ।

**କଜ୍ଜଳମଳିନବିଲୋଚନଚୁମ୍ବନବିରଚିତନୀଳିମରୂପମ୍ ।**
**ଦଶନବସନମରୁଣଂ ତବ କୃଷ୍ଣ ତନୋତି ତନୋରନୁରୂପମ୍ ॥ ୨ ॥**

ହେ ମାଧବ ! କଜ୍ଜଳ ମଳିନେନ ଚକ୍ଷୁ ଚୁମ୍ବନଦାନେନ ଵିରଚିତ ନୀଳବର୍ଣ୍ଣ ତବୋଷ୍ଠଂ । ରାତ୍ରକାଳେ ତୁମ୍ଭେ କାମାତୁର ହୋଇଁ ଯାହାର ଚକ୍ଷୁରେ ଚୁମ୍ବନ କଲ ତାହାର କଜ୍ଜଳ ତୁମ୍ଭ ଓଷ୍ଠରେ ଲାଗି ମଳିନ ଦିଶୁଛି (ତହିଁ କ କ ଉପମା କରିବା ! ବିରଚିତ । ରଚନ ହୋଇଂଛି । ନୀଳମ ରୂପଂ । ନୀଳବର୍ଣ୍ଣ ଦିଶୁଛି ।)[1] ତୁମ୍ଭର ଦଶନ ବସନ ଯେ ଓଷ୍ଠ ସେ ସ୍ୱଭାବେ ଅରୁଣ ବର୍ଣ୍ଣ । ଏବେ ସେ ଓଷ୍ଠ ତୁମ୍ଭର କୃଷ୍ଣ ବର୍ଣ୍ଣ ହୋଇ ହେ ତବ ତନୋ ଅନୁରୂପଂ ଶରୀରସ୍ୟାନୁରୂପଂ ତନୋତି । ବିସ୍ତାରଯୁକ୍ତ । ପ୍ରକାଶୟନ୍ତି । ତୁମ୍ଭର ଦେହ ରୂପକୁ ସମାନ୍ତର ହୋଇଂ ଅତ୍ୟନ୍ତ କୃଷ୍ଣ ରୂପକୁ ଧରିଛି ।

**ବପୁରନୁହରତି ତବ ସ୍ମରସଙ୍ଗରଖରନଖର କ୍ଷତରେଖମ୍ ।**
**ମରକତଶକଲକଳିତକଳଧୌତଲିପେରିବ ରତିଜୟଲେଖମ୍ ॥ ୩ ॥**

ହେ କେଶବ ! ତବ ବପୁଂ ଶରୀରଂ ତୁମ୍ଭର ଦେହକୁ ତୁମ୍ଭେ ଚାହିଁ ତ ? କେମନ୍ତ ଦିଶୁଛି । ସ୍ମରସଙ୍ଗରଖରନଖରକ୍ଷତରେଖଂ । ସ୍ମର ଯେ କନ୍ଦର୍ପ ତାହାର

---

୧-କ. ବେଗେ ୩-କ.ଖ. ବନ୍ଧଂ
୨ କ. ରେ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।

ସଙ୍ଗର ଯେ ରତି ସଂଗ୍ରାମ ତହିଁ ଯେ ତୁମ୍ଭର ଜୟ କରି ଖର ଯେ ତୀକ୍ଷ୍ଣ ନଖ ତହିଁରେ କରି କ୍ଷତ କରି ନଖ ରେଖା ମାନ ଲେଖିଛୁ । ମୁଁ ନଖ କ୍ଷତମାନଙ୍କୁ କି ଉପମା କରିବା । ମରକତଶକଳ ଯେ ମଣି ପାଷାଣ ଖଣ୍ଡ ତହିଁରେ କଳଧଉତ ଯେ ସୁବର୍ଣ୍ଣ ତହିଁରେ ଲିପି ଯେ ଅକ୍ଷର ତାହା ଲେଖିଲ ପ୍ରାୟ ଦିଶୁଛି । ଅକ୍ଷରଂ କିଂ ଭୂତଂ । ସେ ଅକ୍ଷର କେମନ୍ତ ଦିଶୁଛି । ରତିଜୟ ଲେଖଂ । ରତି ସଂଗ୍ରାମେ ଜୟ କରି ଲେଖିଛି । ଜୟ ଚିହ୍ନ କରିଛି ।

**ଚରଣକମଳଗଳଦଳକ୍ତକସିକ୍ତମିଦଂ ତବ ହୃଦୟମୁଦାରମ୍ ।**
**ଦର୍ଶୟତୀବ ବହିର୍ମଦନଦ୍ରୁମନବକିଶଳୟପରିବାରମ୍ ॥ ୪ ॥**

ହେ ମାଧବ ! ମତ୍ତ୍ୱା ଯେ ଲକ୍ଷ୍ମୀ ତୁମ୍ଭ ହୃଦୟେ ଥାଇ ତାହାକୁ ତୁମ୍ଭେ ଏଡ଼େ ସନ୍ଦା କଲ । ତୁମ୍ଭ ହୃଦୟକୁ ତୁମ୍ଭେ ଦେଖ ତ । ତବ ହୃଦୟଂ କିଂ ଭୂତଂ । ତୁମ୍ଭର ହୃଦୟ କେମନ୍ତ ଅଛଇ । ଉଦାରଂ ଉଲ୍ଲଷ୍ଟଂ । ଦୃଢ଼ତରଂ ଆଶ୍ଚ ଅଛଇ । ସୁନ୍ଦର ଅଛଇ । ପୁନଃ କିଂ ଭୂତଂ । ପୁଣି କେମନ୍ତ ଅଛଇ । ଚରଣକମଳଗଳଦଳକ୍ତକ-ସିକ୍ତଂ । ତୁମ୍ଭେ ଯାହାର ଚରଣ କମଳ ଆଣି ତୁମ୍ଭ ହୃଦୟରେ ଲଗାଇ ସେ ଅଳତା ଗୋଳ ତହୁଁ ଗଳ ପଡ଼ି ତୁମ୍ଭ ହୃଦୟରେ ମିଶିଲା ହୋଇଛି ଦେଖ ଏ ବାହାରକୁ ଦିଶୁଛି । କାହାର ପ୍ରାୟେ । ମଦନଦ୍ରୁମନବକିଶଳୟପରିବାରମିବ । ନବପଲ୍ଲବ-ପରିବେଷ୍ଟିତମଦନଦ୍ରୁମମିବ ରକ୍ତ ବର୍ଣ୍ଣ ନବପଲ୍ଲବ ପରିବେଷ୍ଟିତ ପତ୍ରମାନଙ୍କରେ ବେଢ଼ିଲା ପ୍ରାୟେ ହୋଇଛି କି କାମ ବୃକ୍ଷ । ତଦ୍‌ବତ୍ । ସେହିପରି ପ୍ରାୟ ଦିଶୁଛି ।

**ଦଶନପଦଂ ଭବଦଧରଗତଂ ମମ ଜନୟତି ଚେତସି ଖେଦମ୍ ।**
**କଥୟତି କଥମଧୁନାପି ମୟା ସହ ତବ ବପୁରେତଦଭେଦମ୍ ॥ ୫ ॥**

ହେ କେଶବ ! ଦଶନପଦଂ । କାମିନୀ ଦନ୍ତ କ୍ଷତ ଚିହ୍ନ । ହେ ମାଧବ ଯାହାକୁ ଆଜ ଗଲେ ରମିଲ ସେ କାମିନୀ ତୁମ୍ଭର ଓଷ୍ଠ ଖାଇକରି କାମୋଡ଼ିଲା ତାହାର ଦନ୍ତ ଚିହ୍ନ ତୁମ୍ଭର ଓଷ୍ଠରେ ରହିଛି[1] ! ତହିଁ ଆଉ ସପତ୍ନୀର ଚିହ୍ନ । ମମ ଚିତ୍ତଂ ଖେଦଂ ଜନୟତି । ମୋହର ଚିତ୍ତରେ ବଡ଼ ଖେଦ ମନ ଦୁଃଖ ଜନମା କରୁଛି । ସେମାନକରି ତୁମ୍ଭର ଦେହ ମୋହର ବଡ଼ ସ୍ନେହ । କେଣୁକରି ମୋତେ କଥୟତି କଥଂ ଅଧୁନାପି ମୟା ସହ ଅଭେଦଂ । ଏବେ ତୁମ୍ଭ ଦେହ ମୋ ସହ ଅଭେଦଂ । ମୋହର ମନେ ଅଭେଦ ଅଛଇ । କେଣୁକରି କଥୟତି । ଏ କଥା ମୋତେ କହିଦେଉଛି । ତୁମ୍ଭେ ଧୂର୍ତ୍ତ ଜଣେ ମୋତେ ଭଣ୍ଡି । ହେ କୃଷ୍ଣ, ମୁଁ ଏବେ ତୁମ୍ଭଙ୍କୁ ଭଲକରି ଜାଣିଲି । ତୁମ୍ଭର ମନକୁହିଁ ଜାଣିଲି ।

---

୧-ଖ. ଅଛୁ ।

**ବହିରିବ ମଲିନତରଂ ତବ କୃଷ୍ଣ ମନୋଽପି ଭବିଷ୍ୟତି ନୂନମ୍ ।**
**କଥମଥ ବଞ୍ଚୟସେ ଜନମନୁଗତମସମଶରଜ୍ୱରଦୂନମ୍ ॥ ୭ ॥**

ହେ ମାଧବ, ତୁମ୍ଭର ମନକୁ ମୁଁ ଜାଣିଲି । କିଂ ଭୂତଂ । କେମନ୍ତ ଅଛଇ । ବହିରିବ ମଲିନତରଂ । ଅଗ୍ରବଯୁକ୍ତଂ । ବାହାରହୁଁ ଅତ୍ୟନ୍ତ ମଳିନତରଂ ଭବିଷ୍ୟତି । ମଳିନ ହୋଇବା ପ୍ରାପ୍ତେ ନୂନ ନିଶ୍ଚେକରି ମୁଁ ଜାଣିଛି । ଅଗ୍ରବଯୁକ୍ତ ଅଛଇ । ଯେଣୁକରି ଅଭ୍ୟନ୍ତର ମନୋପି ଭିତରେ ଥାଇ ଯେ ମନ ସେ ବାହ୍ୟମିବ କଥପ୍ରାନନ୍ଦ । କଥମିହ୍ । ସେ ମନ ବାହାରକୁ ପ୍ରକାଶ ହୋଇଛି, କିମ୍ପା ଏ କଥା ହୋଇ । ହେ କୃଷ୍ଣ ! ଯେବେ ହେଁ ମନ ସର୍ବବ୍ୟାପୀ ତାହାର ବାହାର ଭିତର ଭେଦନ କରି । ତଥାପି ତୁମ୍ଭେ ଯେ ଶରଣାଗତବନ୍ଧୁ ଏଣୁକରି ତୁମ୍ଭଙ୍କୁ ବୋଲିବି । ଅନୁଗତଂ ଅନନ୍ୟଶରଣଂ । ତୁମ୍ଭ ନିକଟକୁ ଆମ୍ଭି ନିଶ୍ଚେ ମୋହର ପ୍ରାପ୍ତେ ହୋଇଁ ତୁମ୍ଭର ଶରଣ ପଶିଲି ଯେ ପ୍ରାଣୀ ତାହାକୁ କଥଂ ବଞ୍ଚୟସେ ! କିମ୍ପା କପଟ କରି ବଞ୍ଚାଉଅଛ । ମୁଁ କେମନ୍ତ ଅଛଇ । ଅସମଶରଜ୍ୱରଦୂନଂ । କାମ ବାଣ ପୀଡ଼ା ଉପତାପିନଂ । କନ୍ଦର୍ପ ବାଣ ବ୍ୟଥାତୁରଂ ଉପତାପ ତାଇ ତୁମ୍ଭଙ୍କ ଶରଣ ପଶିଛି । ମୋତେ କିମ୍ପା ବଞ୍ଚାଅ । ଭଣ୍ଡାଅ ।

**ଭ୍ରମସି ଭବାନବଲାକବଲାୟ ବନେଷୁ କିମତ୍ର ବିଚିତ୍ରମ୍ ।**
**ପ୍ରଥୟତି ପୂତନିକୈବ (ବଧୂବଧନିର୍ଦ୍ଦୟବାଳଚରିତ୍ରମ୍ ।)[1] ୭ ॥**

ହେ ମାଧବ ! ଭବାନ୍ ତୁମ୍ଭେ ଏବେ ଭ୍ରମସି । ଭ୍ରମଣ କରି ବୁଲୁଛ ଯେ ନିମନ୍ତେ ତାହା କହିବା ଶୁଣ । ଅବଲା କବଳାୟ । ଅବଳା ଯେ ସ୍ତ୍ରୀ, ସେମାନଙ୍କୁ ଖାଇବା ଅର୍ଥେଂ । ବନେଷୁ । ବନମାନଙ୍କରେ ପର୍ବତମାନଙ୍କରେ ଖୋଜିବୁଲୁଛ । ଅତ୍ର କିଂ ଚିତ୍ରଂ । ଏକଥା ଚିତ୍ର ନୋହଇ ନା । ପ୍ରତ୍ୟକ୍ଷେଂ ପ୍ରଖ୍ୟାତ ହୋଇଅଛି । ସ୍ତ୍ରୀ ମାରଣେ ତୁମ୍ଭେ ନିର୍ଦ୍ଦୟ ବୋଲି ସଂସାର ମଧ୍ୟେ ଖ୍ୟାତ ହୋଇଅଛି । ଯନ୍ତା ବଧୂ-ବଧ ବାଳ ଚରିତ୍ରଂ । ଯେଣୁକରି ବଧୂବଧ ଯେ ସ୍ତ୍ରୀ ବଧ । କହୁଅଛି ତୁମ୍ଭର ବାଳକାଳର ଚରିତ୍ର । ଯେଣୁକରି ପୂତନିକୟା ଚିବ । ପୂତନାକୁ ମାରିଲ । ତାହା କାହାକୁ (ଲୁଚାଅ ।

**ଶ୍ରୀଜୟଦେବଭଣିତରତିବଞ୍ଚିତଖଣ୍ଡିତଯୁବତୀବିଳାପମ୍ ।**
**ଶୃଣୁତ ସୁଧାମଧୁରଂ ବିବୁଧା ବିବୁଧାଳୟତୋଽପି ଦୁରାପମ୍ ॥ ୮ ॥)[3]**

(ଜୟଦେବ କବି ବୋଲୁଛନ୍ତି, ହେ ବୁଧାଃ । ପଣ୍ଡିତ ଜନାଃ ଶୃଣୁତ । ହେ ପଣ୍ଡିତଜନମାନେ ଶୁଣ)[4] । ଶ୍ରୀ ଜୟଦେବ ଭଣିତଂ କୃତ ଗୀତଂ । ଜୟଦେବର

---

୧-ଖ. ଅଧିକପାଠ—କଳି
୨-କ. ବିବୁଧା ବଦତାପି ସୁଖଂ ଦୁରବାପଂ
୩-କ.ରେ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।
୪-କ. ଜୟଦେବ କବି ବୋଲୁଛନ୍ତି— ହେ ବୈଷ୍ଣବଜନମାନେ ଶୁଣ ।

ଭଣିଲ ଏ ଗୀତ । କିଂ ଭୂତଂ । ସେ କେମନ୍ତ ଅଟଇ । ରତିବଞ୍ଚିତଖଣ୍ଡିତଯୁବତୀ-ବିଳାପଂ । ଜନିତ ସନ୍ତାପିତା ଖଣ୍ଡିତା ସା ସ୍ତ୍ରୀ ଗୋବିନ୍ଦବିଷୟ ବଚନଯୁକ୍ତଂ । ଚତୁଃଷଷ୍ଟୀ କଳା ଶୃଙ୍ଗାର ରସରେଂ ନିପୁଣା ହୋଇ ଖଣ୍ଡିତା ଯେ ଯୁବତୀ ରାଧା ତାହାଙ୍କର ବିଳାପ ବେଦନ କଥା ଅଟଇ । ପୁନଃ କିଂ ଭୂତଂ । ପୁଣି ଏ ଗୀତ କେମନ୍ତ ଅଟଇ । ସୁଧା ମଧୁରଂ ଅମୃତବତ୍ । ଶ୍ରବଣପେୟଂ ସୁଧା ଯେ ଅମୃତ ତାହାର ପ୍ରାୟେ ମଧୁର ଅଟଇ ଶୁଣିବାକୁ । ହେ ବିବୁଧା, ହେ ବିଷୟୀବଞ୍ଚନ-ପଣ୍ଡିତମାନେ କହନ୍ତ କେମନ୍ତ ଅଟଇ । ଅପି ନିଶ୍ଚିତଂ ଦୁରବାପଂ । ଏହା ପାଇବାକୁ ଦୁର୍ଲ୍ଲଭ ଅଟଇ । ଅଥାନନ୍ତରେ ଶ୍ରୀକୃଷ୍ଣଙ୍କୁ[1] ଶ୍ରୀରାଧା ବୋଲୁଛନ୍ତି ।

**ଶ୍ଳୋକ**

**ତବେଦଂ ପଶ୍ୟନ୍ତ୍ୟାଃ ପ୍ରସରଦନୁରାଗଂ ବହିରିବ**
**ପ୍ରିୟାପାଦାଲକ୍ତଚ୍ଛୁରିତମରୁଣଚ୍ଛାୟହୃଦୟମ୍ ।**
**ମମାଦ୍ୟ ପ୍ରଖ୍ୟାତପ୍ରଣୟଭରଭଙ୍ଗେନ କିତବ**
**ତ୍ୱଦାଲୋକଃ ଶୋକାଦପି କିମପି ଲଜ୍ଜାଂ ଜନୟତି ॥ ୬ ॥**

ହେ କିତବ ! ହେ ଧୂର୍ତ୍ତ ! ତେ ତବ ହୃଦୟଂ ପଶ୍ୟନ୍ତ୍ୟାଃ ଶୋକାଦପ୍ୟ-ଧିକତରଂ ଲଜ୍ଜାଂ ଜନୟତି । ମୋତେ ଶୋକହୁଁ ଅଧିକ ଲଜ୍ଜ୍ୟାକୁ ଜାତ କରଉଅଛୁ । ଗୃହିଁବା ମାତ୍ରକେଂ । ଏ ପୁଣି କେମନ୍ତ ଅଟଇ । ପ୍ରସରଦନୁରାଗଂ ବହିରିବ । ଭିତର ଅନୁରାଗରେ[2] ସେ ରମଣୀକି ଯେତେ ସ୍ନେହ ସେ ବାହାରକୁ ପ୍ରସରୁଛି । ଏମନ୍ତ ପ୍ରାୟେ ମୁଁ ମଣୁଛି । ଭିତର ହୃଦୟ ଦେଖି କେମନ୍ତ ସେ ହୃଦୟ ପ୍ରିୟା ପାଦାଲକ୍ତଂ ଛୁରିତଂ । ପ୍ରିୟାର ପାଦ ହୃଦୟରେଂ ଧରି ଅଳତା ଦେଲ । ତହୁଁ ଅଳତାଚ୍ଛୁରିତଂ । ସେ ଅଳତାରୁଂ ଗଡ଼ଗଡ଼ି ତହିଁରେଂ ଚିହ୍ନମାନଙ୍କରେ କରି ଅରୁଣ ପ୍ରାୟେ ଆଭାସ ଦିଶୁଛି । ମମାଦ୍ୟ ପ୍ରଖ୍ୟାତ । ମତେ ଏବେ ପ୍ରତ୍ୟକ୍ଷ ହୋଇଁ ତବ ଆଲୋକ୍ୟ ପ୍ରଖ୍ୟାତ କଥୟତି । ମୁଁ ଜାଣିଲ ଯେତେଣ କରି ଶୁଣ[3] । ପ୍ରଣୟଭର ଭଙ୍ଗେନ ସ୍ନେହାଧିକ୍ୟ-ନାଶେନ ସ୍ନେହର ଯେ ଆଧିକ୍ୟ ତାହାର ବିନାଶ କରି ଏଣେ କରି ତ୍ୱଦାଲୋକଃ[4] ଭିତର ଅବଲୋକନ ମୋହର ଶୋକ ଲଜ୍ଜା ଏ ଦୁଇ ପଦକୁ ଜାତ କରୁଛି । ଅଧ କିମପି ଏଥ ଆଉ କି କହିବା ।

**ଇତି ଶ୍ରୀଗୀତଗୋବିନ୍ଦମହାକାବ୍ୟେ କବିରାଜଜୟଦେବକୃତୌ ଖଣ୍ଡିତାବର୍ଣ୍ଣନେ ବିଲକ୍ଷଲକ୍ଷ୍ମୀପତିର୍ନାମାଷ୍ଟମଃ ସର୍ଗଃ ।**

---

୧ ଖ. ଶ୍ରୀକୃଷ୍ଣଂର ବଦନକୁଂ ୩-ଖ. ତାହାଙ୍କୁଣ ।
୨-କ. ଅନୁରାଗରେ ୪-କ. ତ୍ୱଦାଲୋକଃ

# ନବମଃ ସର୍ଗଃ

**ଶ୍ଳୋକ**

**ତାମଥ ମନ୍ମଥଖିନ୍ନାଂ ରତିରସଭିନ୍ନାଂ ବିଷାଦସମ୍ପନ୍ନାଂ**
**ଅନୁଚିନ୍ତିତହରିଚରିତାଂ କଲହାନ୍ତରିତାମୁବାଚ ରହଃ ସଖୀ ॥ ୧ ॥**

ଅଥାନନ୍ତରଂ । ତାଂ ରାଧାଂ ରହ ଏକାନ୍ତେ ସଖୀ ଦୂତୀ ଉବାଚ । ସେ ରାଧାଙ୍କୁ ଏକାନ୍ତ ସ୍ଥାନରେ ସଖୀ ଯେ ଦୂତୀ ସେ ଏମନ୍ତ ବୋଲୁଛି । ବକ୍ଷ୍ୟମାଣଂ ଇଚ୍ଛତି । ବୋଲିବାକୁ ଇଚ୍ଛା କରୁଛି । ତାଂ ରାଧାଂ କିଂ ଭୂତାଂ । ସେ ରାଧା କେମନ୍ତ ଅଟନ୍ତି । ମନ୍ମଥଖିନ୍ନାଂ । କାମକ୍ଷୋଭଖେଦଯୁକ୍ତାଂ । କାମ ବାଣ ବ୍ୟଥାରେ କରି ଅତ୍ୟନ୍ତ ଖିନ୍ନ ହୋଇଛନ୍ତି । ପୁନଃ କିଂ ଭୂତାଂ । ପୁଣି ସେ ରାଧା କେମନ୍ତ ଅଟନ୍ତି । ରତିରସଭିନ୍ନାଂ (ରତିସୁଖରୁ ବଞ୍ଚିତାଂ)[1] ରତିରସ ସୁଖରୁ ବଞ୍ଚିତା ହୋଇଛନ୍ତି । ପୁନଃ କିଂ ଭୂତାଂ । ପୁଣି ସେ କେମନ୍ତ ଅଟନ୍ତି । ବିଷାଦ ସମ୍ପନ୍ନାଂ । ବିଷାଦ ସମ୍ପୂର୍ଣ୍ଣ ହୋଇଛନ୍ତି । ପୁନଃ କିଂ ଭୂତାଂ । ପୁଣି ସେ କେମନ୍ତ ଅଟନ୍ତି । ଅନୁଚିନ୍ତିତହରି-ଚରିତାଂ । ପୁନଃ ପୁନଃ ସ୍ମୃତକୃଷ୍ଣଚରିତାଂ । ପୁନଃ ପୁନଃ କରି ମନରେ କୃଷ୍ଣର ଚରିତମାନଙ୍କୁ ଚିନ୍ତା କରୁଛନ୍ତି । ପୁନଃ କିଂ ଭୂତାଂ । ପୁଣି ସେ କେମନ୍ତ ଅଟନ୍ତି । କଲହାନ୍ତରିତାଂ କଲହେନ ଅନ୍ତରିତାଂ । ଅମର୍ଷେଣାଗତମପି ବଞ୍ଚିତାଂ ବଡ଼ କୋପେ ହରିଙ୍କୁ ଦୂର କରି କଳହ କରିବାକୁ ସମ୍ପୂର୍ଣ୍ଣ ହୋଇଛନ୍ତି ।

**ଗୀତ**

(ଗୁର୍ଜ୍ଜରୀରାଗେଣ ଗୀୟତେ)

**ହରିରଭିସରତି ବହତି ମଧୁପବନେ[2] ।**
**କିମପରମଧିକସୁଖଂ ସଖି ଭବନେ ।**
**ମାଧବେ ମା କୁରୁ ମାନିନି ମାନମୟେ ॥ ୧ ॥**

(ଧ୍ରୁବପଦମିଦମ୍)

ଦୂତୀ ବୋଲୁଛନ୍ତି—ହେ ମାନିନି, ମାଧବେ ରମାକାନ୍ତେ ମାନଂ ଅଭିମାନଂ ମା କୁରୁ । ହେ ସଖି, ତୁମ୍ଭେ ମାନିନୀ ହୋଇ ମାଧବ ଯେ ଲକ୍ଷ୍ମୀକାନ୍ତ ତାହାଙ୍କୁ

---

୧-ଖ.ରେ ଏହି ଅଂଶ ନାହିଁ ।   ୨-କ. ଖ. ମୃଦୁ ପବନ

ଅଭିମାନ ନ କର । ମାଧବେ କିଂ ଭୂତେ । ସେ ମାଧବ କେମନ୍ତ ଅଟନ୍ତି । ମାନମଯ୍ୟେ । ପ୍ରଚୁରଂ ମାନଂ ଯସ୍ମିନ୍ ମାନମୟଃ । ତସ୍ମିନ୍ ମାନମଯ୍ୟେ । ହେ ସଖି ନାନା ଶାସ୍ତ୍ର ମାର୍ଗେଂ କରି ଅଶେଷ ପ୍ରମାଣ ଯାହାକୁ କରି ସେ ଯେମନ୍ତ ପ୍ରମାଣେ ବୋଧପାଇ ତାହାକୁ ସେହି ପ୍ରମାଣ ଅଟନ୍ତି । ସେହି ମାଧବ ଏଣୁକରି ସେ ମାନମୟ । ତାହାଙ୍କ ବିଷୟେ ଅଭିମାନ ନକର । ଅନ୍ୟେ ମାନମ, ହେ ସଖି ଦେଖ । ଭ୍ରାଂ ହରିରଭିସରତି । ତବସଙ୍ଗମଭିବାଞ୍ଛିତଃ ସନ୍ ହାଦେଂ ବଶେଷେଂ ତୁମ୍ଭ ସଙ୍ଗମକୁ ଇଚ୍ଛାକରି ନିକଟକୁ ଆସିଛନ୍ତି । ପୁଣି ସେ ମାଧବ କେମନ୍ତ ଅଟନ୍ତି । ସେ ମାଧବ ହରି ନାମ ଯେମନ୍ତେ ପାଇଁଛନ୍ତି ତାହା କହିବା ଶୁଣ । ସେ ପ୍ରିୟାଣାଂ କାମପୀଡାଂ ହରନ୍ତୀତି ହରିଃ । ତାହାଙ୍କର ଯେ ପ୍ରିୟ ସେମାନଙ୍କର କାମ ଯେ ପୁନର୍ଜନ୍ମ କଳ୍ପନା ତାହା ହରନ୍ତି । ଏମନ୍ତ ହରିଙ୍କି ତୁମ୍ଭେ କାହିଁ ନ ଭଜ । ହେ ସଖି ଦେଖ । (ବହନ୍ତି ମଧୁ ପବନେ)[3] ମଧୁ ପବନେ ଯେ ବସନ୍ତ ପବନ । ସେ ବହୁଁଛି । ହେ ସଖି, ଅଥବା ମଧୁ ପବନ ଯେ ଅମୃତମୟଂ ପାଞ୍ଚପ୍ରକାର । ପ୍ରାଣ ଅପାନ ବ୍ୟାନ ଉଦାନ ସମାନ । ଏ ପାଞ୍ଚପ୍ରାଣ ହୋଇଁ ତୁମ୍ଭଙ୍କ ଛାଡ଼ୁଁଛନ୍ତି ସେ ହରି । ଏମନ୍ତ ପ୍ରାଣ ଥାଉଁ ତୁମ୍ଭେ ହରିଙ୍କି କାହିଁ ନ ଭଜ । ଏ ପବନ ନ ବହିଲେଂ ତୁମ୍ଭେ କି ଭଜି ପାରିବ । ହେ ସଖି, ତୁମ୍ଭେ ହରିଙ୍କି ବେଗେଂ ଭଜ । ହେ ମୁଗ୍ଧେ, ହରେର୍ଜନିତସୁଖପ୍ରକାଶାତ୍ ଅପରଂ ସୁଖଂ କିଂ । ହରିର ଅଙ୍ଗ ସଙ୍ଗରୁଂ ଯେ ସୁଖ ଜାତ ହୋଇବ ସେ ସୁଖରୁଂ ଆଉ ଅଧିକ ସୁଖ କି । ହେ ମୁଗ୍ଧ ସଖି ଭୁବନେ ସଖୀନାଂ ଭୁବନେ କିଂ ଭୂତେ ଭୂତାଧାନାଂ ଭବନେ ସ୍ଥାନେ । ଭୂମିରାପୋଅନଳୋବାୟୁରାକାଶଶବ୍ଦସ୍ପର୍ଶରୂପରସଗନ୍ଧମନୋବୁଦ୍ଧ୍ୟହଂକାର-ଚିତ୍ତ ଦଶଇନ୍ଦ୍ରିୟାଃ । ଏମାନଙ୍କର ଅଧିଷ୍ଠାନ ଦେବତା ଯେ ଦିକ୍‌ପବନ ସୂର୍ଯ୍ୟ ବରୁଣ ଅଶ୍ୱିନୀ ବହ୍ନିଇନ୍ଦ୍ରଉପେନ୍ଦ୍ର ମିତ୍ର ପ୍ରଜାପତିଇତ୍ୟାଦି କରି ଏ ସଖୀମାନଙ୍କର ଭବନେ କିଏ ଗୃହମନ୍ଦିର ନାମ ଶରୀର । ଏଥେ ହରିବ୍ୟତିରେକେଂ ଆଉକେ ସୁଖ ଅଛି । ଏଠାରେ ଅଧିକ ଯେ ସୁଖ କହିବା ସେ ସୁଖ ଅଫଳଂ ମିଥ୍ୟାଭୂତଂ । ମିଥ୍ୟ ବୋଲି ।

**ତାଳଫଳାଦପି ଗୁରୁମତିସରସମ୍ ।**
**କିମୁ ବିଫଳୀକୁରୁଷେ କୁଚକଳଶମ୍ ॥ ୨ ॥**

ହେ ସଖି, ଦେଖ ତାଳ ଫଳା ତାଳଃ । ତସ୍ୟୋରୈକଭାବ୍ ତାରଃ ଉଚ୍ଚୈଃ[3] ଶବ୍ଦଃ ସ ତୁ ବେଦ ତସ୍ମିନ୍ ମୁକ୍ତାନି ଯାନି କର୍ମକାଣ୍ଡ ବହିତାନି ତସ୍ମାଦପି

---

୧-କ. ଗୃହେଁ
୨-କ. ବହନ୍ତି ମଧୁର ପବନେ
୩-ଖ. ଉଚୈଃ

ଗୁରୁ ଦୁର୍ଲଭୋ ଦେହଃ ସରସଂ ଚତୁର୍ବର୍ଗପୂର୍ଣ୍ଣଂ । ହେ ମୁଗ୍ଧେ ତାଳ ଯେ ଶବ୍ଦ ବାଙ୍‌ବେଦ[1] ତନ୍ତ୍ରରେ ବେଦରେ, କର୍ମକାଣ୍ଡ ଯେମନ୍ତ ଯଜ୍ଞକର୍ମମାନ ଭକ୍ତ ସେ ଫଳରୁ[2] ଅଧିକ ଦୁର୍ଲଭ ଅଟଇ ଏ ଦେହ ଏଣୁକରି ଏହାକୁ ଗୁରୁବୋଲି । ସକଳ କର୍ମ ସାଧିବାର ଅଧିକାରଣ ଅଟଇ । ଏ ଶରୀର ପୁଣି କେମନ୍ତ ଅଟଇ । ସରସାଂ ଧର୍ମାର୍ଥକାମମୋକ୍ଷଚତୁର୍ବର୍ଗ ମହତ ପୂର୍ଣ୍ଣ ଅଟଇ । ପୁନଃ କିଂ ଭୂତଂ । ପୁଣି କେମନ୍ତ ଅଟଇ । କୁଚ କଳଶଂ । କୁ ପୃଥିବୀ ତତ୍ ବିକାରବତ୍ । ଘଟଶୋଭନୋପପାଦନଂ ଉପମାନଂ[3] । ହେ ସଖୀ, ମୃତ୍ତିକା ବିକାର ଘଟମାନଙ୍କର ଯେମନ୍ତ ଶୋଭା ଉପମା ଏମନ୍ତ ଯୌବନ ଘଟକୁ କମୁ କମର୍ଥଂ ବିଫଳୀ କୁରୁଷେ । ନିଷ୍ଫଳ କିମ୍ପା କରୁଛ । ଏ ଯୌବନ ଯୁବା ଯେହ୍ନେ ବେଗେ[3] ମାଧବକୁ ଭୋଗକର । ଏ ଦେହ ତୁମ୍ଭର କୈବଲ୍ୟ ହୋଇଛି । ଅଥବା ହେ ସଖି ତାଳଫଳାଦପି ଅଧିକ ଗୁରୁ (ତାଳଫଳହୁଂ ଅଧିକେଂ ଗୁରୁ)[4] ଅଟଇ । ଏମନ୍ତ କୁଚ କଳଶକୁ କିମ୍ପା ବିଫଳ କରୁଛ ।[5] ଏ କ ଚଥା ।

**କତି ନ କଥିତମିଦମନୁପଦମଚିରଂ ।**
**ମା ପରିହର ହରିମତିଶୟରୁଚିରମ୍ ॥ ୩ ॥**

ହେ ମୁଗ୍ଧେ, ଇଦଂ ଭଗବତ ଭଜନଂ ବଚନଂ ଅନୁପଦଂ ପଦମନୁମଚିରଂ ବହୁବାର ପର୍ଯ୍ୟନ୍ତଂ ମୟା କତିବାରଂ ନ କଥିତଂ । ହେ ସଖି ଏ ଭଗବାନଙ୍କୁ ଭଜିବାର ଯେ ବଚନ ତାହା ପଦକୁ ପଦ ବୁଝାଇଁ ବହୁତ ପ୍ରକାର ବହୁତ ବେଳ କରି ତୁମ୍ଭଙ୍କୁ କି ମୁଁ ନ କହୁଛି । ମୋହର ବଚନେ ତୁମ୍ଭେ ଅତିଶୟ ରୁଚିରଂ ମା ପରିହର । ନ ତ୍ୟଜ । ଅତ୍ୟନ୍ତ ସୁନ୍ଦର ଯେ ଏ ହରି ଏହାଙ୍କୁ ତୁମ୍ଭେ ପରିତ୍ୟାଗ ନ କରି ବେଗେ ଭଜ ।

**କିମିତି ବିଷୀଦସି ରୋଦିଷି ବିକଳା ।**
**ବିହସତି ଯୁବତିସଭା ତବ ସକଳା ॥ ୪ ॥**

ହେ ସଖି, ତ୍ୱଂ ବିକଳା[6] ସତି । ତୁମ୍ଭେ ବିକଳ ହୋଇଁ କିମିତି କିମର୍ଥଂ ରୋଦସି ଖିଦ୍ୟସେ । କି ନିମିତ୍ତେଂ ଖେଦପାଇଁ ରୋଦନ କରୁଛ । ବିଷାଦ ପାଉଛ । ଦେଖ ତୁମ୍ଭର ବିଷାଦ ରୋଦନ ଶୁଣି ବିହସନ୍ତି ଯୁବତୀ ସଭା ଯୁବତୀସଭା ବିହସ୍ୟତି । ସମସ୍ତ ଯୁବତୀମାନଙ୍କର ଗୋଷ୍ଠୀ ତୁମ୍ଭଙ୍କୁ ହାସ୍ୟ କରନ୍ତେନି । ଦେଖ ଯୁବତୀମାନେ ସକଳ କଳାରେ ଯେ ଦେଖି ମାୟା ଦେହ ମର୍ମୀ । ଏଣେ ସେମାନେ ଯୁକ୍ତା ଅଟନ୍ତି[7]

---

୧-କ. ବାଙ୍‌ ଦେବ
୨-ଖ. ଫଳହୁଁ
୩-କ. ବେଗେ
୪-କ.ରେ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।
୫-ଖ ରେ ଅଧିକ ପାଠ— ଅପଯୋଜନ ହେଉଛି ।
୬-କ. ବିଳାସ
୭-ଖ.ରେ ଅଧିକପାଠ—ସଦାଙ୍କ ଅଟନ୍ତି

ଏଣୁକରି ତୁମ୍ଭଙ୍କୁ ହାସ୍ୟ କରିବେନି । ତୃନ୍ତ ପୁଣି ବକଳା । ତୈତମାୟା ନାହିଁ । ତୁମ୍ଭେ ପୂର୍ବ ତପୋବଳେ ବୈଷ୍ଣବୀ ମାୟାକୁ ଜିଣିଛ । ତୁମ୍ଭଙ୍କୁ ସେ ମାୟା ନ ଲାଗଇ । ଏଣୁ କରି ତୁମ୍ଭେ ବକଳା । କିମ୍ପା ନ ଜାଣି ଖେଦ ପାଅ । ତୁମ୍ଭେ ବେଗେ ହରିକି ଭଜ ।

**ସଜଳନଳିନୀଦଳଶୀଳିତ¹ଶୟନେ ।**
**ହରିମବଲୋକୟ ସଫଳୟ² ନୟନେ ॥ ୫ ॥**

ହେ ସଖି ! ସଜଳ । ଜଳ ସହିତ ଯେ ନଳିନୀ ଦଳ ହୃଦୟ ପଦ୍ମପତ୍ର । ଶୀଳିତ । ବସ୍ତାର ହୋଇ ପ୍ରକାଶ ହୋଇଛି ଯେ ଶୟନ ଶଯ୍ୟା ତହିଁରେ ଶୟନ କରିଛନ୍ତି ଯେ ହରି ତାହାଙ୍କୁ ତୁମ୍ଭେ ଅବଲୋକନ କରି ନୟନ ଦୁଇକ ସଫଳ ସାଫଲ୍ୟ କର । କୃତାର୍ଥ କର । ଅଥବା ସଜଳ ନଳିନୀ ଦଳ ଜଳ ସେଚନ କରି ତଦ୍ଦ୍ୱାରା ଶଯ୍ୟାରେ ଶୋଇଛନ୍ତି ହେ ହରି ତାହାଙ୍କୁ ଅବଲୋକନ କର ।

**ଜନୟସି ମନସି କମିତ ଗୁରୁଖେଦମ୍ ।**
**ଶୃଣୁ ମମ ବଚନମନୀହିତଭେଦମ୍ ॥ ୬ ॥**

ହେ ରାଧେ, ମୋହର ବଚନ ନକରି ମନସି ତୁମ୍ଭ ମନରେ କମିତ କିମ୍ପା ଏ ଗୁରୁଖେଦଂ ବହୁକ୍ଲେଶ ଜନୟସି । ଅତ୍ୟନ୍ତ ଦୁଃଖ ଜାତ କରୁଛ । ଶୃଣୁ ମମ ବଚନଂ । ହେ ସଖି ଏବେ ମୋହର ବଚନ ଶୁଣ । ଏ ବଚନ ମୋହର ଅନୀହିତ-ଭେଦଂ । ନିଷ୍କପଟ କପଟ ରହିତଂ । ନିଷ୍କପଟ ଅଟଇ ।

**ହରିରୁପଯାତୁ ବଦତୁ ବହୁମଧୁରମ୍ ।**
**କମିତ କରୋଷି ହୃଦୟମତିବଧୁରମ୍ ॥ ୭ ॥**

ହେ ରାଧେ, ତୁମ୍ଭେ ସୁମୁଖ ହୋଇ ପ୍ରସନ୍ନ ହୁଅ । ହରିକି ମା ଉପଯାତୁ । ଏ ହରି ତୁମ୍ଭର ତହିଁକି ଯାନ୍ତୁ । ବହୁମଧୁରଂ ବାକ୍ୟଂ ବଦତୁ । ଅତ୍ୟନ୍ତ ମଧୁର କୋମଳ ବଚନ ବହୁତ କରି ତୁମ୍ଭଙ୍କୁ ବୋଲନ୍ତୁ । ତଂ କମର୍ଥଂ ହୃଦୟଂ ମନଂ ଅତିବ୍ରଂ ମଳିନତରଂ କରୋଷି । ତୁମ୍ଭେ କିମ୍ପା ଆପଣାର ମନକୁ ମଳିନ କରୁଛ । ଏବେ ବିଷୟଯୁକ୍ତ ମନକୁ ତୁମ୍ଭେ ହରିକି ସମର୍ପଣ କର । ସକଳ ଦୁଃଖରୁ ପାର ମିବନ୍ତି ।

---

୧-ଖ. ମୀଳିତ
୨-ଝ. ସଫଳ

**ଶ୍ରୀଜୟଦେବଭଣିତମତିଲଳିତମ୍ ।**
**ସୁଖୟତୁ ରସିକଜନଂ ହରିଚରିତମ୍ ॥ ୮ ॥**

ଜୟଦେବ କବି ବୋଲୁଛନ୍ତି, ହେ ବୈଷ୍ଣବ ଜନମାନେ ଶୁଣ । ମମ ଭଣିତଂ ଗୀତଂ ମୋହର ଭଣିଲା ଗୀତ । ଏ ଗୀତ କେମନ୍ତ ଅଟଇ । ଅତ୍ୟନ୍ତ ଲଳିତଂ । ଅତି ଶ୍ରବଣ ସୁଖଦଂ । ଲଳିତ ଶୁଣିବାକୁ । ଅତ୍ୟନ୍ତ ସୁଖଦ ଅଟଇ । କଣ୍ଠପେୟ ଯୋଗ୍ୟ । କଣ୍ଠରେ ପାନ କରିବାର ଯୋଗ୍ୟ ଅଟଇ । ହରେଶ୍ଚରିତଂ ହରିକ୍ରୀଡ଼ାନୁବର୍ଣ୍ଣନଂ । କୃଷ୍ଣ କ୍ରୀଡ଼ାରେ ଅନୁବର୍ଣ୍ଣନା ଅଟଇ । ରସିକ ଜନଂ ସୁଖୟତୁ । ହରି ଭକ୍ତ ଜନମାନଙ୍କୁ ପରମ ସୁଖାର୍ଥ ଦେଉ ।

**ଶ୍ଳୋକ**

**ସ୍ନିଗ୍‌ଧେ ଯତ୍‌ପରୁଷାସି[୧] ଯତ୍ ପ୍ରଣମତି ସ୍ତବ୍‌ଧାସି ଯଦ୍ରାଗିଣି**
**ଦ୍ୱେଷସ୍ଥାସି[୨] ଯଦୁନ୍ମୁଖେ ବିମୁଖତାଂ ଯାତାସି ତସ୍ମିନ୍ ପ୍ରିୟେ ।**
**ଯୁକ୍ତଂ ତଦ୍‌ବିପରୀତକାରିଣି ତବ ଶ୍ରୀଖଣ୍ଡଚର୍ଚ୍ଚା ବିଷଂ**
**ଶୀତାଂଶୁସ୍ତପନୋ ହିମଂ ହୁତବହଃ କ୍ରୀଡ଼ାମୁଦୋ ଯାତନାଃ ॥ ୨ ॥**

ଅଥାନନ୍ତରେ ଦୂତୀ ବୋଲୁଛି—ହେ ବିପରୀତକାରିଣୀ ପ୍ରତିକୂଳକାରିଣୀ ସ୍ୱଭାବେଂ ରାଧେ, ତୁମ୍ଭେ ଆପଣାକୁ ଯାତନା ଆପଣ କରୁଛ । ଦେଖ ତସ୍ମିନ୍ ପ୍ରିୟେ ଶ୍ରୀକୃଷ୍ଣ ତୁମ୍ଭର ପ୍ରିୟ ଯେ ଶ୍ରୀକୃଷ୍ଣ ତାହାଙ୍କ ବିଷୟରେଂ ବିପରୀତ କର୍ମ କରୁଛ । ତାହା କହିବା ଶୁଣ । ସ୍ନିଗ୍‌ଧେ ଯତ୍ ପରୁଷାସି । ନିଷ୍ଠୁରାସି । କୃଷ୍ଣ ଯେତେବେଳେ ସ୍ନେହ କରନ୍ତି ତୁମ୍ଭେ ସେତେବେଳେ ତାହାଙ୍କୁ ପରୁଷାସି, ନିଷ୍ଠୁର ଭାଷିଣୀ ଭବସି । ବଡ଼ ନିଷ୍ଠୁର କଥା କହ । ଯତ୍ ପ୍ରଣମତି ଯେତେବେଳେ ତୁମ୍ଭଙ୍କୁ ପ୍ରଣାମ କରନ୍ତି ନମସ୍କାର କରନ୍ତି ସେତେବେଳେଂ ତାହାଙ୍କୁ ସ୍ତବ୍‌ଧାସି । ତୁନି ହୁଅ । ଯଦ୍ରାଗିଣି କୃଷ୍ଣ ଯେତେବେଳେ ଅନୁରାଗ କରନ୍ତି ପ୍ରୀତିକରନ୍ତି ତୁମ୍ଭେ ସେତେବେଳେ ତାହାଙ୍କୁ ଦ୍ୱେଷସ୍ଥାସି । ଅପ୍ରୀତି ହୁଅ । ଯଦୁନ୍ମୁଖେ ବିମୁଖତାଂ ଯାତାସି ତୁମ୍ଭର ସମ୍ମୁଖେ ଯେତେବେଳେ ସୁମୁଖ ହାସ୍ୟ ମୁଖ ପ୍ରସନ୍ନ ହୁଅନ୍ତି ସେତେବେଳେ ତୁମ୍ଭେ ବିମୁଖ ହୋଇ ଆନ ଦିଗକୁ ମୁଖ କର । ହେ ରାଧେ ଏ କଥା ତୁମ୍ଭର[୩] ଅସମ୍ଭବ ପ୍ରମାଣ

୧–କ. ୦ପ୍ରକୁଷାସି
୨.କ ଦ୍ୱେଷସ୍ଥାସି
୩–ଙ. ଏ ତୁମ୍ଭର

ଅଟଇ । ଏଣୁକରି ତୁମ୍ଭେ ବିପରୀତ ଅନାସ୍ଥା ପାଉଁଛ । ଏ କଥା ଯୁକ୍ତ ଅଟଇ । ଯତୋ ମନ୍ଦକର୍ତ୍ତା ଭଦ୍ରଂ ନ ବିଦ୍ୟତେ । ଦେଖ ମନ୍ଦ କଲା ପ୍ରାଣୀକ ଭଲ ନାହିଁ । ଦେଖ ବେଦ ପ୍ରମାଣ । ବିପରୀତ କର୍ମର ମହିମା ପ୍ରତ୍ୟକ୍ଷେ ତବ ଶ୍ରୀଖଣ୍ଡଚର୍ଚ୍ଚା ବିଷଂ । ଚନ୍ଦନ ଲେପନ ବିଷ । ଶୀତାଂଶୁସ୍ତପନଂ । ଶୀତାଂଶୁ ଯେ ଚନ୍ଦ୍ର ସେ ତୁମ୍ଭ କର୍ମରେ ସୂର୍ଯ୍ୟ ହୋଇଛନ୍ତି । ହିମଂ ହୁତବହଃ । ଏ ହିମ ତୁମ୍ଭଙ୍କୁ ଅଗ୍ନି ହେଉଛି । କ୍ରୀଡ଼ାମୁଦୋ ଯାତନା । କ୍ରୀଡ଼ାସୁଖ ତୁମ୍ଭଙ୍କୁ ଯାତନା ତୀବ୍ର ବେଦନା ହେଉଅଛି । ଏମାନେ ତୁମ୍ଭଙ୍କୁ ହୋଇବା ଯୁକ୍ତ ଅଟଇ । ତୁମ୍ଭେ ଏବେ ହରିକି ଭଜ । ନ ତୁ ତବ ସୁଖମନ୍ୟଥା । ନୋହିଲେ ତୁମ୍ଭର ସୁଖ ନାହିଁ ।

**ଇତି ଶ୍ରୀଗୀତଗୋବିନ୍ଦମହାକାବ୍ୟେ କବିରାଜଜୟଦେବକୃତୌ କଳହାନ୍ତରିତାବର୍ଣ୍ଣନେ ମନ୍ଦମୁକୁନ୍ଦୋ ନାମ ନବମଃ ସର୍ଗଃ ।**



# ଦଶମଃ ସର୍ଗଃ

**ଶ୍ଲୋକ**

ଅତ୍ରାନ୍ତରେ ମସୃଣରୋଷବଶାମସୀମ[1]-
ନିଃଶ୍ୱାସନିଃସହମୁଖୀଂ ସୁମୁଖୀମୁପେତ୍ୟ ।
ସବ୍ରୀଡମୀକ୍ଷିତସଖୀବଦନାଂ ଦିନାନ୍ତେ
ସାନନ୍ଦଗଦ୍‌ଗଦ୍‌ପଦଂ ହରିରିତ୍ୟୁବାଚ ।। ୧ ।।

ଅଥାନନ୍ତରେ ଦିନାନ୍ତେ ସନ୍ଧ୍ୟା ସମୟେ ସେ ଶ୍ରୀକୃଷ୍ଣ[2] ରାଧାର ନିକଟେ ଯାଇଁ ବସିଲେ । ସେ ରାଧା କେମନ୍ତ ହୋଇଛନ୍ତି । ଅମୃଣା ଯୋଗାରୋଷା ତେଣେ କରି କୋପ ବଶ ହୋଇଁ ଅସୀମ ଯେ ଗଣିବାର ସୀମା ନ ପାଇଁ ଏମନ୍ତ ବହୁତ ନିଶ୍ୱାସ ମାନନ୍ତ ସହ ନିର୍ଘାତ କରି ଗୁଣ୍ଡୁଛନ୍ତି । ନିଃସହମୁଖୀ ଅପ୍ରସନ୍ନମୁଖୀ ବିଶେଷ କରି ମୁଖ ଅପ୍ରସନ୍ନ ହୋଇଛି । ଏମନ୍ତ ଯେ ରାଧା ତାହାଙ୍କ ନିକଟକୁ ଯାଇଁ କୃଷ୍ଣ ଚାହିଁଲେ ରାଧାର ମୁଖକୁ । ସେ ରାଧାର ମୁଖ କେମନ୍ତ ହୋଇଛି । ସବ୍ରୀଡମୀକ୍ଷିତସଖୀବଦନାଂ । ଲଜ୍ୟା ସହିତ ହୋଇ ସଖି ଯେ ଦୃଷ୍ଟି ତାହାର ବଦନକୁ ଚାହୁଁଛନ୍ତି । ଏମନ୍ତ ଯେ ରାଧା ତାହାଙ୍କୁ ଶ୍ରୀକୃଷ୍ଣ ସାନନ୍ଦ ଗଦଗଦଂ ପଦଂ ଉବାଚ । ଆନନ୍ଦଯୁକ୍ତ ଯେ ଗଦ୍‌ଗଦ୍ ବଚନ ତାହାଙ୍କୁ କୃଷ୍ଣ ବୋଲୁଛନ୍ତି ।

---

୧-ଖ. ୦ବଶାଦସୀମ
୨ ଙ. କୃଷ୍ଣ

## ଗୀତ

(ଦେଶବରାଡ଼ୀରାଗେଣ ଗୀୟତେ)

**ବଦସି ଯଦି କିଞ୍ଚିଦପି ଦନ୍ତରୁଚିକୌମୁଦୀ**
**ହରତି ଦରତିମିରମତିଘୋରମ୍ ।**
**ସ୍ଫୁରଦଧରସୀଧବେ ତବ ବଦନଚନ୍ଦ୍ରମା**
**ରୋଚୟତୁ[1] ଲୋଚନଚକୋରମ୍ ॥**
**ପ୍ରିୟେ ଚାରୁଶୀଳେ, ମୁଞ୍ଚ ମୟି ମାନମନିଦାନମ୍ ।**
**ସପଦି ମଦନାନଳୋ ଦହତି ମମ ମାନସମ୍ ।**
**ଦେହି ମୁଖକମଲମଧୁପାନମ୍ ॥ ୧ ॥**
( ଧ୍ରୁବପଦମିଦମ୍ )

ଅଥାନନ୍ତରେ ଶ୍ରୀକୃଷ୍ଣ ବୋଲୁଛନ୍ତି—ହେ ପ୍ରିୟେ ଚାରୁଶୀଳେ, ସ୍ୱଭାବେ ତୁମ୍ଭେ ସୁନ୍ଦର ଅଟ । ଉପମା ଦେବାକୁ ନାହିଁ । ତୁମ୍ଭେ ଏବେ ମମ ବିଷୟେ ଅନିଦାନଂ ଅକାରଣ ମାନଂ ମୁଞ୍ଚ । ତୁମ୍ଭେ ଯେ ଅକାରଣେ ଅଦୋଷେ ମାନ ମୋତେ କରିଛ ଏ ମାନ ଛାଡ଼ । ମମ ଦୁଃଖଂ ଶୃଣୁ । ମୋହର ଦୁଃଖ ଶୁଣ । ସପଦି ଇଦାନୀଂ ମଦନାନଳଃ କାମାଗ୍ନିଃ ମମ ମାନସଂ ଚିତ୍ତଂ ଦହତି । ଏବେ ଏହିକ୍ଷଣି ମୋହର ମନକୁ କାମାଗ୍ନି ଦହନ କରୁଛି । ସେ ଅନଳ କେମନ୍ତ ଅଟଇ । ଦାହନ ଅତି କୁତ୍ସିତେନ ଭୟଙ୍କରଃ । ଅତ୍ୟନ୍ତ କଷ୍ଟ ଭୟଙ୍କର କାଳଦଣ୍ଡ ଇବ ଦହତି । କାଳାଗ୍ନି ର ପ୍ରାୟେ ଦହନ କରୁଛି । ଏବେ ଦେହି ମୁଖକମଳ ମଧୁପାନଂ । ତୁମ୍ଭର ମୁଖପଦ୍ମର ଯେ ଅମୃତରସ ତାହା ଚୁମ୍ବନ ଦାନେ କରି ମୋ ଅଗ୍ନି ଲିଭାଅ । ମୋର ମନ ଦହନ ଶାନ୍ତ କର । ହେ ସଖି, ଯେବେ ତୁମ୍ଭେ ଚୁମ୍ବନ ନ କରିବ ତେବେ ଏମନ୍ତ କର । ଯଦି କିଞ୍ଚିଦ୍ ବଦସି । କିଛି କଥା ମୋତେ ବୋଲ । ତୁମ୍ଭେ କଥା କହିଲେଂ ତବ ଦନ୍ତରୁଚିକୌମୁଦୀ ତୁମ୍ଭ ଦନ୍ତରୁ ଯେ କିରଣ ସେ ସୁନ୍ଦର ଦିଶିବ । ସେ କାନ୍ତି ମୋହର ଅତି ଘୋର ଦରତିମିରଂ ହରନ୍ତୁ । ମୋହର ଅତ୍ୟନ୍ତ ଘୋର କାମଭୟାନ୍ଧକାର ହର । ସ୍ଫୁରଦଧରସୀଧବେ । ହେ ପ୍ରିୟେ, ଅମୃତ ବର୍ଷଣ କରିବା ଅର୍ଥେ ତୁମ୍ଭର ଅଧର ସ୍ଫୁରୁଛି । ଏମନ୍ତ ଅମୃତ ନିଧି ଯେ ତୁମ୍ଭର ବଦନ ଚନ୍ଦ୍ରମା ମୁଖଚନ୍ଦ୍ର ସେ ମୋହର ଲୋଚନ ଚକୋର ଦୁଇ ତାହାର କିରଣ ପାନ କରି ଖାଅନ୍ତୁ[2] ।

---

୧ କ. ରୋଚୟତି

୨-ଖ. ଲଡନ୍ତୁ ।

**ସତ୍ୟମେବାସି ଯଦି ସୁଦତି ମୟି କୋପିନୀ**
**ଦେହି ଖରନୟନଶରଘାତମ୍ ।**
**ଘଟୟ ଭୁଜବନ୍ଧନଂ ଜନୟ ରଦଖଣ୍ଡନଂ**
**ଯେନ ବା ଭବତି ସୁଖଜାତମ୍ ।। ୨ ।।**

ଶ୍ରୀକୃଷ୍ଣ ବୋଲୁଛନ୍ତି—ହେ ସୁଦତି, ହେ ଶୋଭନଦନ୍ତୀ ଅତ୍ୟନ୍ତ ସୁନ୍ଦର ଯେ ତୁମ୍ଭର ଦନ୍ତପନ୍ତି ଯଦି ତ୍ୱଂ ମୟି କୋପିନୀ, ସତ୍ୟମେବାସି । ତୁମ୍ଭେ ମୋତେ ଯେବେ କୋପ କରିବ ଏ କଥା ଯେବେଂ ତୁମ୍ଭର ସତ୍ୟ ତେବେ ଦେହି ଖରନୟନ-ଶରଘାତଂ । ତୀକ୍ଷ୍ଣ ନୟନ ପ୍ରହାରଂ ଦେହି । ଅତି ତୀକ୍ଷ୍ଣ ଯେ ତୁମ୍ଭର ନୟନ କଟାକ୍ଷବାଣ ସେ ବାଣେ କରି ମୋତେ ଘାତ କର । ଯେବେ କଟାକ୍ଷ ବାଣେ ମୋତେ ଘାତ ନ କରିବ ତେବେ ଭୁଜ ବନ୍ଧନ ଘଟୟ । ତୁମ୍ଭର ଏ ଭୁଜ ପାଶ ହୋଇଲା । ଏଣେ କରି ମୋତେ ବନ୍ଧନ କର । ବନ୍ଧନକରି ରଦଖଣ୍ଡନଂ ଜନୟ । ଦନ୍ତେ କରି ମୋ ଦେହରେ ଖଣ୍ଡନ କର । ନ ତୁ ଅବା ଯେନ ତେ ତବ ସୁଖ ଜାତଂ ଭବତି । ଯେ ପ୍ରକାରେ ତୁମ୍ଭ ସୁଖ ଜାତ ହୋଇବ ତାହା କର ।

**ତ୍ୱମସି ମମ ଭୂଷଣଂ ତ୍ୱମସି ମମ ଜୀବନଂ**
**ତ୍ୱମସି ମମ ଭବଜଲଧିରତ୍ନମ୍ ।**
**ଭବତୁ ଭବତୀହ ମୟି ସତତମନୁରୋଧିନୀ**
**ତତ୍ର ମମ ହୃଦୟମତିଯତ୍ନମ୍ ।। ୩ ।।**

ହେ ରାଧେ, ତ୍ୱଂ ମମ ଭୂଷଣମସି । ତୁମ୍ଭେ ମୋହର ଦେହକୁ ଭୂଷଣ ଅଟ । ମଣିମାଣିକ୍ୟ ସୁବର୍ଣ୍ଣଯୁକ୍ତ କଲେ ଯେମନ୍ତ ଶୋଭା ହୋଇ । ତ୍ୱଂ ମମ ଜୀବନମସି । ତୁମ୍ଭେ ମୋହର ପ୍ରାଣଧାରଣ ଜୀବନ ଅଟ । ମମ ଭବଜଲଧିରତ୍ନଂ ତ୍ୱମସି । ତୁମ୍ଭେ ମୋହର ସଂସାର ସମୁଦ୍ରର ରତ୍ନ ଅଟ । ହେ ରାଧେ ଭବତି ତ୍ୱଂ । ତୁମ୍ଭେ ଏବେ ସତତଂ ଅନବରତଂ । ମୋତେ ଅନୁରୋଧିନୀ ଅନୁରାଗିଣୀ । ଦୟା ଭବନ୍ତୀ ଭବ । ଦୟାଳୁ ହୁଅ । ତୁମ୍ଭେ ମୋତେ ଦୟା କର । ଦେଖ ମମ ହୃଦୟଂ । ତତ୍ର ବିଷୟରଂ ପ୍ରତି ଅତି ଯତ୍ନଂ ହେ ସଖି ତୁମ୍ଭେ ମୋତେ ଦୟା କରିବ ବୋଲି ମୋହର ମନ ଏ କଥାକୁ ଅତି ଯତ୍ନକରି ବୋଲୁଛି ।

**ନୀଳନଳିନାଭମପି ତନ୍ୱି ତବ ଲୋଚନଂ**
**ଧାରୟତି କୋକନଦରୂପମ୍ ।**
**କୁସୁମଶରବାଣଭାବେନ ଯଦି ରଞ୍ଜୟସି**
**କୃଷ୍ଣମିଦମେତଦନୁରୂପମ୍ ॥ ୪ ॥**

ହେ ତନ୍ୱି କୋମଳାଙ୍ଗି ବଧେ, ତୁମ୍ଭ ଦୁଇ ଲୋଚନ ସ୍ୱଭାବେ ନୀଳନଳିନାଭଂ । ନୀଳ ପଦ୍ମର ପ୍ରାୟ ଆଭା ଦିଶଇ । ଏ ଲୋଚନ କୋକନଦ ରୂପଂ ଧାରୟତି । କୋକନଦ ଯେ ରକ୍ତୋତ୍ପଳ ତାହାର ରୂପ ଧରିଛି । ଏବେ ତୁମ୍ଭେ ଏମନ୍ତ କର । କୁସୁମଶର ଯେ କନ୍ଦର୍ପ ତାହାର ବାଣ ଭାବେନ । କନ୍ଦର୍ପ ବାଣ ପ୍ରାୟେ କରି ଯେବେ ରଞ୍ଜୟସି । କୃଷ୍ଣଂ ମମ ବର୍ଣ୍ଣ କଜ୍ଜ୍ୱଳଂ[1] । ମୋହର ଦେହର ବର୍ଣ୍ଣର ପ୍ରାୟ ତୋହର କଜ୍ଜ୍ୱଳ ଏ ଦୁଇ ନୟନ ଯେବେ ରଞ୍ଜିପାରୁ ତେବେ ଇଦଂ ଏ କଜ୍ଜ୍ୱଳ ଏତତ୍ ଅନୁରୂପଂ ଏ ନୟନର ଅନୁରୂପ ହୋଇବ ।

**ସ୍ଫୁରତୁ କୁଚକୁମ୍ଭୟୋରୁପରି ମଣିମଞ୍ଜରୀ**
**ରଞ୍ଜୟତୁ ତବ ହୃଦୟଦେଶମ୍ ।**
**ରସତୁ ରସନାପି ତବ ଘନଜଘନମଣ୍ଡଳେ**
**ଘୋଷୟତୁ ମନ୍ମଥନିଦେଶମ୍ ॥ ୫ ॥**

ହେ କାନ୍ତେ ! ପ୍ରାଣ ବଲ୍ଲଭେ ! ତବ କୁଚକୁମ୍ଭୟୋରୁପରି ସ୍ତନଦ୍ୱୟୋରୁପରି ତୁମ୍ଭର ଏ ଦୁଇ କୁଚକୁମ୍ଭ ଉପରେ ମଣିମଞ୍ଜରୀ ମୁକ୍ତାମାଳା ସ୍ଫୁରତୁ । ଏ ମୁକ୍ତାମାଳା ଯେଉଁଥିପାଇଁ[2] ଥୋଇଛ ଏହା ଦୁଇସ୍ତନ ଉପରେଂ ଗଳାରେ ଲମ୍ବାଅ । ଏ ମାଳା ତବ ହୃଦୟଦେଶଂ ରଞ୍ଜୟତୁ । ତୁମ୍ଭର ହୃଦୟ ଦେଶକୁ ରଞ୍ଜନ ହେଉ । ଶୋଭା ହେଉ । ଏ ଯେ ରସନା କଟି ମେଖଳା ଏ ଘନ ଜଘନ ମଣ୍ଡଳ ଉପରେ କଟି ଦେଶେ ରସତୁ । ସୁନ୍ଦର ଦଶୁ । ମନ୍ମଥ ନିର୍ଦ୍ଦେଶଂ ଘୋଷୟତୁ । ମନ୍ମଥ ଯେ କନ୍ଦର୍ପ ତାହାର ନିର୍ଦ୍ଦେଶ ଯେ ଆଜ୍ଞା ତାହା ଘୋଷଣ କରୁ ।

---

୧-ଖ. କଜ୍ଜ୍ୱଳଂ ।
୨-ଖ. ଯେ ଯେଉଁ

**ସ୍ଥଳକମଳଗଞ୍ଜନଂ ମମ ହୃଦୟରଞ୍ଜନଂ**
**ଜନିତରତିରଙ୍ଗପରଭାଗମ୍ ।**
**ଭଣ ମସୃଣବାଣି କରବାଣି ଚରଣଦ୍ୱୟଂ**
**ସରସଲସଦଲକ୍ତକରାଗମ୍ ।୭।**

ହେ ମସୃଣବାଣି, ହେ କୋମଳଭାଷିଣୀ ! ତବ ଚରଣଦ୍ୱୟଂ ତୁମ୍ଭର ଏହୁ ଦୁଇ ଚରଣେ ମୁଁ ଅଲକ୍ତକ ରାଗ କରିବାଣି । ଅଳତା ରଙ୍ଗ କରିବି । ତ୍ୱଂ ଭଣ ଆଜ୍ଞା ଦିଅ । ତେ ତବ ଚରଣଂ ସ୍ଥଳକମଳଗଞ୍ଜନଂ । ସ୍ଥଳ କୁସୁମ ପୁଷ୍ପକୁ ଗଞ୍ଜିଲ କୋମଳ ସୁନ୍ଦର ପଣେ । ପୁନଃ କିଂ ଭୂତଂ । ପୁଣି ସେ ଚରଣ କେମନ୍ତ ଅଟଇ । ମମ ହୃଦୟରଞ୍ଜନଂ । ମମ ଚିତ୍ତଂ ତୋଷଣଂ । ମୋହର ମନକୁ ରଞ୍ଜନ ଅଟଇ । ପୁନଃ କିଂ ଭୂତଂ । ପୁଣି କେମନ୍ତ ଅଟଇ । ଜନିତ·ରତିରଙ୍ଗ ପରଭାଗଂ ଉତ୍ପାଦିତ ରତି-ଶୋଭନଂ । ରତିଭୂମି ଯେ ନାଭିଠାରୁ ଚରଣ ପର୍ଯ୍ୟନ୍ତ ଏତେ ଦୂର ଶୋଭାକର ।

**ସ୍ମରଗରଳଖଣ୍ଡନଂ ମମ ଶିରସି ମଣ୍ଡନଂ**
**ଦେହି ପଦପଲ୍ଲବମୁଦାରମ୍ ।**
**ଜ୍ୱଳତି ମୟି ଦାରୁଣୋ ମଦନକଦନାନଳୋ**
**ହରତୁ ତଦୁପାହିତବିକାରମ୍ ॥ ୭ ॥**

ହେ ପ୍ରିୟେ, ତବ ପାଦପଲ୍ଲବଂ ମମ ଦେହି । ହେ ରାଧେ, ତୋହର ପଦ ମୋତେ ଅଳତା ଲଗାଇବାକୁ[¹] ବଢାଇ ଦିଅ । ସେ ପାଦ ତୋହର କେମନ୍ତ ଅଟଇ । ସ୍ମର ଯେ କନ୍ଦର୍ପ ସେ କାମ ତାହାର ଗରଳ ଯେ ବିଷ ଖଣ୍ଡନ କରିବ । ଶିରସି ମଣ୍ଡନଂ । ସେ ପାଦର ଶିର ଯେ ଅଙ୍ଗୁଳିମାନେ ତହିଁରେ ମଣିମୟ ମୁଦ୍ରିକା ନୂପୁରାଦିରେ ମଣ୍ଡନ ହୋଇଛି । ଏମନ୍ତ ପାଦପଲ୍ଲବ ଆଣି ମୋହର ମୁଣ୍ଡରେ ଦିଅ । ସେ ପାଦକୁ କି ପଟାନ୍ତର ଦେବା । ଉଦାରଂ ଉତ୍କୃଷ୍ଟଂ ସୁନ୍ଦରଂ ହେ ପ୍ରିୟେ ମୟି ମମ ଚିତ୍ତେ ମଦନ କଦନାନଳଃ ମାରଣକାମାଗ୍ନିଃ ଦାରୁଣୋ ଭୟଂକରୋ ଜ୍ୱଳତି । ମୋହର ହୃଦୟରେ କଦନ ଭୟଙ୍କର ଦାରୁଣ ମଦନାଗ୍ନି ଜଳୁଛି । ତଦୁପାହିତ-ବିକାରଂ । କାମ ଉପାହିତ ସନ୍ତାପ ହରତୁ । ସେ ଅଗ୍ନି କାମ ଦେବତାର ଉପାହିତ ସନ୍ତାପ ହରୁ । ତୁମ୍ଭର ପାଦ ଉପାହିତ ବିକାରଂ ହରତୁ । ଶୀତଳ ବିକାର ହରୁ । ଅନଳ ନିଭାଉ ।

---

୧-ଙ ଦେଅ ।
୨-ଙ ଦେବାକୁ

**ଇତ ଚଟୁଳଚଟୁପଟୁଚାରୁ ମୁରବୈରିଣୋ ରାଧିକାମଧିବଚନଜାତମ୍ ।**
**ଜୟତୁ ପଦ୍ମାବତୀରମଣଜୟଦେବକବିଭାରତୀଭଣିତମିତିଗୀତମ୍ ।।୮।।**

ଜୟଦେବ କବି କହୁଛନ୍ତି[1]—ହେ ବୈଷ୍ଣବଜନମାନେ ଶୁଣ । ଜୟଦେବ କବି ଭାରତୀ ଭଣିତଂ ଯୁଷ୍ମାନ୍ ଜୟତୁ । ଏ ଜୟଦେବର ଭଣିଲା ବଚନ ତୁମ୍ଭମାନଙ୍କୁ ଚତୁର୍ବର୍ଗ ଦେଉ । ଏହା ଶ୍ରବଣ କୀର୍ତ୍ତନ କର । ଜୟଦେବ ଭଣିତଂ କିଂ ଭୂତଂ । ଜୟଦେବର ବଚନ କେମନ୍ତ ଅଟଇ । ଇତି ଚଟୁଳ ଚଟୁପଟୁ ଚାରୁ-ମୁରବୈରିଣୋ ସୁନ୍ଦର ମାଧବସ୍ୟ । ଇତି ଚଟୁଳ ଚଟୁ ପଟୁ ଯୁକ୍ତ ଚାରୁ ଅତ୍ୟନ୍ତ ସୁନ୍ଦର । ମୁର ବୈରୀ ଯେ ମାଧବ ସେ ଏମନ୍ତ କରି ପଟୁ । ବହୁଳ ବଚନମାନ କୃଷ୍ଣର ରାଧିକାଂ ଅଧିବଚନଜାତମ୍ । ରାଧିକାକୁ ବହୁତ ପ୍ରିୟ ବଚନ । ସମର୍ଥ ରମଣୀୟ ଯୋଗ୍ୟକରି କହୁଛନ୍ତି ଯେ କଥା—

**ଶ୍ଳୋକ**

**ପରିହର କୃତାତଙ୍କେ ଶଙ୍କାଂ ତ୍ୱୟା ସତତଂ ଘନ-**
**ସ୍ତନଜଘନୟାକ୍ରାନ୍ତେ ସ୍ୱାନ୍ତେ ପରାନବକାଶିନି ।**
**ବିଶତି ବିତନୋରନ୍ୟୋ ଧନ୍ୟୋ ନ କୋଽପି ମମାନ୍ତରଂ**
**ସ୍ତନଭରପରିରମ୍ଭାରମ୍ଭେ ବିଧେହି ବିଧେୟତାମ୍ ।। ୨ ।।**

ତଦନନ୍ତରେ[2] କୃଷ୍ଣ ବୋଲୁଛନ୍ତି ହେ ରାଧେ, ହେ କୃତସାଧସେ, ମୋହର ବିଷୟେ ତୁମ୍ଭେ ଭୟ ଆତଙ୍କ କରିଛ । ସତତଂ ଅନବରତଂ ନିରନ୍ତରେ ଆତଙ୍କ ଶଙ୍କାଂ ପରିହର ତ୍ୟଜ । ଭୟ ଛାଡ଼ । ଘନସ୍ତନଜଘନୟା ଘନ ନିବିଡ଼ ଯେ ତୁମ୍ଭର ସ୍ତନ ଜଘନ ସେ ସୁନ୍ଦରୀ ତୁମ୍ଭେ ମୋହର ସ୍ୱାନ୍ତେ ଚେତସି । ଚେତନାରେ ସ୍ୱାନ୍ତେ ସତି । ଚିତ୍ତରେ ତୁମ୍ଭେ ଆଚ୍ଛାଦିଲ । ଏଣୁକରି ମୋହର ମନର ମଧ୍ୟେ ତୁମ୍ଭ ଭିନ୍ନେ ଆନ ନାହିଁ । ମମାନ୍ତରେ ମମ ଅନ୍ତଃକରଣେ[3] ବିତନୋ କାମାତ୍ ଅନ୍ୟୋ କୋଽପି ଧନ୍ୟୋ ରମଣୀୟୋଽପି ପ୍ରବିଶତି । ମୋହର ଅନ୍ତଃକରଣରେ କାମହିଁ ସେ ଧନ୍ୟ ହୋଇଛି । ଆଉ କାହାରି ହିଁ ଅଧିକାର ନାହିଁ । ମମ ହୃଦି କିଂ ଭୂତେ । ସ୍ତନଭର-ପରିରମ୍ଭାରମ୍ଭେ ଗାଢ଼ସ୍ତନ ଆଲିଙ୍ଗନ ଉପକ୍ରମେ[4] କୃତେ । ଗାଢ଼ କରି ନିବିଡ଼ ସ୍ତନର ଆଲିଙ୍ଗନ କରିବାକୁ ଆରମ୍ଭ କରିଛି । ଏଣୁ କରି ମୋହର ହୃଦୟରେ କାମ ହିଁ ସେ ଅଛି । ଏଣୁକରି ମୋତେ ବିଧେୟତାଂ ବିଧେହି । ମୋତେ ତୁମ୍ଭେ ସେବକ କର । ମୁଁ ତୋହର ସେବା କରୁଥିବ ।

---

୧-ଖ. ବୋଲୁଛନ୍ତି ।
୨-ଖ. ତଦନ୍ତରେ
୩-କ. ଅନ୍ତଃକରେ
୪-କ. ଉପକ୍ରମ

**ବ୍ୟଥୟତି ବୃଥା ମୌନଂ ତନ୍ୱି ପ୍ରପଞ୍ଚୟ ପଞ୍ଚମଂ,**
**ତରୁଣି ମଧୁରାଳାପୈସ୍ତାପଂ ବିନୋଦୟ ଦୃଷ୍ଟିଭିଃ ।**
**ସୁମୁଖି ବିମୁଖୀଭାବଂ ତାବଦ୍ ବିମୁଞ୍ଚ ନ ମୁଞ୍ଚ ମାଂ**
**ସ୍ୱୟମତିଶୟସ୍ନିଗ୍ଧୋ ମୁଗ୍ଧେ ପ୍ରିୟୋଽୟମୁପସ୍ଥିତଃ ।। ୩ ।।**

ଅଥାନନ୍ତରେ କୃଷ୍ଣ ବୋଲୁଛନ୍ତି—ହେ ତନ୍ୱି ! ତବାୟଂ ବୃଥା ମୌନଂ ମାଂ ବ୍ୟଥୟତି । ହେ ତନ୍ୱି ହେ କୋମଳାଙ୍ଗି ରାଧେ, ତୋହର ଯେ ମିଥ୍ୟା ମୌନଂ ମିଛେ ଯେ ମୌନ ହୋଇଛ ଏ ମୌନ ମୋତେ ବ୍ୟଥା ଜାତ କରାଉଅଛି । ଏଣୁ କରି ପ୍ରପଞ୍ଚୟ ପଞ୍ଚମଂ । ବିସ୍ତାରୟ । ପଞ୍ଚମ ସ୍ୱରକୁ ବିସ୍ତାର କର । ମୁଁ ଭାବେ ତୁମ୍ଭର ଯେ ବାଣୀ ପଞ୍ଚମ ସ୍ୱରମାନ ସୁନ୍ଦର ଅଟଇ । ପଞ୍ଚମ ସ୍ୱର କୋକିଳଗାନଂ । ଏଣୁକରି ହେ ତରୁଣୀ ମଧୁରାଳାପୈଃ ପରିହାସ୍ୟୋକ୍ତିଃ ପରିହାସ୍ୟ ବାକ୍ୟ କରି ମଧୁର ବଚନ କରି ମମ ତାପଂ ବିମୁଞ୍ଚୟ । ନିବର୍ତ୍ତୟ । ମୋହର ତାପ ଶାନ୍ତକର । ହେ ସୁମୁଖି ! ସୁନ୍ଦରମୁଖି ରାଧେ, ଯାବତ ମୁଁ ତୁମ୍ଭ ପାଖରେ ଥିବି ତାବତ୍ ତୁମ୍ଭେ ବିମୁଖିଭାବ ଅପ୍ରସନ୍ନ ଭାବ ମୁଞ୍ଚ । ଏ ବିମୁଖ ଭାବ ଛାଡ଼ । ଦୃଷ୍ଟିଭିର୍ବିନୋଦୟ । ତୁମ୍ଭର ପ୍ରସନ୍ନ ଚାହାଁବାରେ କରି ଏ ତାପ ନାଶ କର । ହେ ମୁଗ୍ଧେ, ବିଗ୍ଧର ଖ୍ରେନ୍ୟ ସୁଷ୍ଟକମୟଂ ପ୍ରିୟଃ ଶ୍ରୀକୃଷ୍ଣଃ ସ୍ୱୟଂ ଉପସ୍ଥିତଃ । ଉପ ସମୀପଂ ଗତଃ । ଅତିଶୟ ସ୍ନିଗ୍ଧଃ । ଅତି ନେହ କେ [illegible] ହେନ୍ତ ଶ୍ରୀକୃଷ୍ଣ ତୁମ୍ଭ ତାହାଁକ ସ୍ୱୟଂ ପ୍ରତ୍ୟକ୍ଷ ହୋଇ ଆପଣ ଆସିଅଛନ୍ତି ।

**ମୁଗ୍ଧେ ବିଧେହି ମୟି ନିର୍ଦ୍ଦୟଦନ୍ତଦଂଶ—**
**ଦୋର୍ବଲ୍ଲିବନ୍ଧନିବିଡ଼ସ୍ତନପୀଡ଼ନାନି ।**
**ଚଣ୍ଡି ତ୍ୱମେବ ମୁଦମଞ୍ଚ[1] ନ ପଞ୍ଚବାଣ—**
**ଚଣ୍ଡାଳକାଣ୍ଡଦଳନାଦସବଃ ପ୍ରୟାନ୍ତୁ ।। ୪ ।।**

ହେ ମୁଗ୍ଧେ ! ଅବିବେକିନୀ ରାଧେ ! ମୟି ଏବଂ ବିଧେହି କୁରୁ । ତୁମ୍ଭେ ଏବେ ଏମନ୍ତ କର । ନିର୍ଦ୍ଦୟ ଦନ୍ତ ଦଂଶ । ଯେବେ ମୋତେ ନିର୍ଦ୍ଦୟା ହୋଇବ ତେବେ ଦନ୍ତ ଦଂଶ । ଦନ୍ତ କରି ଦଂଶ । ଷତକରି ଦୋର୍ବଲ୍ଲି ବନ୍ଧ ଦୁଇ ଭୁଜେ ମୋତେ ବାନ୍ଧ । ନିର୍ଭର ସ୍ତନ ପୀଡ଼ନାନି । ନିର୍ଭର କରି ମୋ ଦେହରେ ଦୁଇ ସ୍ତନେ କରି ପୀଡ଼ା କର । ସ୍ତନ ଯେନି ମୋ ଦେହରେ ମର୍ଦ୍ଦନ କର । ହେ ଚଣ୍ଡି କୋପିନି ରାଧେ, ତ୍ୱଂ ମୁଦଂ ହର୍ଷଂ ନ ମୁଞ୍ଚ । ତୁମ୍ଭେ ଏ କୋପ ଛାଡ଼ ହରଷ ପାଅ ।

୧-କ.ଖ. ଂମୁଞ୍ଚ

ମୃଣାଳକାଣ୍ଡଂ ଦଳନାତ୍ ମୋତେ କାମ ବାଣ ମାନେ ମୃଣାଳର ପ୍ରାୟେ ହୋଇଁ ବୋଲୁଛନ୍ତି । ତାହାଙ୍କର ତାପେ ମୋହର ଅସବଃ ପ୍ରାଣାନ ନ ପ୍ରୟାନ୍ତୁ । ମୋହର ପ୍ରାଣମାନ ଗୁଡ଼ ନ ଯାଆନ୍ତୁ । ମୋତେ ଜୀବନ ଦିଅ ।

**ବନ୍ଧୂକଦ୍ୟୁତିବାନ୍ଧବୋଽୟମଧରଃ ସ୍ନିଗ୍ଧୋ ମଧୂକଚ୍ଛବି-**

**ର୍ଗଣ୍ଡେ ଚଣ୍ଡି ଚକାସ୍ତି ନୀଳନଳିନଶ୍ରୀମୋଚନଂ ଲୋଚନମ୍ ।**

**ନାସାଭ୍ୟେତି[1] ତିଳପ୍ରସୂନପଦବୀଂ କୁନ୍ଦାଭଦନ୍ତି ପ୍ରିୟେ**

**ପ୍ରାୟସ୍ତ୍ୱନ୍ମୁଖସେବୟା ବିଜୟତେ ବିଶ୍ୱଂ ସ ପୁଷ୍ପାୟୁଧଃ ॥ ୫ ॥**

ଶ୍ରୀକୃଷ୍ଣ ବୋଲୁଛନ୍ତି—ହେ ପ୍ରିୟେ ! ତବାୟଂ ଅଧରଃ ଓଷ୍ଠଃ ବନ୍ଧୂକ ଦ୍ୟୁତି ବାନ୍ଧବଃ । ବନ୍ଧୂକ ପୁଷ୍ପର ଦ୍ୟୁତି ଯେ କାନ୍ତି ତାହାର ବନ୍ଧୁ ଅଟଇ । ତାହାର ପ୍ରାୟେ ରକ୍ତ ବର୍ଣ୍ଣ । ସ୍ନିଗ୍ଧୋ ଅଧର ସ୍ନିଗ୍ଧୋ ଯେ ଅଧର ଶୋଭା ହେ ଚଣ୍ଡି ହେ କୋପିନି ତବ ଗଣ୍ଡେ କପୋଳ ତଳେ ମଧୂକ ଛବିଂ କାନ୍ତି ବିରାଜତେ । ତୁମ୍ଭର ଗଣ୍ଡସ୍ଥଳ ଯେ କପୋଳତଳ ତହିଁରେ ମଧୂକ ଯେ ମହୁଲ ପୁଷ୍ପ ତାହାର ପ୍ରାୟେ ଦିଶୁଛି । ତୁମ୍ଭର କର୍ଣ୍ଣର ଶୋଭା ତବାୟଂ ଲୋଚନଂ ନୀଳ ନଳିନସ୍ୟ ଶ୍ରୀମୋଚନଂ । ନୀଳ ପଦ୍ମସ୍ୟ ଶୋଭାଖଣ୍ଡନଂ । ନୀଳ ପଦ୍ମର ଶୋଭା ଖଣ୍ଡନ କରୁଛି । ତୁମ୍ଭର ଲୋଚନ । ହେ କୁନ୍ଦାଭ ଦନ୍ତି ପ୍ରିୟେ । କୁନ୍ଦପୁଷ୍ପବତ୍ କାନ୍ତି ଦନ୍ତମାଳନ କୁନ୍ଦ ପୁଷ୍ପର ପ୍ରାୟେ ଯେ ତୁମ୍ଭର ଦନ୍ତପନ୍ତି ଦନ୍ତମାଳ ହେ ପ୍ରିୟେ ପ୍ରାଣବଲ୍ଲଭେ ତବାୟଂ ନାସା ତିଳ ପ୍ରସୂନ ପଦବୀଂ ମନେ୍ୟତି । ତୁମ୍ଭର ଏ ନାସା ତିଳ ପ୍ରସୂନ ଯେ ତିଳ ପୁଷ୍ପ ତାହାର ପଦବୀ ଯେ ତାହାର ପ୍ରାୟେ ଶୋଭା କରୁଛି । ହେ ସଖୀ, ଏ ଆଶ୍ଚର୍ଯ୍ୟମାନ ଦେଖି ମୁଁ ଏମନ୍ତ ପ୍ରାୟେ ମଣୁଛି । ପ୍ରାୟ ସ୍ତ୍ୱନ୍ମୁଖସେବୟା ସ ପୁଷ୍ପାୟୁଧଃ କନ୍ଦର୍ପଃ ବିଶ୍ୱଂ ସର୍ବଂ ଜଗତ୍ ବିଜୟତେ । ପୁଷ୍ପାୟୁଧ ଯେ କନ୍ଦର୍ପ ସେ ତୁମ୍ଭର ମୁଖକୁ ସେବାକରି ପଞ୍ଚପୁଷ୍ପ ବାଣ ପାଇଁ କି କରି ସବୁ ସଂସାରକୁ ଜିଣୁଛି । ହେ ସଖି, ଏଣୁକରି ବଡ଼ ଆଶ୍ଚର୍ଯ୍ୟ ତୋହର ତହିଁ ଦେଖିଲା । ପୃଥ୍ୱୀଗତା ବିବୁଧ ଯୌବନଂ ବହସି । ତୁମ୍ଭେ ଏ ଭୂମିରେ ଥାଇ ବିବୁଧ ଯେ ଦେବତାମାନେ ତାହାଙ୍କର ଯୌବନ ପାଇଁ ସେମାନଙ୍କୁ ଦେହରେ ବହିଛ ଯେ ଅଙ୍ଗେ ଯେ ଦେବକନ୍ୟାକୁ ବହିଛ ତାହା କହିବା ଶୁଣ ।

୧-କ. ୦କାନ୍ତି

୨-ଖ. ନାଶାଭ୍ୟେତି

**ଦୃଶୌ ତବ ମଦାଳସେ ବଦନମିନ୍ଦୁସନ୍ଦୀପନଂ**
**ଗତିର୍ଜନମନୋରମା ବିଧୁତରମ୍ଭମୂରୁଦ୍ୱୟମ୍ ।**
**ରତିସ୍ତବ କଳାବତୀ ରୁଚିରଚିତ୍ରଲେଖେ ଭ୍ରୁବା-**
**ବହୋ ବିବୁଧଯୌବନଂ ବହସି ତନ୍ୱି ପୃଥ୍ୱୀଗତାମ୍ ।। ୭ ।।**

ହେ ତନ୍ୱୀ କୋମଳାଙ୍ଗୀ ରାଧେ, ଦୃଶୌ ତବ ମଦାଳସେ । ତୁମ୍ଭର ଦୁଇ ଚକ୍ଷୁରେଂ ମଦାଳସା ନାମକ[1] ଯେ ଦେବକନ୍ୟା ତାହାଙ୍କୁ ବହୁଛ । ମଦନମତ୍ତେ କରି ଅଳସ ହୋଇଛନ୍ତି ଦୁଇ ଚକ୍ଷୁ ତୁମ୍ଭର ବଦନମିନ୍ଦୁସନ୍ଦୀପନଂ । ତବ ବଦନଂ ଇନ୍ଦୁସନ୍ନିଭଂ ଯତ୍ । ତୁମ୍ଭର ମୁଖ ସେ ଚନ୍ଦ୍ରର ପ୍ରାୟେ ଦିଶଇ । ଯେଣୁକରି ତୁମ୍ଭେ ଇନ୍ଦୁମତୀ ନାମେ ଯେ ଦେବକନ୍ୟା ତାହାଙ୍କୁ ମୁଣ୍ଡରେ[2] ବହୁଅଛ । ହେ ସଖି ତୁମ୍ଭର ଯେ ଗତି ଗଜଲୀଳା ସେ ଜନ ମନୋରମା । ଦେଖନ୍ତା ପ୍ରାଣୀମାନଙ୍କର ମନକୁ ରମଇ । ଏଣୁ କରି ମନୋରମା ନାମ ଯେ ଦେବକନ୍ୟା ତାହାଙ୍କୁ ଗଜଲୀଳା ଗତିରେ ବହୁଅଛ । ତବ ବିଧୁତରମ୍ଭମୂରୁଦ୍ୱୟଂ । ତିରସ୍କୃତ କଦଳୀ ସ୍ତମ୍ଭଂ । ସ୍ୱଭାବେଂ ତୁମ୍ଭର ଦୁଇ ଜାନୁ ନିନ୍ଦା କରୁଛନ୍ତି ରମ୍ଭା କଦଳୀ ବୃକ୍ଷକୁ । ଏଣୁକରି ରମ୍ଭା ନାମେ ଯେ ଦେବକନ୍ୟାଙ୍କୁ ଦୁଇ ଜାନୁରେ ବହୁଛ । ହେ ସଖି, ତବ ରତିଃ । ତୁମ୍ଭର ଯେ ରତି ସେ ଚତୁଃଷଷ୍ଟି କଳାରେ ସମ୍ପୂର୍ଣ୍ଣ ଅଟଇ । ରତି ଯେ କାମଦେବର ଭାର୍ଯ୍ୟା ତାହାଙ୍କୁ ରତିରେ ବହୁଛ । ରୁଚିରେ ଚିତ୍ରଲେଖେ ଭ୍ରୁବୌ । ତୁମ୍ଭର ଏହି ସୁନ୍ଦର ଭ୍ରୂଲତା ଚିତ୍ରାକୃତି ହୋଇ ଦିଶୁଛି । ଏଣୁକରି ତୁମ୍ଭେ ଚିତ୍ରଲେଖା ନାମେ ଦେବକନ୍ୟାଙ୍କୁ ଭ୍ରୂଲତାରେ କରି ବହୁଛ । ହେ ସଖି, ବଡ଼ ଆଶ୍ଚର୍ଯ୍ୟ । ଏଣୁ କରି ତୁମ୍ଭଙ୍କୁ କି ଉପମା ଦେବା ।

**ଇତି ଶ୍ରୀଗୀତଗୋବିନ୍ଦମହାକାବ୍ୟେ କବିରାଜଜୟଦେବକୃତୌ**
**ମାନିନୀବର୍ଣ୍ଣନେ ଚତୁରଚତୁର୍ଭୁଜୋ ନାମ ଦଶମଃ ସର୍ଗଃ ।**

---

୧-ଖ. ନାମା
୨-ଖ. ମୁଣ୍ଡରେଂ

# ଏକାଦଶଃ ସର୍ଗଃ

**ଶ୍ଳୋକ**

ସୁଚିରମନୁନୟେନ ପ୍ରୀଣୟିତ୍ୱା ମୃଗାକ୍ଷୀଂ
ଗତବତି କୃତବେଶେ କେଶବେ କୁଞ୍ଜଶଯ୍ୟାମ୍ ।
ପ୍ରଚୁରରୁଚିରଭୂଷାଂ ଦୃଷ୍ଟିମୋଷେ ପ୍ରଦୋଷେ
ସ୍ଫୁରତି[୧] ନିରବସାଦାଂ କାପି ରାଧାଂ ଜଗାଦ ॥ ୧ ॥

ଅଥାନନ୍ତରଂ ସୁଚିରଂ ବହୁକାଳଂ ଅନୁନୟେନ ଶାନ୍ତବଚନେନ ମୃଗାକ୍ଷୀଂ ଶାନ୍ତୟିତ୍ୱା । ତେବେ ବହୁତବେଳ ପର୍ଯ୍ୟନ୍ତ ମୃଗାକ୍ଷୀ ଯେ ରାଧା ତାହାକୁ ଅନୁନୟ ଯେ ଶାନ୍ତପୂର୍ବକ ବଚନ ତେଣେ କରି ଶାନ୍ତ କରାଇ ଦୂତୀ ବ୍ରୂତେ । ଦୂତୀ ବୋଲୁଛି । ସେ ରାଧା କେମନ୍ତ ଅଛଇ[୨] । ମୃଗାକ୍ଷୀଂ ମୃଗଲୋଚନାଂ ମୃଗଲୋଚନୀ ଅଛଇ[୩] । ପୁନଃ କିଂ ଭୂତା । ପୁଣି ସେ କେମନ୍ତ ଅଛଇ । ପ୍ରଚୁର ବହୁତର ରୁଚିର ସୁନ୍ଦର ରମଣୀୟାଳଙ୍କାରମଣ୍ଡିତାଂ ନାନା ମଣିରତ୍ନ ଅଳଙ୍କାରେ କରି ଭୂଷଣ ହୋଇଛନ୍ତି । ପୁନଃ କିଂ ଭୂତା । ନିରବସାଦାଂ ରତିବିଷୟେ ବିଷାଦଯୁକ୍ତାଂ । କୃଷ୍ଣର ସଙ୍ଗେ ରତି ବିଷୟକୁ ବିଷାଦ ହୋଇଅଛନ୍ତି । ଏମନ୍ତ ଦୃଷ୍ଟିମୋଷେ[୪] ପ୍ରଦୋଷେ ଦୃଷ୍ଟି ଖଣ୍ଡନ କରୁଛି । ଯେ ଅନ୍ଧକାର ରାତ୍ର ସମୟେ ପ୍ରଥମ ପ୍ରହରେ କେଶବେ କୁଞ୍ଜଶଯ୍ୟାଂ ଗତବତି ସତି କେଶବ କୁଞ୍ଜଲତା ଭିତରେ[୫] ପତ୍ର ଶଯ୍ୟାରେ ବସିଛନ୍ତି । ଯେଠାରେ[୬] ରାଧାକୁ ଘେନ ଯାଇଁ ଦୂତୀ ଏମନ୍ତ ବୋଲୁଛି[୭] ।

---

୧-କ. ଖ. ସ୍ଫୁରତି
୨-ଖ. ଅଛନ୍ତି
୩-ଖ. ଅଛନ୍ତି
୪-ଖ. ମୋକ୍ଷେ
୫-ଖ. କୁଞ୍ଜଲତା ଭିତରେ
୬-ଖ.ରେ ଅଧିକ-ସେଠାରେ
୭-ଖ. ବୋଲୁଛନ୍ତି

## ଗୀତ

(ବସନ୍ତରାଗେଣ ଗୀୟତେ)

**ବିରଚିତଚାଟୁବଚନରଚନଂ ଚରଣେ ରଚିତପ୍ରଣିପାତମ୍ ।**
**ସଂପ୍ରତି ମଞ୍ଜୁଳବଞ୍ଜୁଳସୀମନି କେଳିଶୟନମନୁଯାତମ୍[୧] ॥**
**ମୁଗ୍‌ଧେ ! ମଧୁମଥନମନୁଗତମନୁସର ରାଧିକେ ॥ ୧ ॥**

(ଧ୍ରୁ ବକମିତମ୍)

• ଦୂତୀ କହୁଛନ୍ତି—ହେ ମୁଗ୍‌ଧେ, ମୂଢ଼ ରାଧେ ! ମଧୁମଥନଂ ଶ୍ରୀକୃଷ୍ଣଂ ଅନୁସର । ମଧୁମଥନ ଯେ ଶ୍ରୀକୃଷ୍ଣ ତାହାଙ୍କର ନିକଟକୁ ଯାଅ । ସେ କୃଷ୍ଣ କେମନ୍ତ ଅଟନ୍ତି । ଅନୁଗତଂ । ତୁମ୍ଭଙ୍କ ଅନୁଗତ ହୋଇଛନ୍ତି । ତୁମ୍ଭେ ତାହାଙ୍କ ପ୍ରସନ୍ନ ହୁଅ ଦେଖ ଏ କୃଷ୍ଣ ତୁମ୍ଭଙ୍କ ବିରଚିତ ଚାଟୁ ବଚନ ରଚନଂ । କୃତପ୍ରିୟବଚନ-ରଚନାବିଶେଷଂ ତୁମ୍ଭଙ୍କୁ ବୋଧ କରାଇବାରେ ଯେ ପ୍ରିୟ ବଚନମାନ ତାହା ଚାଟୁକର କହୁଛନ୍ତି । ପ୍ରତ୍ୟକ୍ଷ ଦେଖ । ଏ କୃଷ୍ଣ ତବ ଚରଣେ ରଚିତ ପ୍ରଣିପାତଂ । ତୁମ୍ଭର ଚରଣ ତଳେ ରଚିତ ପ୍ରଣିପାତଂ କରିଅଛନ୍ତି ପ୍ରଣାମଂ । ଅତ୍ୟନ୍ତ ନମ୍ରଭାବେ ପଡ଼ୁଛନ୍ତି । ହେ ମୁଗ୍‌ଧେ ଅବିବେକିନୀ ରାଧେ, ଦେଖ ସଂପ୍ରତି ଏହିକ୍ଷଣି । ମଞ୍ଜୁଳ ବଞ୍ଜୁଳ ସୀମନି ରମଣୀୟ ବାନିର କୁଞ୍ଜ ମଧ୍ୟେ ଅତ୍ୟନ୍ତ ରମଣୀୟ ସୁନ୍ଦର ବାନିର ଯେ ବେତଲତା କୁଞ୍ଜ ଗୃହ ତହିଁର ମଧ୍ୟ କେଳି ଶୟନମନୁଯାତଂ । କେଳ୍ୟର୍ଥଂ ଶୟନଂ ରମଣ କରିବା ପାଇଁ ଶୟନଶଯ୍ୟା କରି ତହିଁ ମଧ୍ୟେ ଶ୍ରୀକୃଷ୍ଣ ବସିଛନ୍ତି । ତୁମ୍ଭେ ଏବେ କୃଷ୍ଣଙ୍କର ନିକଟକୁ ଯାଅ ।

**ଘନଜଘନସ୍ତନଭାରଭରେ ଦରମନ୍ଥରଚରଣବିହାରମ୍ ।**
**ମୁଖରିତମଣିମଞ୍ଜୀରମୁପୈହି ବିଧେହି ମରାଳବିକାରମ୍ ॥ ୨ ॥**

ଦୂତୀ କହୁଛି—ହେ ଘନଜଘନସ୍ତନଭାରଭରେ ! ଦେଖ ଘନ ଅଟଇ ଯେ ତୁମ୍ଭର ଜଘନ ଦୁଇ ଆଉ ଘନ ଦୁଇ ସ୍ତନର ଭାରଭରେ କରି ତୁମ୍ଭେ ବଡ଼ ଗରୁ ହୋଇଛ । ଏଣୁକରି ତୁମ୍ଭର ମନ୍ଥର ଚରଣ ବିହାରଂ ଅ ଆନନ୍ଦାକର ପାଦ ବିନ୍ୟାସ ଭାରଭରେ ତୁମ୍ଭ ଚରଣ ବିହାର ଯେ ଗୁଳିବାର ଗତିରେ କରି ମନ୍ଥର ଅଳ୍ପ ବିଳମ୍ବ ହୋଇଛି । ତହିଁକି କ ଉପମା ଦେବା । ତୁମ୍ଭେ ଯେତେ ଏ ଦୁଇ ପାଦେ ମୁଖରିତ ଧ୍ୱନିତ ଯେ କରୁଛି ଯେ ମଣିମଞ୍ଜୀର ମଣ୍ଡିତ ନୂପୁର ସେ ପାଦେ ଭର । ଏ ନୂପୁର ମରାଳ ବିକାରଂ । ମରାଳୋ ରାଜହଂସ ସ୍ୟାତ୍ । ତଦ୍ବିକାରଂ ରବଂ ଯେମନ୍ତ ସମସ୍ତେ ରାଜ ହଂସର ଧ୍ୱନିପ୍ରାୟେ ଶବ୍ଦ କରନ୍ତି ଯେ ଚାଲିବା-ବେଳେ ଏ ନୂପୁର ଏହାଙ୍କୁ ଦୁଇ ଚରଣେ ଦେଇଁ କୃଷ୍ଣ ନିକଟକୁ ଯାଅ ।

---

୧-କ. ଖ. ମୁପଯାତମ୍ ୨-ଖ. ରେ ଅଧିକ ପାଠ—କରି

**ଶୃଣୁ ରମଣୀୟତରଂ ତରୁଣୀଜନମୋହନମଧୁପବିରାବମ୍ ।**
**କୁସୁମଶରାସନଶାସନବନ୍ଦିନି ପିକନିକରେ ଭଜ ଭାବମ୍ ॥ ୩ ॥**

ବ୍ୟାଖ୍ୟା କରୁଛନ୍ତି—ହେ ସଖି ରାଧେ, ତୁମ୍ଭେ ମଧୁପବିରାବଂ ଶୃଣୁ । ମଧୁପାନାଂ ଭ୍ରମରାଣାଂ ବିରାବଂ ଶବ୍ଦଂ ଶୃଣୁ । ଅତ୍ୟନ୍ତ ରମଣୀୟତରଂ ତରୁଣୀଜନମୋହନଂ । ଦେଖ, ଏ ଭ୍ରମର ଶବ୍ଦ ସୁନ୍ଦର ତରୁଣୀ ଜନମାନଙ୍କୁ ମୋହନ କରୁଛି । ଏ ଶବ୍ଦକୁ[୧] ଅଗ୍ରେ ଶୃଣୁ । ଆଉ କୌତୁକ ଦେଖ । କୁସୁମ ଶରାସନ ଯେ ପୁଷ୍ପଧନ୍ୱା କନ୍ଦର୍ପ ସେ କନ୍ଦର୍ପର ଶାସନ ଯେ ଆଜ୍ଞା ପ୍ରମାଣେ ଏ ପିକମାନେ ଭାଟମାନଙ୍କର ପ୍ରାୟେ ହୋଇ ତୁମ୍ଭଙ୍କୁ ଗୁହାରି ସ୍ତୁତି କରୁଛନ୍ତି । ଏମନ୍ତ ଯେ କୋକିଳମାନେ ତାହାଙ୍କର ବିଷୟେ ଭାବଂ ଭଜ । ଏହାଙ୍କୁ ଭାବକର କିଛି ଦେଇ ବୋଧ କରି ।

**ଅନିଲତରଳକିଶଳୟନିକରେଣ କରେଣ ଲତାନିକୁରୁମ୍ବମ୍**
**ପ୍ରେରଣମିବ କରଭୋରୁ କରୋତି ଗତିଂ ପ୍ରତିମୁଞ୍ଚ ବିଳମ୍ବମ୍ ॥ ୪ ॥**

ହେ କରଭୋରୁ, କରଭବତ୍ ଉରୁ ଯାହାର, ରାଧେ, କରର ମଣିବନ୍ଧଠାରୁ କନିଷ୍ଠାଙ୍ଗୁଳି ମୂଳ ପର୍ଯ୍ୟନ୍ତ ହସ୍ତ ଗଣ୍ଠିଆର ବାମ ଦକ୍ଷିଣ ପ୍ରାନ୍ତକୁ କରଭ ବୋଲି । ତାହାର ପ୍ରାୟେ ସୁନ୍ଦର ଯେ ତୁମ୍ଭର ଘନ ନିବିଡ଼ ଜଙ୍ଘ ସେ ଜଙ୍ଘକୁ ଦେଖ । ଅନିଳ ଯେ ପବନ ତେଣେକରି କିଶଳୟ ନିକର ଯେ ଲତାମାନେ ଏହାଙ୍କର ପତ୍ରମାନେ ପବନେ ଚଞ୍ଚଳ ହୋଇ ହସ୍ତମାନଙ୍କର ପ୍ରାୟେ ହୋଇ ତୁମ୍ଭର ଯିବା ପାଇଁ ପଠିଆଇ ଦେଇ ଅଛନ୍ତି । ତାହାର ପ୍ରାୟେ କର । ପ୍ରେରଣମିବ । ପଡ଼ିହାରୀ ମାନେ ଯେମନ୍ତ ବାଟ ସାବଧାନେ ଡାକ ଦେଲାନ୍ତ ସେହିମତ ହୋଇ ତୁମ୍ଭର କାମରେ ଲଗି ପ୍ରେରୁଛନ୍ତି । ତୁମ୍ଭେ ବେଗେ କୃଷ୍ଣର ଠାଇଁକି ଯାଅ । ବିଳମ୍ବ ନ କର ।

**ସ୍ଫୁରିତମନଙ୍ଗତରଙ୍ଗବଶାଦିବ ସୂଚିତହରିପରିରମ୍ଭମ୍ ।**
**ପୃଚ୍ଛ ମନୋହରହାରବିମଳ[୨]ଜଳଧାରମମୁଂ କୁଚକୁମ୍ଭମ୍ ॥ ୫ ॥**

ହେ ରାଧେ, ତୁମ୍ଭେ ଏବେ ମୋହର କଥାକୁ ଯେବେ ବିଶ୍ୱାସ ନ ଯାଅ ତେବେ ତୁମ୍ଭ ହୃଦୟରେ ଯେ ଅଛନ୍ତି କୁଚ ଦୁଇ ଏହାଙ୍କୁ ପୃଚ୍ଛା କର । ପଚାର । ତୁମ୍ଭଙ୍କୁ ଏ ଦୁଇହେଁ କି କହନ୍ତି ତାହା ଶୁଣ । ଦେଖ ପ୍ରତ୍ୟକ୍ଷେ ଏ ଦୁଇ[୩] କେମନ୍ତ ହୋଇଛନ୍ତି ଦେଖ । ଅନଙ୍ଗ ଯେ କାମ ତାହାର ତରଙ୍ଗ ଯେ ଚଞ୍ଚଳ ଲହରୀ । ତସ୍ୟ ବଶାତ୍

୧-ଖ. ଶବ୍ଦରୁ
୨-ଖ. ମମଳ
୩-ଖରେ ଅଧିକ-କୁଚ

ସେ ଅନଙ୍ଗ ତରଙ୍ଗ ଆପ୍ଲୁତ ହୋଇ ସ୍ଫୁରିତ ସ୍ତନ ଦ୍ୱୟ କମ୍ପିତଂ କମ୍ପମାନ ହୋଇଁ ସ୍ଫୁରୁଛି । ଦେଖ ଅତ୍ୟନ୍ତ ସୁନ୍ଦର ଦେଦୀପ୍ୟମାନ ହୋଇଁ ସୂଚିତଂ[1] ହରିପରିରମ୍ଭଂ ବ୍ୟକ୍ତୀକୃତ କୃଷ୍ଣାଲିଙ୍ଗନ ରସଂ । କୃଷ୍ଣଙ୍କୁ ଆଲିଙ୍ଗନ କରିବାର ରସକୁ ପ୍ରତ୍ୟକ୍ଷ ଉନ୍ମୁଖ ହୋଇଁ ଦେଖାଉଛି । ପୁନଃ କ ଭୂତଂ । କୁଚ ଦ୍ୱୟଂ କୁମ୍ଭ ସଦୃଶଂ । କୁମ୍ଭର ପ୍ରାୟେ ଅଟଇ । ପୁନଃ କଂ ଭୂତଂ[2] । ମନୋହର ହାର-ବିମଳଜଳଧାରଂ ରମଣୀୟ ମୁକ୍ତାବଳୀ ସ୍ୱଚ୍ଛ ଜଳ କଣିଙ୍କ ବନ୍ତ ଧାରଣଂ । ନିର୍ମଳ ମୁକ୍ତାକୁ ଜଳକଣାମାନର ପ୍ରାୟ କରି ଧରିଛି । ଅମୂଂ ପୃଚ୍ଛ । ଏ ଦୁଇ ସ୍ତନ ମଣ୍ଡଳକୁ[3] ପଗୁରିତ ।

ଅଧିଗତମଖିଳସଖୀଭିରିଦଂ ତବ ବପୁରପି ରତିରଣସଜ୍ଜମ୍ ।
ଚଣ୍ଡି ରଣିତରଶନାରବଡିଣ୍ଡିମମଭିସର ସରସମଲଜ୍ଜମ୍ ॥ ୭ ॥

ହେ ଚଣ୍ଡି ! ହେ ଚଣ୍ଡବଦନେ, ହେ କୋପିନୀ ମୃଢ ରାଧେ, ତବ[4] ବପୁଃ ଶରୀରଂ ଅଖିଳସଖିଭିଃ ନିର୍ଣ୍ଣି ସ୍ୱାଦିଭିଃ ମମଳଂ ରତିରଣସଜ୍ଜଂ । ହେ ରାଧେ, ଦେଖ ତୁମ୍ଭର ବପୁ ଯେ ଶରୀରକୁ ଏ କେମନ୍ତ ହୋଇଛି । ଅଖିଳ ସଖି ଯେ ଚଞ୍ଚ ମହାଭି ନିର୍ଦ୍ଧ୍ୟାଦି କରି ଯେ ଯେତେ ବିଷୟ ଏ ବିଷୟରେ ତୁମ୍ଭଙ୍କୁ ବେଢା କରି ସେବା କରୁଛନ୍ତି । ଏମାନଙ୍କର ସମ୍ମତେ ତୁମ୍ଭର ଦେହ କୃଷ୍ଣର ସଙ୍ଗେ ରତିରଣ କରିବା ପାଇଁ ସଜ ହୋଇଛି । ଦେଖ । ଅଧିଗତଂ । ଅଧିଜ୍ଞାନଯୁକ୍ତଂ । ବିଷୟ ବ୍ୟାପାର ରହିତଂ । ଏକାଗ୍ର ହୋଇ ସଜ ହୋଇଛି । ପୁଣି ଏବେ ପ୍ରତ୍ୟକ୍ଷ ଦେଖ । ତୁମ୍ଭର କଟିରେ ଅଛି ଯେ ରଣିତ ରବଯୁକ୍ତ । କଟି ମେଖଳା ରଶନା । ତାହାର ଯେ ରବ ଶବ୍ଦ ଏ ତୁମ୍ଭ ଅଗ୍ରେଁ ଡିଣ୍ଡିମ ଯେ ଯାତ୍ରାର୍ଥଃ ସଜାତ ବାଦ୍ୟ କରୁଛି । ସେ ବାଦ୍ୟ କେମନ୍ତ ଅଟଇ । ଶତ୍ରୁ ଜୟ କରିବାର ଘୋଷଣା ଅଟଇ । ଏହି ରସନା ବାଦ୍ୟ ସେହିମତ । ରତିଜୟ କାମ ମଦନାର୍ଥଂ ଘୋଷଣା କରୁଛି । ଏଣୁକରି ତୁମ୍ଭେ ଅଭିସର । ବେଗ ଯାତ୍ରା କର । ସରସଂ । ସରସ ଆନନ୍ଦଯୁକ୍ତ ହୋଇ ଅଲଜ୍ଜଯୁକ୍ତଂ ଅଲଜ୍ଜଂ । ଯଥା ଲାଜ ଛାଡ଼ିକରି ସବିରସଯୁକ୍ତ ଯେ କୃଷ୍ଣ ତାହାଙ୍କ ନିକଟ ଅଭିଗମନ କର ।

---

୧-ଖ. ସ୍ଫୁରିତ
୨ କ. କଂ ଭୂତେ
୩-ଖରେ ଅଟ୍ଟକ-କଥା
୪-କ. ତସ୍ୟ

**ସ୍ମରଶରସୁଭଗନଖେନ ସଖୀମବଲମ୍ବ୍ୟ କରେଣ ସଲୀଳମ୍ ।**
**ଚଳ ବଳୟକ୍ୱଣିତୈରବବୋଧୟ ହରମପି ନିଜଗତିଶୀଳମ୍ ॥ ୭ ॥**

ହେ ରାଧେ, ସ୍ମରଶରବତ୍ ତବାଙ୍ଗୁଲ୍ୟଗ୍ରିତ ତୀକ୍ଷ୍ଣ ସୁଭଗ ସୁନ୍ଦର ନଖଯୁକ୍ତେନ କରେଣ ସଖିଂ ମାମବଲମ୍ବ୍ୟ ମମ କରେ ହସ୍ତାବଲମ୍ବନଂ କୃତ୍ୱା ସଲୀଳଂ ଯଥା ସ୍ୟାତ୍ ତଥା ଚଳ । ଶ୍ରୀକୃଷ୍ଣଂ ପ୍ରତି ଗଚ୍ଛ । ଦୂତୀ କହୁଛି—ହେ ରାଧେ, ସ୍ମର ଯେ କନ୍ଦର୍ପ ତାହାର ଯେ ଶର ପୁଷ୍ପ ବାଣ ସେହି ପରି ପାଖୁଡ଼ା ପ୍ରାନ୍ତ ତୀକ୍ଷ୍ଣ ସୁଭଗ ସୁନ୍ଦର କରାଙ୍ଗୁଳ୍ୟଗ୍ର ନଖଯୁକ୍ତ ଯେ ହସ୍ତ ସେ ହସ୍ତେ[1] କରି ସଖି ଯେ ମୁଁ ମୋହର କରରେ ହସ୍ତ ଦେଇଁ ଲୀଳା ସହିତେ ଗତି ହୋଇଁ ତୁମ୍ଭେ କୃଷ୍ଣର ନିକଟକୁ ଚଳ । କୃଷ୍ଣ-ସମୀପଂ ତ୍ୱଂ ଗତ୍ୱା ତବ ହସ୍ତସ୍ଥିତ ବଳୟାକ୍ୱଣିତୈସ୍ତବ ନିଜଗତିଶୀଳଂ ହରିଂ ଅବବୋଧୟ ଅବଧାନଂ କାରୟ । ହେ ସଖି ! ତୁମ୍ଭେ କୃଷ୍ଣର ନିକଟେ ଯାଇଁ ତୁମ୍ଭର ହସ୍ତେ ଅଛି ଯେ ବଳୟମାନେ ତାହାଙ୍କର କ୍ୱଣିତ ଯେ ଶବ୍ଦ କରି ତୁମ୍ଭେ ତୁମ୍ଭର ନିଜ ପତି ଗମନ ପ୍ରୀତି ସ୍ୱଭାବ ଅଟଇ ଯେ ମାଧବ ତାହାଙ୍କୁ ତୁମ୍ଭେ ଅବଧାନ କରାଅ ମୁଁ ଅଇଲି ବୋଲି ।

**ଶ୍ରୀଜୟଦେବଭଣିତମଧରୀକୃତ[2]ହାରମୁଦାସିତବାମମ୍ ।**
**ହରିବିନିହିତମନସାମଧିତିଷ୍ଠତୁ କଣ୍ଠତଟୀମବିରାମମ୍ ॥ ୮ ॥**

ଅଥାନନ୍ତରେ ଜୟଦେବ କବି ବୋଲୁଛନ୍ତି—ହେ ବୈଷ୍ଣବଜନମାନେ ଶୁଣ । ମମ ଗୀତଂ ଶୃଣୁ । ମୋହର ଭଣିଲି ଗୀତ ଏ ଶୁଣ । ଏ କେମନ୍ତ ଅଟଇ । ହାରଂ ହରେଶ୍ଚଦଂ ହରଚରଣମିତ୍ୟର୍ଥଃ । ହରି ଚରିତ ଅଟଇ । ପୁନଃ କିଂ ଭୂତଂ । ଅଧରୀକୃତମାୟାସମୂହଂ । ସକଳ ମାୟା ନାଶ କରଇ । ଉଦାସିତ ବାମଂ ବିପରୀତମ୍ । ଅମଙ୍ଗଳ ସକଳ ଦୁଃଖେ ବିସରଂ ଦୂରୀକୃତଂ ସକଳ ବିପରୀତ ଅମଙ୍ଗଳ କଷ୍ଟମାନ ନାଶ କରଇ ଏମନ୍ତ ଯେ ଗୀତ ସେ ତୁମ୍ଭମାନଙ୍କର କଣ୍ଠରେ ଆଶ୍ରୁର ହରି ବିନିହିତ ମନସାଂ[3] ହରୌ ବିନିହିତଂ ନିବେଦିତଂ । ମନୋଭିର୍ୟେସ୍ତେ ହରି ବିନିହିତ ମନସସ୍ତେଷାଂ କଣ୍ଠେ ହରିର ପାଦେ ନିମଗ୍ନ କଲେ ମନକୁ ଯେମାନେ ସେମାନଙ୍କର କଣ୍ଠେ ଅବିରାମଂ ତିଷ୍ଠତୁ । ନିରନ୍ତରେ ମନୋରମ୍ୟ ହୋଇଂଥାଉ ।

---

୧-କ. ସେହି ସେ

୨-କ. ଖ. ଅଧୀରକୃତ

୩-କ. ଖ. ନ ମାଂ

**ଶ୍ଳୋକ**

**ସା ମାଂ ଦ୍ରକ୍ଷ୍ୟତି ବକ୍ଷ୍ୟତି ସ୍ମରକଥାଂ ପ୍ରତ୍ୟଙ୍ଗମାଲିଙ୍ଗନୈଃ**
**ପ୍ରୀତିଂ ଯାସ୍ୟତି ରଂସ୍ୟତେ ସଖି ସମାଗତ୍ୟେତି ଚିନ୍ତାକୁଳଃ ।**
**ସ ତ୍ୱାଂ ପଶ୍ୟତି ବେପତେ ପୁଲକୟତ୍ୟାନନ୍ଦତି ସ୍ୱିଦ୍ୟତି**
**ପ୍ରତ୍ୟୁଦ୍‌ଗଚ୍ଛତି ମୂର୍ଚ୍ଛତି ସ୍ଥିରତମଃପୁଞ୍ଜେ ନିକୁଞ୍ଜେ ପ୍ରିୟଃ ।। ୨ ।।**

ଅଥାନନ୍ତରେ ଦୂତୀ କହୁଛି—ହେ ରାଧେ ତୁମ୍ଭ ପ୍ରିୟ ଯେ ଶ୍ରୀକୃଷ୍ଣ ସେ ଏବେ ସ୍ଥିରତମପୁଞ୍ଜେ ନିବଡ଼ାନ୍ଧକାର ଲତାଗୃହେ ଇତି ଚିନ୍ତାକୁଳଃ ସନ୍ ତ୍ୱାଂ ପଶ୍ୟତି । ହେ ସଖି, ଅତ୍ୟନ୍ତ ଅନ୍ଧକାର ଲତା କୁଞ୍ଜ ଗୃହ ମଧ୍ୟେ ତୁମ୍ଭର ପ୍ରିୟ ଯେ ଶ୍ରୀକୃଷ୍ଣ ସେ ଏମନ୍ତ ଚିନ୍ତାକୁଳ ହୋଇଁ ତୁର ବାଟକୁ ଚାହିଁ ଏମନ୍ତ କରୁଅଛନ୍ତି । ସା ରାଧା ମାଂ ଦ୍ରକ୍ଷ୍ୟତି । ମୋତେ ଦେଖି ସେ ରାଧା ସ୍ମର କଥା ବକ୍ଷ୍ୟତି । ସ୍ମର ଯେ କନ୍ଦର୍ପ ତାହାର କଥାମାନ କହିବ । ତେବେ ପ୍ରତ୍ୟଙ୍ଗମାଲିଙ୍ଗନୈଃ ପ୍ରୀତିଂ ଯାସ୍ୟତି । ମୋହର ସବୁ ଅଙ୍ଗକୁ ପ୍ରତି ଆଲିଙ୍ଗନ କରି ବଡ଼ ପ୍ରୀତ ହୋଇବ ।' ତେବେ ରଂସ୍ୟତେ । କ୍ରୀଡ଼ା କରିବ । ଏମନ୍ତ ହୋଇଁ ସେ କୃଷ୍ଣ ଚିନ୍ତାରେ ଆକୁଳ ହୋଇଁ ଏମନ୍ତ କରୁଅଛନ୍ତି । ହେ ସଖି, ତୁମ୍ଭେ କୃଷ୍ଣର ପାଖକୁ ଗଲେ ସେ ତୁମ୍ଭଙ୍କୁ ଦେଖିବା ମାତ୍ରକେ ବେପତେ । ମଦନ ଜ୍ୱରରେ କମ୍ପିବେ ; ପୁଲକୟତି । ରୋମାଞ୍ଚିତ ହୋଇବେ । ଆନନ୍ଦୟତି । ବଡ଼ ଆନନ୍ଦ ହୋଇବେ । କୃଷ୍ଣ ସେହିମତି ମୂର୍ଚ୍ଛାଦି କରି ଯେତେ କାମର ଅବସ୍ଥା ତାହା ପାଇବେ ତୁମ୍ଭଙ୍କୁ ଦେଖିବା ମାତ୍ରକେ ।

**ଅକ୍ଷ୍ଣୋର୍ନିକ୍ଷିପଦଞ୍ଜନଂ ଶ୍ରବଣୟୋସ୍ତାପିଞ୍ଛଗୁଚ୍ଛାବଳୀଂ**
**ମୂର୍ଦ୍ଧ୍ନି ଶ୍ୟାମସରୋଜଦାମ କୁଚୟୋଃ କସ୍ତୂରିକାପତ୍ରକମ୍ ।**
**ଧୂର୍ତ୍ତାନାମଭିସାରସତ୍ୱରହୃଦାଂ ବିଷ୍ୱଙ୍ ନିକୁଞ୍ଜେ ସଖି**
**ଧ୍ୱାନ୍ତଂ ନୀଳନିଚୋଳଚାରୁ ସୁଦୃଶାଂ ପ୍ରତ୍ୟଙ୍ଗମାଲିଙ୍ଗତି ।। ୩ ।।**

ପୁନର୍ବାର ରାଧାଙ୍କୁ ଦୂତୀ ବୋଲୁଛି—ଦେଖ ବଡ଼ ଆଶ୍ଚର୍ଯ୍ୟ । ଅଦ୍ୟ ଇଦାନୀଂ ବିଷ୍ୱଗ୍‌ବ୍ୟାପିତଃ ଶ୍ରୀକୃଷ୍ଣଃ ଧ୍ୱାନ୍ତଂ । ଗାଢ଼ାନ୍ଧକାରେ ନିକୁଞ୍ଜ ଲତା ଗୃହେ ଧୂର୍ତ୍ତାନାଂ ଅଭିସାରସତ୍ୱରହୃଦାଂ ସଙ୍କେତସ୍ଥାନଗମନାବଲମ୍ବନାନାଂ ନାରୀ ସୁଦୃଶାଂ ସୁନ୍ଦରଲୋଚନାଂ ପ୍ରତ୍ୟଙ୍ଗମାଲିଙ୍ଗନ୍ତି । ହେ ସଖି, ଆଜ ବୃନ୍ଦାବନେ ଅନ୍ଧକାର କୁଞ୍ଜଲତା ଗୃହ ମଧ୍ୟେ ଶ୍ରୀକୃଷ୍ଣ ଧୂର୍ତ୍ତାନପି ଧୂର୍ତ୍ତାଙ୍କୁ ବିମୋହ ଅଭିସାରିକା ହୋଇଁ ନୀଳବସ୍ତ୍ର ଆଚ୍ଛାଦିତ ହୋଇଁ ପରପୁରୁଷ ସଂକେତ ସ୍ଥାନକୁ ବ୍ୟଗ୍ର ମନ ହୋଇଁ ଯାଆନ୍ତି ଯେମାନେ ସେମାନଙ୍କର ଅଙ୍ଗମାନଙ୍କୁ ନାନା ପ୍ରକାରେ କରି ଆଲିଙ୍ଗନ କରୁଛି । ଯେ ଅଙ୍ଗକୁ ଯେମନ୍ତ କରି ଆଲିଙ୍ଗନ କରୁଛି ତାହା ଶୁଣ । ହାଦେ

ଅକ୍ଷଣୋ ଦୁଇ ନୟନରେ ଅଞ୍ଜନ କଷିତନଂ । କଜ୍ଜଳ ଦେଇଛନ୍ତି ଶ୍ରବଣୟୋଃ ଦୁଇ କର୍ଣ୍ଣରେ ତାପିଞ୍ଛଗୁଚ୍ଛାବତଂ ତମାଳରେ ଯୁକ୍ତ ମୟୂର ପୁଚ୍ଛମାନ ଦେଇଁ ମୂର୍ଦ୍ଧ୍ନି, ମସ୍ତକେ । ଶ୍ୟାମସରୋଜଦାମ ଯେ ନୀଳୋତ୍ପଳମାଳା ତାହା ଦେଇ କୁଚୟୋଃ ଦୁଇ ସ୍ତନରେ । ମୃଗନାଭି କସ୍ତୁରୀ ଦ୍ୱାରା ଲେଖନ କରି ରହିଛନ୍ତି । ହେ ସଖି, ସେ କୃଷ୍ଣ ତାହାଙ୍କ ହୃଦୟ ହେବେ ନାହିଁ ।

**କାଶ୍ମୀରଗୌରବପୁଷାମଭିସାରିକାଣା—**
**ମାବଦ୍ଧରେଖମଭିତୋ ରୁଚମଞ୍ଜରୀଭିଃ ।**
**ଏତତ୍ତମାଳଦଳନୀଳତମଂ ତମିସ୍ରଂ**
**ତତ୍ପ୍ରେମହେମନିକଷୋପଳତାଂ ତନୋତି ॥ ୪ ॥**

ଦୃଷ୍ଟ କହୁଛନ୍ତି—ହେ ସଖି ! ଏତତ୍ତମିସ୍ରଂ ଅନ୍ଧକାରଂ । ଏହି ଯେଉଁ ଏ ଅନ୍ଧକାରକୁ । ଯାହାକି ସ୍ୱର୍ଣ୍ଣ ଘଷିଆ ଯେପରି ସ୍ୱର୍ଣ୍ଣର ଖାଣ୍ଟି ଜାଣିବା ପାଇଁ କଷ-ପାଷାଣରେ କଷନ୍ତି ସେହିପରି ଏ ଅନ୍ଧକାର ଅଭିସାରିକା ସଖୀମାନଙ୍କର କୃଷ୍ଣ-ବିଷୟରେ ଭାବାର ଯେଉଁ ପ୍ରେମଭାବ ତାହା ବିସ୍ତାର କରି ଦେଉଛି । ସେ ସଖୀମାନେ କେମନ୍ତ ଅଟନ୍ତି । କାଶ୍ମୀର ଯେ କୁଙ୍କୁମ ସେହିପରି ଗୌରବର୍ଣ୍ଣ ଦେହ ଯେ ଗୋପବଧୂମାନଙ୍କର । ଅଭିସାରିକାଣାଂ । ଅଭିସାରସଙ୍କେତ ସ୍ଥାନକୁ ଯେଉଁମାନେ ଯାଉଁଛନ୍ତି ସେମାନଙ୍କର ଆବଦ୍ଧ ରେଖା କରି ତାହାଙ୍କୁ ସୁବର୍ଣ୍ଣରେଖା ପ୍ରାୟେ କରି ଅଭିତଃ ରୁଚମଞ୍ଜରୀଭିଃ ଅନ୍ୟନ୍ତ ଉଜ୍ଜ୍ୱଳ କାନ୍ତିମାନଙ୍କରେ ବେଷ୍ଟିତ କରୁଛି । ଆଉ କିପରି । ତମାଳଦଳ ନୀଳ ପ୍ରାୟେ କରି । ଏ ଅନ୍ଧକାର ପୁଣି କେମନ୍ତ ଅଟଇ । ତମାଳଦଳନୀଳତମଂ । ତମାଳ ପତ୍ର ପ୍ରାୟେ ନୀଳବର୍ଣ୍ଣ ଅଟନ୍ତି ଏ ଅନ୍ଧକାର । ସଖୀମାନଙ୍କର କୃଷ୍ଣ ବିଷୟର ପ୍ରେମକୁ ହେମର ପ୍ରାୟେ କରି ଆପଣ କଷ ପାଷାଣ ପ୍ରାୟେ ହୋଇ ବିସ୍ତାର କରି ଦେଉଛି । ହେ ସଖି, ତୁମ୍ଭେ ଆସ । ଏ ଅନ୍ଧକାରକୁ ଦେଖାଇବା । ଏମନ୍ତ ବୋଲି ସେ ରାଧାଙ୍କୁ ଦେଖିବା ପାଇଁ ଶ୍ରୀକୃଷ୍ଣ ସେ କୁଞ୍ଜ ଲତାରେ ଅଦୃଶ୍ୟ ହୋଇ ଲତାନ୍ତରାଳରେ ରହିଲେ ।

**ହାରାବଳୀତରଳକାଞ୍ଚନକାଞ୍ଚିଦାମ—**
**ମଞ୍ଜୀରକଙ୍କଣମଣିଦ୍ୟୁତିଦୀପିତସ୍ୟ ।**
**ଦ୍ୱାରେ ନିକୁଞ୍ଜନିଳୟସ୍ୟ ହରିଂ ନିରୀକ୍ଷ୍ୟ**
**ବ୍ରୀଡ଼ାବତୀମଥ ସଖୀମିୟମିତ୍ୟୁବାଚ ॥ ୫ ॥**

ଅଥାନନ୍ତରେ ସେ ଲତାକୁଞ୍ଜ ମଧ୍ୟେ ଅଛନ୍ତି ଯେ ଶ୍ରୀକୃଷ୍ଣ ତାହାଙ୍କର ଦେହରେ ଅଛନ୍ତି ଯେ ହାରାବଳୀ ଯେ ମୁକ୍ତାହାର ତରଳ ଚଞ୍ଚଳ ଯେ ହାର ମଧ୍ୟ

ମଣି କାଞ୍ଚନ କାଞ୍ଚିଦାମ ଯେ ସୁବର୍ଣ୍ଣକଟି ମେଖଳା, ଗଳାରେ ବନମାଳା, ମଞ୍ଜୀର ଯେ ନୂପୁର କଙ୍କଣ ଯେ ବଳୟାମଣି ଯେ କଣ୍ଠେ କୌସ୍ତୁଭ ଏତେ ମାନଙ୍କରେ ଜ୍ୟୋତିରେ କରି ଅତ୍ୟନ୍ତ ଦୀପ୍ତିମୟ ତେଜୋମୟ ହୋଇଛି ନିକୁଞ୍ଜ ନିଳୟ ତସ୍ୟ ଦ୍ୱାରେ ଯେ ଲତାଗୃହ ଦ୍ୱାରେ ରହି ସେ ରାଧା ହରିଂ ନିରୀକ୍ଷ୍ୟ ହରିକି ଦେଖି ବ୍ରୀଡ଼ାବତୀ ଲଜ୍ୟା ପାଇଁ ମୁଖ ତଳକୁ ଗ୍ରୀବ ରହିଲରେ ଇୟଂ ରାଧାଂ ଏମନ୍ତ ରାଧାକୁ ସଖି ଯେ ଦୂତୀ ସେ ଏମନ୍ତ ବୋଲୁଛି ।

## ଗୀତ

(ବରାଡ଼ୀରାଗେଣ ଗୀୟତେ)

**ମଞ୍ଜୁତରକୁଞ୍ଜତଳକେଳିସଦନେ**
**ପ୍ରବିଶ ରାଧେ ମାଧବସମୀପମିହ ।**
( ଧ୍ରୁବପଦମିଦମ୍ )
**ବିଳସ ରତିରଭସହସିତବଦନେ ॥ ୧ ॥**

ସଖୀ କହୁଛି—ହେ ରାଧେ ! ଦେଖ ମଞ୍ଜୁତର ଅତି ସୁନ୍ଦର କୁଞ୍ଜତଳ କୁଞ୍ଜଲତା ଗୃହ ତା ଗୃହ ମଧ୍ୟଂ ମାଧବ ସମୀପଂ ତ୍ୱଂ ପ୍ରବିଶ । ତୁମ୍ଭେ ପ୍ରବେଶ କର । ଇହ ବିଳସ । ଏ ଲତାଗୃହେ ଏକାନ୍ତ ସ୍ଥାନରେ[1] କେଳି ସଦନେ କାମକ୍ରୀଡା-ଗୃହେ ରତିରଭସ ହସିତ ବଦନେ । ଦେଖ ରତି ଖେଦ ବଶେ କରି ତୁମ୍ଭର ମୁଖ ଦେଖି ପରମାନନ୍ଦରେ ବଦନ ହାସ୍ୟଯୁକ୍ତ ହୋଇଛି । ଏମନ୍ତ କୃଷ୍ଣଙ୍କ ତୁମ୍ଭେ ବିଳସ । କ୍ରୀଡ଼ାକର ।

**ନବଭବଦଶୋକଦଳଶୟନସାରେ**
**ପ୍ରବିଶ ରାଧେ ମାଧବସମୀପମିହ ।**
**ବିଳସ କୁଚକଳଶତରଳହାରେ ॥ ୨ ॥**

ହେ ରାଧେ, ଦେଖ ନୂତନ ଅଶୋକ ପତ୍ର ଶଯ୍ୟାକୁ । ସେ କେମନ୍ତ ଅଟଇ । ଶୟନସାରେ ତ୍ରୈଲୋକ୍ୟ ସାରଭୂତ ଶୟନେ । ତ୍ରୈଲୋକ୍ୟ ଦୁର୍ଲ୍ଲଭସାର କେଳି-ମନ୍ଦିରେ ତ୍ୱଂ ମାଧବସମୀପଂ ପ୍ରବିଶ । ତୁମ୍ଭେ ମାଧବର ସମୀପକୁ ପ୍ରବେଶ ହୁଅ । କୁଚ କଳଶ ତରଳ ହାରରେ । ହେ ରାଧେ, ମନୋହର ଚଞ୍ଚଳ ମୁକ୍ତାବଳିଯୁକ୍ତେ । ଦେଟ

[1] -ଖ. ସ୍ଥାନେ ।

ତୁମ୍ଭର ସ୍ତନ ଉପରେଁ ଚଞ୍ଚଳ ମୁକ୍ତାହାର ଶୋଭା ପାଉଁଛି । ତୁମ୍ଭେ ମାଧବର ନିକଟେଂ ପ୍ରବେଶ ହୁଅ । ଏ ରୂପକୁ ସଫଳ କର ।

**କୁସୁମଚୟ୍ୱରଚତଶୁଚବାସଗେହେ ।**
**ପ୍ରବିଶ ରାଧେ ମାଧବସମୀପମିହ**
**ବିଳସ କୁସୁମସୁକୁମାରଦେହେ ॥ ୩ ।**

ହେ କୁସୁମ ସୁକୁମାର ଦେହେ, କୁସୁମବତ୍ କୋମଳାଙ୍ଗୀ ରାଧେ, କୁସୁମର ପ୍ରାପ୍ତେ ତୁମ୍ଭର ଯେ ଅତ୍ୟନ୍ତ ସୁକୋମଳ ସୁଗନ୍ଧ ଶୀତଳ ଦେହ ତୁମ୍ଭେ ମାଧବକୁ ଦେଇଁ ଇହ କୁଞ୍ଜ ମଧ୍ୟ ବିଳସ । କୃଷ୍ଣେନ ସହ କ୍ରୀଡସ୍ୱ । ଏ ଦେହ ହେନ ତୁମ୍ଭେ କୁଞ୍ଜଲତା ଗୃହ ମଧ୍ୟ କୃଷ୍ଣର ସଙ୍ଗେ କ୍ରୀଡାରେ ଏ ଦେହ ଧାରଣ ସାଫଲ୍ୟ କର । ଇହ କୁଞ୍ଜ କିଂ ଭୂତଂ । ଏ କୁଞ୍ଜଲତା ଦେଖ କେମନ୍ତ ହୋଇଛି । ନାନା କୁସୁମ ମାନଙ୍କରେ କରି ରଚନ୍ତୁ ନିର୍ମିତ ହୋଇଁଛି । ପୁନଃ କିଂ ଭୂତଂ । ଶୁଚି ପବନ ସକଳ ଶାର୍ଥ ଯୁକ୍ତ । ଶୁଚିବାସେ ଗେହେ । ପବନ ଶୁଦ୍ଧ ବାସ ଯୁକ୍ତ ସକଳ ଶାର୍ଥ ଯୁକ୍ତ ଏ ଲତା ଗୃହେ ବିଳସ । କ୍ରୀଡସ୍ୱ । ଏମନ୍ତ ଲତାଗୃହେ ତୁମ୍ଭେ ହରିର ସଙ୍ଗେ କ୍ରୀଡାକର ।

**ଚଳମଳୟବନପବନସୁରଭିଶୀତେ ।**
**ପ୍ରବିଶ ରାଧେ ମାଧବସମୀପମିହ**
**ବିଳସ ରସବଳିତଲଳିତଗୀତେ ॥ ୪ ॥**

ହେ ରାଧେ ତ୍ୱଂ ଚଳ । ଯାହି । ତୁମ୍ଭେ ବେଗେ ଗ୍ଲଲ । କୃଷ୍ଣର ଚହିଁକି ଦେଖ । ମଳୟବନପବନସୁରଭିଶୀତେ । ଏବଂ ବଶିଷ୍ଟେ ବୃନ୍ଦାବନେ ଦକ୍ଷିଣ ପବନ ମଦଗନ୍ଧସୁଶୀତଳେ ସଦନେ ତ୍ୱଂ ପ୍ରବିଶ୍ୟ ଦେଖ । ମଳୟ ଯେ ଦକ୍ଷିଣ ପବନ ତେଣେ କରି ସୁଗନ୍ଧ ପୁଷ୍ପମାନଙ୍କର ଗନ୍ଧେ ଯୁକ୍ତ ହୋଇଁ ଅତ୍ୟନ୍ତ ଶୀତଳ ହୋଇ ବହୁଛି । ଏ ଲତା ଗୃହେ । ଏମନ୍ତ ଲତା ଗୃହେ ତୁମ୍ଭେ ମାଧବ ସମୀପକୁ ପ୍ରବେଶ ହୁଅ । ଦେଖ ତୁମ୍ଭେ କେମନ୍ତ ଅଛ । ରସବଳିତଲଳିତଗୀତେ ! ରତି ସୁଖବର୍ଦ୍ଧିତ ରମଣୀୟ ଗୀତଯୁକ୍ତେ । ରତି ସୁଖ ବଢ଼େ ଯେ ବଚନରେଁ ସେ ବଚନ ତୁମ୍ଭେ କହୁଛ ।

---

୧-ଖ.ରେ ଅଧିକ ପାଠ 'ଦେହ'
୨-କ. ରସି

**ବିତତବହୁବଲ୍ଲୀନବପଲ୍ଲବଘନେ**
**ପ୍ରବିଶ ରାଧେ ମାଧବସମୀପମିହ**
**ବିଲସ ରତିରମସହସିତବଦନେ ॥ ୫ ॥**

ହେ ରାଧେ, ଦେଖ । ବିସ୍ତାର ବହୁତର ମଞ୍ଜରୀ ନୂତନ ପଲ୍ଲବ ନିବିଡ଼ ସଦନେ । ବିସ୍ତାର ବହୁତ ସୁନ୍ଦର ନୂତନ କୋମଳ ପତ୍ରମାନଙ୍କରେ ନିବିଡ଼ ଘନ ଗହନେ ନିର୍ମିତ ହୋଇଛି ଯେ ଲତାଗୃହ ଏମନ୍ତ ଗୃହେ ପଶି ତୁମ୍ଭେ (ମାଧବ ସଙ୍ଗେ କ୍ରୀଡ଼ାକର । ତୁମ୍ଭେ କେମନ୍ତ ଅଛ । ଚିରଂ ବହୁତକାଳ ହୁଂ ତୁମ୍ଭେ)[୧] କୃଷ୍ଣର ସଙ୍ଗେ ରମିବାକୁ ନିରନ୍ତର ଲୋଭୀ ହୋଇଛ । ହେ ପ୍ରୀତି ବଦନେ,(ବିସ୍ତୀର୍ଣ୍ଣ ବଦନବନ୍ତୀ । ବିସ୍ତାର ମନୋହର ସ୍ଥୂଳ ଯେ ତୁମ୍ଭର ବଦନ)[୨] ମାଗନ୍ତି କର । ମାଧବ ତାଙ୍କ ପାଖ ।

**ମଧୁମୁଦିତମଧୁପକୁଲକଲିତରାବେ**
**ପ୍ରବିଶ ରାଧେ ମାଧବସମୀପମିହ ।**
**ବିଲସ ମଦନଶରରସରଭସଭାବେ ॥ ୬ ॥**

ହେ ରାଧେ, ଦେଖ ତ ଏ କୁଞ୍ଜଗୃହ କେମନ୍ତ ହୋଇଛି । ବସନ୍ତ କାଳ ହୃଷ୍ଟ ଭୃଙ୍ଗ ସମୂହ ରମଣୀୟ ଧ୍ୱନିଯୁକ୍ତେ ବସନ୍ତକାଳ ହରଷ ହୋଇ ଭ୍ରମରମାନ ରମଣୀୟ ମନୋହର କରି ଶବ୍ଦ କରୁଛନ୍ତି ସଖୀ । ଏମନ୍ତ ଲତା ଗୃହେ ତୁମ୍ଭେ ମାଧବ ତାଙ୍କ ପାଇ ରମ । ତୁମ୍ଭେ କେମନ୍ତ ଅଛ । ମଦନଶର ରସ ରଭସଭାବେ । କାମବାଣ ବ୍ୟଗ୍ର ପ୍ରିୟ ସଙ୍ଗମାଭିଳାଷିଣୀ କାମବାଣ ବ୍ୟଥାରେ କରି ତୁମ୍ଭେ ବେଗେ ହରିକି ରମିବି ବୋଲି ଚିତ୍ତରେ କରିଛ । ତୁମ୍ଭେ ମାଧବସମୀପକୁ ପ୍ରବେଶ କର । ଏ ଲତା ମନ୍ଦିରେ କ୍ରୀଡ଼ା କର ।

**ମଧୁରତରଲପିକନିକରନିନଦମୁଖରେ**
**ପ୍ରବିଶ ରାଧେ ମାଧବସମୀପମିହ**
**ବିଲସ ଦଶନରୁଚିରୁଚିରଶିଖରେ ॥ ୭ ॥**

ଦେଖ ହେ ରାଧେ, ବସନ୍ତକାଳେ ଚଞ୍ଚଳ କୋକିଳ ସମୂହ ଧ୍ୱନି ଶବ୍ଦିତେ ସଦନେ ବସନ୍ତ କାଳରେ ପିକ ଯେ କୋକିଳମାନେ ଏମାନଙ୍କର ନାଦେ କରି ନାଦିତ ଶବ୍ଦଯୁକ୍ତ ହୋଇଛି ଯେ ଲତାଗୃହ ତୁମ୍ଭେ ମାଧବ ସମୀପକୁ

---

୧-କ.ରେ ନାହିଁ ।
୨-କ.ରେ ନାହିଁ ।

ପ୍ରବେଶ ହୁଅ । ତୁମ୍ଭେ କେମନ୍ତ ଅଛ । ଦଶନ ରୁଚି ରୁଚିରଶିଖରେ । ଦନ୍ତ କାନ୍ତି ରମଣୀୟ ଦନ୍ତ ପଂକ୍ତ୍ୟଗ୍ରଭାଗେ । ଦନ୍ତର କାନ୍ତିରେ କରି ଶୋଭା ପାଉଁଛି ଯେ ତୁମ୍ଭର ଅଗ୍ରଭାଗକୁ ମୁଖ । ଏମନ୍ତ ସୁନ୍ଦର ଦନ୍ତ ମୁଖେକରି ତୁମ୍ଭେ ମାଧବ ସମୀପକୁ ଯାଅ ।

**ବିହିତପଦ୍ମାବତୀସୁଖସମାଜେ ।**
**କୁରୁ ମୁରାରେ ମଙ୍ଗଳଶତାନି ।**
**ଭଣତି ଜୟଦେବକବିରାଜରାଜେ ॥ ୮ ॥**

ଜୟଦେବ କବି ବୋଲୁଛନ୍ତି—ହେ ମୁରାରେ, କବିଙ୍କ ରାଜା ଜୟଦେବେ ପଦ୍ମାବତୀ ସୁଖ ସମାଜେ । ବିହିତ ବିଶେଷ ଚେଷ୍ଟାଯୁଂ କୃତ ଭଣନ୍ତି । କବିଙ୍କୁ ଗ୍ରନ୍ଥେ। ଶତାନି ମଙ୍ଗଳାନି କୁରୁ । ମାଧବନୀଡ଼ାସୁଖସମୂହେ । । ମଙ୍ଗଳଶତାନି କୁରୁଷ୍ୱ । ହେ ମୁରାରେ ! ତୁମ୍ଭେ ଏ ଗ୍ରନ୍ଥର ଶତ ପରିମିତ ମଙ୍ଗଳକର । ଏ ଗ୍ରନ୍ଥ ପଢ଼ନ୍ତା ଶୁଣନ୍ତା ଲୋକମାନଙ୍କ ପରମମଙ୍ଗଳ କର । କୈବଲ୍ୟ କାନ୍ତ ଦିଅ । ଗ୍ରନ୍ଥେ କିଂ ଭୂତେ । ପଦ୍ମାବତୀ ପରମଲକ୍ଷ୍ମୀ । ତସ୍ୟା ସୁଖ ସମାଜେ । ଏ ଗ୍ରନ୍ଥ କେମନ୍ତ ଅଛଇ । ପଦ୍ମାବତୀ ଯେ ପରମଲକ୍ଷ୍ମୀ ତାହାଙ୍କର ମାଧବ ସହିତ ଯେ ନୀଡ଼ା ସୁଖ ସମୂହ ଚେଷ୍ଟା କରି ବିହିତ ଭଣିତ ଯେ ଗ୍ରନ୍ଥ ଜୟଦେବ କଲେ । ସେ ଜୟଦେବ କେମନ୍ତ ଅଛନ୍ତି । କବିରାଜ ରାଜେ କବିରାଜ ଲୋକଙ୍କ ରାଜା ଅଟେ ।

ଶ୍ଳୋକ

**ତ୍ୱାଂ ଚିତ୍ତେନ ଚିରଂ ବହନ୍ନୟମତିଶ୍ରାନ୍ତୋ ଭୃଶଂ ତାପିତଃ**
**କନ୍ଦର୍ପେଣ ଚ ପାତୁମିଚ୍ଛତି ସୁଧା-ସମ୍ବାଧ ବିମ୍ବାଧରମ୍ ।**
**ଅସ୍ୟାଙ୍ଗଂ ତଦଳଂକୁରୁ କ୍ଷଣମିହ ଭ୍ରୂକ୍ଷେପ-ଲକ୍ଷ୍ମୀଲବ—**
**କ୍ରୀତେ ଦାସ ଇବୋପସେବିତପଦାମ୍ଭୋଜେ କୁତଃ ସଂଭ୍ରମଃ ॥ ୬ ॥**

ଅଥାନନ୍ତରେ ଦୂତୀ କହୁଛି—ହେ ରାଧେ, ଅୟଂ ଶ୍ରୀକୃଷ୍ଣଃ ତ୍ୱାଂ ଚିତ୍ତେନ ମନସା ଚିରଂ ବହୁତରଂ ବହୁକାଳଂ । ଅତିଶ୍ରାନ୍ତ ଭୃଶଂ । ଅତ୍ୟର୍ଥଂ । କନ୍ଦର୍ପେଣ କାମେନ ତାପିତଃ ତବ ସୁଧା ସମ୍ବାଧ ବିମ୍ବାଧରଂ । ଅମୃତ ଘନୀକୃତ ଲୋହିତ-ବର୍ଣ୍ଣୋଷ୍ଠଂ ପାତୁମିଚ୍ଛତି । ଅଥ ତ୍ୱଂ କୃଷ୍ଣସ୍ୟାଙ୍ଗମଳଂକୁରୁ । କୃଷ୍ଣସମୀପଂ ଗଚ୍ଛ । ଇହ ଅସ୍ମ ରତି ବିଟପେ କ୍ଷଣଂ କ୍ଷଣମାତ୍ରଂ କୃଷ୍ଣସ୍ୟାଙ୍ଗମଳଂକୁରୁ । ହେ ସଖି, ଦାସଜନେ କୃତଃ ସଂଭ୍ରମଃ । କସ୍ମିନ୍ କ୍ରୀତେ ଭ୍ରୂକ୍ଷେପ ଲକ୍ଷ୍ମୀ ଲବେନ । ଭ୍ରୂକ୍ଷେପଶୋଭା-ଲେଶମାତ୍ରେଣେତ୍ୟର୍ଥଃ । କ୍ରୀତେ କୃଷ୍ଣେ ଦାସ ଇବ ଉପ ସମୀପେ ସେବିତ ପଦାମ୍ଭୋଜେ

ସେବକଜନବର୍ଦ୍ଧ ସମୀପେ ସେବତ ପାଦପଦ୍ମେ । କୋପଃ କଥଂ ଯୁକ୍ତଂ । ଦୂତୀ ବୋଲୁଛି– ହେ ରାଧେ, ଏ ଶ୍ରୀକୃଷ୍ଣ ତୁମ୍ଭଙ୍କୁ ବହୁତକାଳ ପର୍ଯ୍ୟନ୍ତ ଚିତ୍ତରେ ବାନ୍ଧିକରି ଅତ୍ୟନ୍ତ ଶ୍ରାନ୍ତ । କନ୍ଦର୍ପବାଣେ ଚ । କନ୍ଦର୍ପ ବାଣେକରି ଭୃଶଂ ଅତ୍ୟର୍ଥଂ ତାପିତଃ ସନ୍ତାପଯୁକ୍ତଃ । ଏଣୁ କରି ଶ୍ରାନ୍ତତପ୍ତ ହୋଇଁ ବୋଇଁ ବନ୍ଧିଲା ପ୍ରାଣୀ ଯେମନ୍ତେ ଗ୍ରୀଷ୍ମ-ପୀଡ଼ନେ ପ୍ରଥମେ ଶ୍ରାନ୍ତତପ୍ତ ହୋଇଁ ଜଳପାନ କରିବାକୁ ଇଚ୍ଛା କରଇ ସେହିମତ ହୋଇଂ ଏ କୃଷ୍ଣତବସୁଧା ସମ୍ବାଧ ବିମ୍ବାଧରଂ ସୁଧା ଯେ ଅମୃତ ସେ ଘନୀଭୂତ ହୋଇଂ ଘୃତ ଯେମନ୍ତ ଶୀତଳ ପାଇଲେ କଠିନ ହୋଇଂ (ବସଇଂ ସେହିମତ ହୋଇଂ)[1] ତୁମ୍ଭ ଓଷ୍ଠରେ ଅମୃତ ବସିଛି । ବନ୍ଧୁକସ୍ଥ ମାଟିଲି ବିମ୍ବ ତାଳକମ୍ବର ପ୍ରାୟେ ଦିଶୁଛି । ଏମନ୍ତ ଓଷ୍ଠକୁ ଏ କୃଷ୍ଣ ପାନ କରିବାକୁ ଇଚ୍ଛା କରୁଛନ୍ତି । ତୁମ୍ଭେନେ କର । ଅଧରାମୃତ ରସ । ତୁମ୍ଭେ ଏବେ ଅସ୍ୟ ଶ୍ରୀକୃଷ୍ଣସ୍ୟ ଅଙ୍ଗଂ ଅଳଂକୁରୁ । ଅଳଙ୍କାର ଭୂଷିତେନ ତବ ଶରୀରେଣ । ହେ ସଖି ! ତୁମ୍ଭର ଏ ଦେହ ସୁବର୍ଣ୍ଣ ଜଡ଼ିଲା ପ୍ରାୟେ ସୁନ୍ଦର ଦିଶୁଛି । କ୍ଷଣମାତ୍ର ତୁମ୍ଭେ ଏ ଲତାଗୃହ ମଧ୍ୟେ କୃଷ୍ଣଙ୍କୁ ଆଲିଙ୍ଗନ କର । ସେ କୃଷ୍ଣ ବୋଲୁଛନ୍ତି ତୁମ୍ଭେ ମଧ ଭୂଷଣ ବୋଲି । ତୁମ୍ଭେ କମ୍ପା କୃଷ୍ଣଙ୍କୁ କୋପକରି ଭୟଂ କର । ହେ ସଖି, ତୁମ୍ଭର ଯେ ଭ୍ରୂଲତା ତହିଁର କ୍ଷେମ ଯେ କଟାକ୍ଷ ସେହି ସେ ଲକ୍ଷ୍ମୀ ହୋଇଲା । ସେ ଲକ୍ଷ୍ମୀ ଶୋଭା ସୁନ୍ଦର ଧନେ କରି କିଣିଅଛ ସେବକ ପ୍ରାୟେ କରି ସେ କୃଷ୍ଣଙ୍କୁ । ସେ କୃଷ୍ଣ ତୁମ୍ଭର ପାଦପଦ୍ମ ଦାସ ଭବ । ଉପବେଶିତ ସେବା କରିଛନ୍ତି ଯେ କୃଷ୍ଣ ତାହାଙ୍କ ତୁମ୍ଭର କୃତଃ ସଂଭ୍ରମଃ । କ ଭୟ କ ଲଜ୍ଜ୍ୟା ।

**ସା ସସାଧ୍ୱସସାନନ୍ଦେ ଗୋବିନ୍ଦେ ଲୋଲଲୋଚନେ**
**ସିଞ୍ଜାନମଞ୍ଜୁମଞ୍ଜୀରଂ ପ୍ରବିବେଶ ନିବେଶନମ୍ ॥ ୭ ॥**

ଅଥାନନ୍ତରେ ଦୂତୀର ବଚନେ ସା ରାଧା ଗୋବିନ୍ଦେ ଗୋବିନ୍ଦର ବିଷୟେ । ଲୋଲଲୋଚନେ । ଗୋବିନ୍ଦଙ୍କୁ ରମିବି ଏମନ୍ତ ଆଶାରେଁ ଲୋଳ ଯେ ଚଞ୍ଚଳ ହୋଇଛି ନୟନ । ପୁଣି ସେ କେମନ୍ତ ଅଟଇ[2] ସସାଧ୍ୱସ । ଭୟ ସହିତ ହୋଇଛି । ମନୋଭୟେ ଗୋବିନ୍ଦର ମୁଖକୁ ଚାହିଁ ନ ପାରୁଛନ୍ତି । ସେ ଗୋବିନ୍ଦ କେମନ୍ତ ହୋଇଛନ୍ତି । ସାନନ୍ଦେ । ରାଧା ପ୍ରାପ୍ତ ଆନନ୍ଦ ହୋଇଛି ମନ । ଏମନ୍ତ ଗୋବିନ୍ଦର ପାଶକୁ ଯିବାକୁ ଭରସା କରି ପ୍ରବିବେଶ ନିବେସନଂ । କୁଞ୍ଜଲତା ଗୃହରେ ପ୍ରବେଶ ହୋଇଲେ । ସେ କୁଞ୍ଜ କେମନ୍ତ ହୋଇଛି । ଶ୍ରୀକୃଷ୍ଣ ବିଜୟେ ମନୋହର ହୋଇଛି । ଏମନ୍ତ କୁଞ୍ଜଘରେ ସେ ରାଧା ମଞ୍ଜୁ ମଞ୍ଜୀର ସିଞ୍ଜାନ ସୁନ୍ଦର ମନୋହର

୧-କ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।
୨-ଝ. ଅଟନ୍ତି ।

ଶବ୍ଦକୃତ ଯେ ମଞ୍ଜୀର ନୂପୁର ସେ ଚରଣେ ଶବ୍ଦ କରାଇଁ ପ୍ରବେଶ ହୋଇଲେ ସେ କୁଞ୍ଜଗୃହେ । ନିବେଶନଂ କୁଞ୍ଜଗୃହମିତ୍ୟର୍ଥଃ ।

**ଗୀତ**

(ବରାଡ଼ିରାଗେଣ ଗୀୟତେ)

**ରାଧାବଦନବିଲୋକନବିକସିତବିବିଧବିକାରବିଭଙ୍ଗମ୍ ।**
**ଜଳନିଧିମିବ ବିଧୁମଣ୍ଡଳଦର୍ଶନତରଳିତତୁଙ୍ଗତରଙ୍ଗମ୍ ।**
**ହରିମେକରସଂ ଚିରମଭିଳଷିତବିଳାସମ୍ ।**
**ହରିମେକ ରସଂ ଚିରମଭିଳଷିତବିଳାସମ୍ ।**
**ସା ଦଦର୍ଶ ଗୁରୁହର୍ଷବଶଂବଦବଦନମନଙ୍ଗନିବାସମ୍ ॥ ୧ ॥**

(ଧ୍ରୁବପଦମିଦମ୍)

ତଦନନ୍ତରେଂ ସା ରାଧା ହରିଂ ଦଦର୍ଶ । ରାଧା ହରିଙ୍କି ଦେଖିଲେ । ହରି କିଂ ଭୂତଂ । ସେ ହରି କେମନ୍ତ ଅଟନ୍ତି । ଏକରସଂ । ଏକ ଏବ ରସୋ ଯସ୍ୟ ଅଦ୍ୱିତୀୟଆନନ୍ଦବ୍ରହ୍ମସ୍ୱରୂପମିତ୍ୟର୍ଥଃ । ସମସ୍ତ ରସମାନେ ଠୁଳ ହୋଇଁ ଆନନ୍ଦ ପରମ ସୁଖମାନ ଅଟନ୍ତି । ପୁନଃ କିଂ ଭୂତଂ । ପୁଣି ସେ କେମନ୍ତ ଅଟନ୍ତି । ଚିରଂ ଅଭିଳଷିତବିଳାସମ୍ । ବହୁତ କାଳ ଆରମ୍ଭ ବାଞ୍ଛା କରିଛନ୍ତି ରତିକେଳିକି । ପୁନଃ କିଂ ଭୂତମ୍ । ପୁଣି ସେ କେମନ୍ତ ଅଟନ୍ତି । ଅନଙ୍ଗନିବାସଂ । କୋଟି କନ୍ଦର୍ପ ଲାବଣ୍ୟଂ କୋଟି କନ୍ଦର୍ପ ଜିଣି ଅତ୍ୟନ୍ତ ସୁନ୍ଦର ଅଟନ୍ତି । ପୁନଃ କିଂ ଭୂତଂ । ହର୍ଷ ବଶମ୍ବଦ-ବଚନଂ । ହର୍ଷର ବଶ ହୋଇଛନ୍ତି । ବଦନ ଅନାବୃତ୍ତ ହୋଇଁ ହର୍ଷ ହୋଇଛି । ବଦନମନଙ୍ଗନିବାସଂ । ଅତ୍ୟନ୍ତ ସୁନ୍ଦର ବଦନମିତ୍ୟର୍ଥଃ । ଅତ୍ୟନ୍ତ ସୁନ୍ଦର ମୁଖଚନ୍ଦ୍ର ଅଟଇ । ପୁନଃ କିଂ ଭୂତଂ । ରାଧା ବଦନ ବିଲୋକନ ବିକସିତ ବିବିଧ ବିକାର ବିଭଙ୍ଗ । ରାଧାମୁଖ ଦର୍ଶନ ପ୍ରକଟିତ ନାନାପ୍ରକାର ରୋମାଞ୍ଚାଦି ଅନଙ୍ଗ ବିଜୃମ୍ଭଣାଦି ଯୁକ୍ତଂ । ରାଧାର ମୁଖ ଦେଖିବା ମାତ୍ରକେଂ ରୋମାଞ୍ଚାଶ୍ରୁ - ସ୍ୱେଦକମ୍ପାଦି କରି କାମଚେଷ୍ଟା ବିକାରଯୁକ୍ତ ହୋଇଛି । ସେ ମୁଖକୁ କି ଉପମା କରିବା । ଜଳନିଧିମିବ । ଜଳଧି ଯେ ସମୁଦ୍ର ସେ ଯେମନ୍ତ ବିଧୁମଣ୍ଡଳ ଦର୍ଶନ ଚନ୍ଦ୍ରମଣ୍ଡଳକୁ ଦେଖିବା ମାତ୍ରକେ ତରଳିତ[2] ତରଙ୍ଗ । ଅତ୍ୟନ୍ତ ଫେନାଯୁମାନ ହୋଇ ଚଞ୍ଚଳ ଲହରୀ ମାନଙ୍କରେ ଶୋଭା ପାଇଁ ଯେମନ୍ତ ଦିଶଇ ସେହିମତି ରାଧାର ମୁଖଚନ୍ଦ୍ର ଦେଖି ଶ୍ରୀକୃଷ୍ଣର ସୁଖ ସମୁଦ୍ରର ପ୍ରାପ୍ୟେ କାମ ବିକାର ହୋଇଛି ।

---

୧-ଖ.ରେ ଅଧିକ—ଏକସ୍ଥାନ ହୋଇଂ ।
୨-ଖ.ରେ ଅଧିକ ପାଠ—'ତରଳ'

ହାରମମଳତରତାରମୁରସି ଦଧତଂ ପରିଲମ୍ବ୍ୟ ବିଦୂରମ୍ ।
ସ୍ଫୁଟତରଫେନକଦମ୍ବକରମ୍ବିତମିବ ଯମୁନାଜଳପୂରମ୍ ॥ ୨ ॥

ଅତି ନିର୍ମଳ ଶୁଭ୍ର ମୁକ୍ତାବଳୀଂ ଉରସି ଦଧତଂ । ଅତ୍ୟନ୍ତ ନିର୍ମଳ ମୁକ୍ତାହାର ହୃଦୟରେ ଧରିଅଛନ୍ତି । ସେ ହାର ପରିଲମ୍ବ୍ୟ ବିଦୂରଂ । ମସ୍ତକାନ୍ତ ପାଦ ପର୍ଯ୍ୟନ୍ତଂ ଲମ୍ବମାନଂ । ମସ୍ତକାନ୍ତ ପାଦ ପର୍ଯ୍ୟନ୍ତ ଲମ୍ବିଛି । ତହିଁକି କି ଉପମା କରିବା । ସ୍ଫୁଟତର-ଫେନ-କଦମ୍ବ-କରମ୍ବିତ-ଯମୁନା ଜଳପୂରମିବ । ସ୍ଫୁଟତର ଦେଖାଯାଉଥିବା ଫେନ କଦମ୍ବ ସମ୍ବନ୍ଧନ । କରମ୍ବିତ ପ୍ରକାଶିତ । ଯମୁନା ନଦୀର ଜଳ ଯେମନ୍ତ ଅଟନ୍ତି ତରଙ୍ଗ ମାନଙ୍କର ଘାତରେ ଫେନ ମାନ ହୋଇ ଫେଣମାନଙ୍କ ପଂକ୍ତି ପ୍ରକାରେଣ ଭାସିଯାଉଥିଲେ ଯେମନ୍ତ ଦିଶଇ ସେହିମନ୍ତ ହୋଇ ମୁକ୍ତାହାରେ କରି କୃଷ୍ଣର ହୃଦୟ ଦିଶୁଛି ।

ଶ୍ୟାମଳମୃଦୁଳକଳେବରମଣ୍ଡଳମଧିଗତଗୌରଦୁକୂଳମ୍ ।
ନୀଳନଳିନମିବ ପୀତପରାଗପଟଳଭରବଳୟିତମୂଳମ୍[1] ॥ ୩ ॥

ଶ୍ୟାମଳ ଶ୍ୟାମବର୍ଣ୍ଣ । ମୃଦୁଳ ଅତ୍ୟନ୍ତ କୋମଳ । କଳେବର ମଣ୍ଡଳ । ସମସ୍ତ ଶରୀର । ଅଧିଗତ ଗୌର ଦୁକୂଳଂ । ଶ୍ୟାମଘନ ବେଷ୍ଟିତ ବିଦ୍ୟୁତ୍ବନ୍ତ ପରିଧାନ ପୀତବସ୍ତ୍ରଂ । ଶ୍ୟାମ ମେଘରେ ବିଜୁଳି ଯେମନ୍ତ ବଳୟିତ ହୋଇ ଯେମନ୍ତ ବିରାଜଇ ସେହିମନ୍ତ ଶୋଭା ପାଉଛନ୍ତି ପୀତବସ୍ତ୍ର । ପୁଣି କି ଉପମା ଦେବା । ପୀତ ପରାଗ ପଟଳ ଭରେଣ ବଳୟିତ । ବଳୟାକାର ବେଷ୍ଟିତ ମୂଳଂ । ନୀଳନଳିନମିବ । ପୀତବର୍ଣ୍ଣ[2] ସେ ଦଶଦ୍ୱାବର୍ଣ୍ଣ ପରାଗପଟଳ କରି ମଧ୍ୟଗତ କେଶରେ ମୂଳ ନୀଳ-ପଦ୍ମର ଯେମନ୍ତ ଦିଶଇ । ଏମନ୍ତ ରୂପ ହରିଙ୍କ ରାଧା ଦେଖିଲେ । ପୁନଃ କିଂ ଭୂତଂ ।

ତରଳଦୃଗଞ୍ଚଳଚଳନମନୋହରବଦନଜନିତରତିରାଗମ୍ ।
ସ୍ଫୁଟକମଳୋଦରଖେଳିତଖଞ୍ଜନଯୁଗମିବ ଶରଦି ତଡ଼ାଗମ୍ ॥ ୪ ॥

ପୁଣି ସେ ରୂପ କେମନ୍ତ ଅଟଇ । ତରଳ ଦୃଗଞ୍ଚଳ ସୁନ୍ଦରମୁଖଉତ୍ପାଦିତ-ରତିରସଯୁକ୍ତଂ । ଦୃଗ ସେ ଚକ୍ଷୁ ଦୁଇ ପ୍ରାନ୍ତ ସେ ତରଳ ଚଞ୍ଚଳ ହୋଇ ମନୋହର ବଦନଂ । ମନକୁ ହରୁଛି ସୁନ୍ଦରୀ ମାନଙ୍କେ । ହରିର ବଦନ ପୁନଃ କିଂ ଭୂତଂ ଜନିତ ରତିରାଗଂ । ଉତ୍ପାଦିତ ରତିରସଯୁକ୍ତଂ । ଉତ୍ପନ୍ନ ହୋଇଛି ରତିରସ ସେ ମୁଖରେ । ସେ ଦୁଇ ନୟନ ପୁଣି କେମନ୍ତ ଦିଶୁଛି ଶ୍ରୀକୃଷ୍ଣର ମୁଖ ପଦ୍ମରେ

୧-କ. ମେଳମ୍ ।
୨-କ. ବସ୍ତ୍ର ।

ବିକଶିତପଦ୍ମମଧ୍ୟଗତକ୍ରୀଡ଼ିତଖଞ୍ଜନଯୁଗ୍ମପକ୍ଷୀଦ୍ୱୟପୂର୍ଣ୍ଣ ଶାରଦ ଶରତକାଳ ତଡ଼ାଗ ପୁଷ୍କରିଣୀର ଶରତକାଳେ ନିର୍ମଳ ଜଳରେ । ପ୍ରସ୍ଫୁଟିତ ଶୁକ୍ଳପଦ୍ମ ପୁଷ୍ପ ମଧ୍ୟରେ ସମ୍ମୁଖ ହୋଇ ଖଞ୍ଜନ ପକ୍ଷୀ ଯେ ଶିଙ୍ଗାପକ୍ଷୀ ଦୁଇଗୋଟି ବସି କ୍ରୀଡ଼ା କରୁଥିଲେ । ତେଣେ କରି ପୁଷ୍କରିଣୀ ଯେମନ୍ତ ଦିଶୁଥାଇ ସେହିମନ୍ତ କୃଷ୍ଣର ବଦନକୁ ରାଧା ଦେଖିଲେ ।

**ବଦନକମଳପରିଶୀଳନମିଳିତମିହିରସମକୁଣ୍ଡଳଶୋଭମ୍ ।**
**ସ୍ମିତରୁଚିରୁଚିରସମୁଲ୍ଲସିତାଧରପଲ୍ଲବକୃତରତିଲୋଭମ୍ ॥ ୫ ॥**

ପୁଣି ସେ ହରି କେମନ୍ତ ଦିଶୁଛନ୍ତି । ମୁଖପଦ୍ମ ସଂସ୍କାର ମାର୍ଜନ ହୋଇଛି ମିଳିତ । ମିଳନ୍ତି ସଂଗତ । ସୂର୍ଯ୍ୟବତ୍ ତେଜୋମୟ କୁଣ୍ଡଳ ଶୋଭିତଂ ସେ ହରିର ବଦନ କମଳ ପରିଶୀଳନ । ପଦ୍ମମାଖେଂ ଅତି ସଂସ୍କାର ମାର୍ଜନ ହୋଇଁ ମିଳିତ ମିଳନ୍ତି ଦୁଇ କର୍ଣ୍ଣରେଂ । ମିହିର ଯେ ସୂର୍ଯ୍ୟ ତାହାର ସମାନ କୁଣ୍ଡଳ ଦୁଇ । ସେ କୁଣ୍ଡଳେଂ କରି ଶ୍ରୀ ମୁଖ ପଦ୍ମ ଶୋଭା ପାଉଁଛି । ପୁନଃ କିଂ ଭୂତଂ । ପୁଣି ସେ ମୁଖ ପଦ୍ମ କେମନ୍ତ ଦିଶୁଛି । ସ୍ମିତହାସ । କାନ୍ତ ରମଣୀୟ । ଦେଦୀପ୍ୟମାନୋ ଓଷ୍ଠପଲ୍ଲବଶ୍ଚୁମ୍ବିତ-ମୈଥୁନଲୋଭମାସ୍ୟଂ । ଅଳ୍ପହାସ୍ୟ ରମଣୀୟ ସୁନ୍ଦରମୟ ଓଷ୍ଠ ପଲ୍ଲବ ମୈଥୁନ କାଳ-ଚୁମ୍ବନ ନିମିତ୍ତେ ଲୋଭ କରୁଛି ।

**ଶଶିକିରଣଚ୍ଛୁରିତୋଦରଜଳଧରସୁନ୍ଦରକୁସୁମସୁକେଶମ୍ ।**
**ତିମିରୋଦିତବିଧୁମଣ୍ଡଳନିର୍ମଳମଳୟଜତିଳକନିବେଶମ୍ ॥ ୬ ॥**

ଚନ୍ଦ୍ରକାନ୍ତି ପୃଷ୍ଠୋଦର ନୀଳବର୍ଣ୍ଣ ମେଘବତ୍ । ନୀଳମେଘ ଭିତରେ ଚନ୍ଦ୍ରକିରଣ ଅଳ୍ପ ଅଳ୍ପ ମେଘ ଛିଦ୍ରେ କରି ଫୁଟିଥିଲେ ଯେମନ୍ତ ଦିଶଇ ସେହିମନ୍ତ ସୁନ୍ଦର କୁସୁମେ କରି ସୁବେଶ ହୋଇଛି ମୁଣ୍ଡରେ ଚୂଳ ଯେ ହରିର । ପୁନଃ କିଂ ଭୂତଂ । ଅନ୍ଧକାର ଭେଦୋଦିତ ନିର୍ମଳ ଚନ୍ଦ୍ରବିମ୍ବବତ୍ ଚନ୍ଦନତିଳକଭୂଷା ଯୁକ୍ତଂ । ଅନ୍ଧକାର ନିବାରି କରି ନିର୍ମଳ ଗଗନରେ ଉଦୟ ହୋଇଲା । ପୌର୍ଣ୍ଣମୀର ଚନ୍ଦ୍ର ଯେମନ୍ତ ଦିଶଇ ସେହିମନ୍ତ ମଳୟଜ ତିଳକ ଯେ ଚନ୍ଦନବିନ୍ଦୁ ତେଣେକରି ଶୋଭା ପାଉଁଛି ଲଲାଟ ଯାହାର ।

**ବିପୁଳପୁଲକଦରଦନ୍ତୁରିତଂ ରତିକେଳିକଳାଭିରଧୀରମ୍**
**ମଣିଗଣକିରଣସମୂହସମୁଜ୍ଜ୍ୱଳଭୂଷଣସୁଭଗଶରୀରମ୍ ॥ ୭ ॥**

ବିପୁଳ ବିସ୍ତାର ପୁଲକ ରୋମାଞ୍ଚ ରୋମୋଦ୍‌ଗମ ସୀତ ବିକାରେଂ କରି ଦରଦନ୍ତୁରିତଂ ଦନ୍ତଶବ୍ଦଯୁକ୍ତଂ । ଅଳ୍ପ ଅଳ୍ପ ଶିତେତକରି ଅଧୀର ଚଞ୍ଚଳ ହୋଇଛନ୍ତି ମୁଖ ଯାହାର । ପୁନଃ କିଂ ଭୂତଂ । ପୁଣି ସେ ହରି କେମନ୍ତ ଅଛଇ[1] । ରତ୍ନ ସମୂହ ଭୂଷିତ କାନ୍ତି ସଂକାସ୍ପଦ କାମ ବ୍ୟାପ୍ତ ଦେହଂ । ମଣିଗଣ କିରଣ ମଣିରତ୍ନ କିରଣ ସମୂହ ତେଜୋମୟ ଉଜ୍ଜ୍ୱଳ ଭୂଷଣେ କରି ଶୁଭଗଶରୀରଂ । ସର୍ବଲାବଣ୍ୟ-ସଂପୂର୍ଣ୍ଣ ଶରୀରଂ । ସମସ୍ତ ଲାବଣ୍ୟ ସଂପୂର୍ଣ୍ଣ ଅତ୍ୟନ୍ତ ସୁନ୍ଦର ଶରୀର ଅଛଇ । ଏବଂ ଭୂତ ଯେ କୃଷ୍ଣ ତାହାଙ୍କୁ ରାଧା ଦେଖିଲେ ।

**ଶ୍ରୀଜୟଦେବଭଣିତମତିଶୋଭନବିଭବଭୂଷଣସାରମ୍ ।**
**ପ୍ରଣମତ ହୃଦି ବିନିଧାୟ ହରିଂ ସୁଚିରଂ ସୁକୃତୋଦୟସାରମ୍ ॥ ୮ ॥**

ଜୟଦେବ କବି ବୋଲୁଛନ୍ତି—ହେ ଭକ୍ତଜନମାନେ ଶୁଣ । ମମ ଭଣିତ-ଗୀତଂ ଶୃଣୁ । ମୋହର ଭଣିଲା ଏ ଗୀତ ଶୁଣ । ଏ ଗୀତ କେମନ୍ତ ଅଛଇ । ଅତିଶୋଭନ । ଅତ୍ୟନ୍ତ ସୁନ୍ଦର କର୍ଣ୍ଣପ୍ରେ ଧ୍ୟାନଗମ୍ୟ । ବିଭବଭୂଷଣସାରଂ । ବିଭବ ଯେ ଅଣିମାଦି ଐଶ୍ୱର୍ଯ୍ୟନିଧି ତେତେଣି ଯୁକ୍ତ ଅଛଇ । ଅଷ୍ଟନିଧି ସାର ଅଛଇ । ଏ ଅଷ୍ଟନିଧିକ ସାର ଯେମନ୍ତ କାହିଁ କରି ସେହିମତି କଣ୍ଠରେ ଥାଇ ଯେତେବେଳେ ଇଚ୍ଛି ସେତେବେଳେ[2] ପାଇ । ଏମନ୍ତ ଯେ ମୋହର ଗୀତ ଏଥିକୁ ହୃଦି ହୃଦୟରେ ବିନିଧାୟ ନିଶ୍ଚଳ କରି ଧରି ଜୟଦେବ କବି ହରିଂ ପ୍ରଣମତ । ହରିଙ୍କି ପ୍ରଣାମ କରୁଛନ୍ତି । ତୁମ୍ଭେମାନେ ସେହିମତି କରି ହରିଙ୍କି ପ୍ରଣାମ କର । ସେ ହରି କେମନ୍ତ ଅଛଇ । ସୁକୃତୋଦୟସାରଂ । ପୁଣ୍ୟୋତ୍ପତ୍ତିକାରଣଂ । ସମସ୍ତ ପୁଣ୍ୟ ମାନଙ୍କର ଫଳୋଦୟକୁ ସାର ଆଦିକାରଣ ଅଛନ୍ତି । ଯେଣୁକରି ହରିଃ ସର୍ବକାମଫଳପ୍ରଦ ଅଛନ୍ତି । ଏମନ୍ତ ହରିଙ୍କି ଏ ଗୀତନାଦେ ଧ୍ୟାନକଲେ ସଂସାର ସମୁଦ୍ରୁଂ ତାରିଦିବଟି ।

---

୧-ଖ. ଅଛନ୍ତି ।

୨-ଖ. ତେତେବେଳେଂ ।

ଶ୍ଳୋକ

**ଅତିକ୍ରମ୍ୟାପାଙ୍ଗଂ ଶ୍ରବଣପଥପର୍ଯ୍ୟନ୍ତଗମନ—**
**ପ୍ରୟାସେନୈବାକ୍ଷ୍ଣୋସ୍ତରଳତରଭାବଂ ପଣ୍ଡତୟୋଃ ।**
**ଇଦାନୀଂ ରାଧାୟାଃ ପ୍ରିୟତମସମାଲୋକସମୟେ**
**ପପାତ ସ୍ୱେଦାମ୍ବୁପ୍ରସର ଇବ [1]ହର୍ଷାଶ୍ରୁନିକରଃ ॥ ୮ ॥**

ଇଦାନୀଂ ସାମ୍ପ୍ରତଂ ରାଧାୟାଃ ଅତ୍ୟନ୍ତ ବଲ୍ଲଭ ଦର୍ଶନ ଅନେକ ପ୍ରିୟତମ ସମାଲୋକନ ସମୟେ ତରଳତରଭାବଂ ଗମିତୟୋରକ୍ଷ୍ଣୋଶ୍ଚକ୍ଷୁଷୋ ହର୍ଷାଶ୍ରୁ[2]ନିକର ଆନନ୍ଦାଶ୍ରୁ[3] ଜଳୌଘଂ ପପାତ[4] ଇବ ଉତ୍‌ପ୍ରେକ୍ଷ୍ୟତେ । ତଦନନ୍ତରେ ରାଧାର ପ୍ରିୟତମ ଅତ୍ୟନ୍ତ ପ୍ରାଣବଲ୍ଲଭ ଯେ ହରିଙ୍କ ଶ୍ରୀମୁହଁବା ମାତ୍ରେକ ସେହିକ୍ଷଣେ ଦୁଇଚକ୍ଷୁ ତରଳତର ଭାବଂ ଅତ୍ୟନ୍ତ ଚଞ୍ଚଳ ଭାବକୁ ପାଇଁ ଆନନ୍ଦାଶ୍ରୁ ଜଳେ ସଂପୂର୍ଣ୍ଣ ହୋଇଁ ପଡ଼ିବା ପ୍ରାପ୍ତେ ହଇଲା । କେନ କେନ ପ୍ରକାରେଣ କେମନ୍ତ ହୋଇଁ ଶ୍ରବଣ ପଥ ପର୍ଯ୍ୟନ୍ତ ଗମନ ପ୍ରୟାସେନ କର୍ଣ୍ଣମାର୍ଗ ପର୍ଯ୍ୟନ୍ତ ଗମନ କଲା । କଥିବ । କି ଉପମା କରିବା ସ୍ୱେଦାମ୍ବୁ ପ୍ରସର ଇବ । ଗମନ ପ୍ରୟାସାତ୍ ଯଥା ସ୍ୱେଦ ରୂପ ଜଳେ ପ୍ରସରେ ବସ୍ତ୍ରେ ହବନ୍ତି । ସ୍ୱେଦ ଯେ ଝାଳ ତାହାର ପ୍ରାପ୍ତ ହୋଇଁ ବହୁତର ପ୍ରବାହ ହୋଇଁ ବିସ୍ତାର ହୋଇଲା । କେତେଦୂର ପର୍ଯ୍ୟନ୍ତ ? ଅପାଙ୍ଗମତିକ୍ରମ୍ୟ ନେତ୍ରାନ୍ତର ହୁଅନ୍ତ ଦୂର ବ୍ୟାପିଲା । ଆନନ୍ଦ ଜଳ ପ୍ରବାହ ।

**ଭଜନ୍ତ୍ୟାସ୍ତଲ୍ପାନ୍ତଂ କୃତକପଟକଣ୍ଡୂତିପିହିତଂ[5]**
**ସ୍ମିତଂ ଯାତେ ଗେହାଦ୍‌ବହିରବହିତାଳୀପରିଜନେ ।**
**ପ୍ରିୟାସ୍ୟଂ ପଶ୍ୟନ୍ତ୍ୟାଃ ସ୍ମରଶରସମାକୂତ[6]ସୁଭଗଂ**
**ସଲଜ୍ଜା ଲଜ୍ଜାପି ବ୍ୟଗମଦତି ଦୂରଂ ମୃଗଦୃଶଃ ॥ ୯ ॥**

ଅଥାନନ୍ତରେ ମୃଗଦୃଶଃ ମୃଗନୟନାୟା ରାଧାୟାଃ ସ୍ତଲ୍ପାନ୍ତଂ ଶୟନଶୟ୍ୟାଂ ଭଜନ୍ତ୍ୟା ଆଶ୍ରିତବତ୍ୟା ସଲଜ୍ଜା ଲଜ୍ଜାପି[7] ଅତିଦୂରଂ ବ୍ୟଗମତ୍ । ତଦନନ୍ତରେ ଶ୍ରୀକୃଷ୍ଣର ଶୟନ ନିକଟେଂ ମିଳିଲେ ସେ ରାଧା ଅତ୍ୟନ୍ତ ଲଜ୍ୟାଭର ହୋଇଁ । ସେ ରାଧା କେମନ୍ତ ଅଟନ୍ତି । ମୃଗଦୃଶଃ ମୃଗଲୋଚନାଃ । ମୃଗଲୋଚନା ଅଟନ୍ତି । ପୁଣି

---

୧-କ. ଖ. ହର୍ଷାଶ୍ରୁ
୨-କ. ଖ. ହର୍ଷାଶ୍ରୁ
୩-ଖ. ଆନନ୍ଦାଶ୍ରୁ
୪-ଖ.ରେ ଅଧିକ—ପତିତ
୫-କ. ପିହିତଂ
୬-କ. ସମାକୃତ
୭-କ.ଖ. ସଲଜ୍ୟା ଲଜ୍ୟାପି

କେମନ୍ତ ଅଟନ୍ତି । ପ୍ରିୟାସ୍ୟଂ ପଶ୍ୟନ୍ତ୍ୟାଃ ଶ୍ରୀକୃଷ୍ଣର ମୁଖକୁ ଚାହୁଁ ଛନ୍ତି । ଶ୍ରୀକୃଷ୍ଣସ୍ୟ ମୁଖଂ କଂ ଭୂତଂ । କୃତ କପଟ କଣ୍ଡୂତିପିହିତଂ । କୃତକପଟସ୍ୟ ପିହିତମ୍ । ପୁନଃ କଂ ଭୂତଂ । ପୁଣି ସେ କୃଷ୍ଣର ମୁଖ କେମନ୍ତ ଅଟଇ । ସ୍ମରଶରସମାକୂତଂ[୧]- ସୁଭଗଂ । କାମବାଣ ଯୋଗ୍ୟାଭିପ୍ରାୟଂ । କାମବାଣ ତୁଣବତ୍ କନ୍ଦର୍ପବାଣ ସ୍ଥିତ ସ୍ଥାନଂ । କୋଟି କୋଟି ହୋଇଁ କନ୍ଦର୍ପ ବାଣ କ ମୁଖରୁ ସ୍ଫୁରୁଛି । ସୁନ୍ଦରଂ । ଶ୍ରୀକାମମହାତ୍ମ୍ୟାଦ ଭୂଷିତଂ । ସୁନ୍ଦର ବରଂ । ପୁନଃ କଂ ଭୂତଂ । ସସ୍ମିତଂ । ଅଳ୍ପହାସ୍ୟଯୁକ୍ତଂ । ମନ୍ଦହାସ୍ୟ ଯୁକ୍ତ ହୋଇଅଛି ଏମନ୍ତ ଶ୍ରୀକୃଷ୍ଣର ବଦନ ରାଧା ତାହାଙ୍କ ଚାହିଁଲେ । କସ୍ମିନ୍ ସତି । କେତେବେଳେ ଚାହିଁଲେ । ଅବହିତାଳି ପରିଜନେ । ବହିର୍ଯାତେ ସତି ହିତବନ୍ତି ସେବକ ସଖି ଯେ ବୃନ୍ଦ ସେ ଗେହାଦ୍ ବହିରବହିତାଃ କୁଞ୍ଜଲତାରୁ ବାହାରକୁ ଗଲାରେଂ ରାଧାର ଦେହରେ ଥିଲା ଯେ ଅତ୍ୟନ୍ତ ଲଜ୍ୟା ସେ ଅନ୍ତଦୂରଂ ବ୍ୟଗମତ୍ । ଅନ୍ତ ଦୂରକୁ ଗଲାଗଲା ।

**ଇତି ଶ୍ରୀଗୀତଗୋବିନ୍ଦେ ମହାକାବ୍ୟେ କବିବରଜୟଦେବକୃତୌ**
**ସାନନ୍ଦଗୋବିନ୍ଦୋ ନାମ ଏକାଦଶଃ ସର୍ଗଃ ।**

---

୧-କ. ମୃଗଶର ମମକୃତ

# ଦ୍ୱାଦଶଃ ସର୍ଗଃ

ଶ୍ଳୋକ

**ଗତବତି ସଖୀବୃନ୍ଦେ ମନ୍ଦତ୍ରପାଭରନିର୍ଭର—**

**ସ୍ମରଶରବଶାକୂତ[1]ସ୍ଫୀତସ୍ମିତସ୍ନପିତାଧରାମ୍ ।**

**ସରସମନସଂ ଦୃଷ୍ଟ୍ୱା ରାଧାଂ[2] ମୁହୁର୍ନବପଲ୍ଲବ—**

**ପ୍ରସବଶୟନେ ନିକ୍ଷିପ୍ତାକ୍ଷୀମୁବାଚ ହରିଃ ପ୍ରିୟାମ୍ ॥ ୧ ॥**

ସଖୀବୃନ୍ଦେ ସଖୀ ସମୂହେ ବହିର୍ଗତବତି ସତି ହରି ପ୍ରିୟାଂ ରାଧାଂ ସରସମନସଂ ଦୃଷ୍ଟ୍ୱା ଉବାଚ । ତଦନନ୍ତରେ ସଖୀବୃନ୍ଦ ଯେ ଲଜ୍ୟା ଶଙ୍କା ଭୟ ଇତ୍ୟାଦି ନାଶ ଯେ ସମ୍ଭ୍ରାନ୍ତ ସ୍ୱଭାବ ଏ ସଖୀମାନେ । ଏମାନେ ଯେତେବେଳେ ରାଧାର ନିକଟରୁ ହରି ମୁଖ ଦର୍ଶନ ବାହାର ହୋଇଗଲେ ଘୁଞ୍ଚିବାରେ ଶ୍ରୀକୃଷ୍ଣ ଯେ ରାଧାର ନିକଟକୁ ଗୁହ୍ନିଁଲେ । ତାଂ ରାଧାଂ କିଂ ଭୂତାଂ । ସେ ରାଧା କେମନ୍ତ ହୋଇଛନ୍ତି । ମନ୍ଦତ୍ରପା ଯେ ଅଳ୍ପ ଲଜ୍ୟା ତସ୍ୟ ଭରେଣ ନିର୍ଭର ଭରିତଂ ଜାତଂ । ଅତଏବ ନିର୍ଭର । କାମରସ ବଶାସିଦ୍ଧପ୍ରାପ୍ତ[3] ଯେ ସ୍ମିତହାସ୍ୟ ତେଣେକରି ସ୍ନପିତାଧରାଂ ତ୍ରବମନ୍ଦ ଶୁଭ୍ର ଅମୃତ ବଦନରୁ । ପୁନଃ କିଂ ଭୂତାଂ । ପୁଣି କେମନ୍ତ ହୋଇଛନ୍ତି । ଦୃଷ୍ଟି ହର୍ଷଯୁକ୍ତା ସନ୍ତି ଅତ୍ୟନ୍ତ ହର୍ଷ ହୋଇ ମୁହୁଃ ପୁନଃ ପୁନଃ କରି ନବପଲ୍ଲବ ପ୍ରସବ ଶୟନେ ନିକ୍ଷିପ୍ତାକ୍ଷୀଂ ଅତ୍ୟନ୍ତ ନୂତନ କୋମଳ କୁସୁମ ବୃକ୍ଷୋଦ୍ଭବ ପତ୍ର ମାନଙ୍କରେ ପ୍ରସବ ନିର୍ମିତ ହୋଇଅଛି ଯେ ପଲ୍ଲବଶଯ୍ୟା ସେ ଶଯ୍ୟାରେ ନିକ୍ଷିପ୍ତ କରିଛି ଦୁଇ ଚକ୍ଷୁ । ପୁନଃ ପୁନ କରି ଗୁହ୍ନାଁଛି ଶଯ୍ୟାକୁ । ପୁନଃ କିଂ ଭୂତାଂ । ପୁଣି ସେ କେମନ୍ତ ହୋଇଛନ୍ତି । ସରସମନସଂ । ରତିରସେ କରି ଅଳସ ହୋଇଛି ଭାବ ଯାହାର ଏବଂ ବିଶିଷ୍ଟାଂ ତାଂ ପ୍ରିୟାଂ ରାଧାଂ ଦୃଷ୍ଟ୍ୱା ହରିରୁବାଚ । ଏମନ୍ତ ପ୍ରିୟା ଯେ ରାଧା ତାହାଙ୍କୁ ଗୁହ୍ନିଁକରି ଏମନ୍ତ ବୋଲୁଛନ୍ତି ।

---

୧-ଖ. ବଶାକୂତ

୨-କ. ଖ. ଦୃଷ୍ଟା

୩-ଖ. ଅଧିକ ପାଠ 'କରି'

## ଗୀତ

(ରାମକେରୀରାଗେଣ ଗୀୟତେ)[1]

**କିଶଳୟଶୟନତଳେ କୁରୁ କାମିନି ଚରଣକମଳନିବେଶମ୍ ।**
**ତବ ପଦପଲ୍ଲବବୈରିପରାଭବମିଦମନୁଭବତୁ ସୁବେଶମ୍ ।**
**କ୍ଷଣମଧୁନା ନାରାୟଣମନୁଗତମନୁଭବ ରାଧିକେ ॥ ୧ ॥**

(ଧ୍ରୁବପଦମିଦମ୍)

ଶ୍ରୀକୃଷ୍ଣ ବୋଲୁଛନ୍ତି— ହେ କାମିନି, ହେ ରାଧେ କିଶଳୟ ଶୟନତଳେ[2] କିଶଳୟ ଏ ଯେ କୋମଳ ପତ୍ରଶଯ୍ୟା ଚରଣ ନିବେଶଂ କୁରୁ । ଏ ଶଯ୍ୟା ଉପରେ ତୁମ୍ଭେ ଚରଣ ଆଣି ଦିଅ । ସେ ନିମିତ୍ତେ ଏହା ଉପରେ ଚରଣ ଦେବା ତାହା ଶ୍ରେଷ୍ଠ । ଏ ପତ୍ରଶଯ୍ୟା ତୁମ୍ଭର ପାଦପଦ୍ମର ବୈରୀ ଅଟଇ । ତୁମ୍ଭର ପାଦପଦ୍ମ ଯେମନ୍ତ ସୁନ୍ଦର ଶୀତଳ କୋମଳ ପଦ୍ମଗନ୍ଧଯୁକ୍ତ ତହୁଁ ଅତ୍ୟନ୍ତ ରମଣୀୟ ମନୋହର ଏ ପତ୍ରଶଯ୍ୟା । ଏଣୁକରି ତୁମ୍ଭର ପାଦପଦ୍ମ ଏହା ଉପରେ ଦେଲେ ଏ ପରାଭବ ପାଉ । ସୁଖଶାନ୍ତି ଜୟ ହେଉ । ସେ ନିଶ୍ଚିନ୍ତେ ଭୋଗ କରୁ । ଏ ଶଯ୍ୟା ତୁମ୍ଭର ପାଦର ଶୋଭାକୁ ହରୁଛି ସୁନ୍ଦର ପଣେ । ହେ ସଖୀ, ଇଦଂ ତଳ୍ପଂ ତବ ପଦ ପଲ୍ଲବ ସଂଯୋଗେନୈବ ସୁବେଶମନୁଭବତୁ । ତୁମ୍ଭର ପାଦପଦ୍ମ ସଂଯୋଗେ ଏ ଶଯ୍ୟାକୁ ସୁବେଶ ହେଉ । ସୁନ୍ଦର ହେଉ । ହେ ରାଧେ ତବାନୁଗତଂ ନାରାୟଣଂ ଅଧୁନା ଇଦାନୀଂ କ୍ଷଣମାତ୍ରଂ ଅନୁଭବ । ତୁମ୍ଭଙ୍କ ଅନୁଗତ ସନ୍ନିକର୍ଷ ନିକଟେଂ ଅଛି ଯେ ନାରାୟଣ ନିର୍ଲେପ ନିରଞ୍ଜନ ଦୁର୍ଲଭ୍ୟ ମୋତେ ତୁମ୍ଭେ ନିର୍ଲୋପ ଭାବ ନିଶ୍ଚିନ୍ତ ହୋଇଁ କ୍ଷଣଂ କ୍ଷଣମାତ୍ରଂ ଅନୁଭବ । ଅନୁଭବ ସ୍ୱୀକାର କର ।

**କରକମଳେନ କରୋମି ଚରଣମହମାଗମିତାସି ବିଦୂରମ୍ ।**
**କ୍ଷଣମୁପକୁରୁ ଶୟନୋପରି ମାମିହ[3] ନୂପୁରମନୁଗତଶୂରମ୍ । ୨ ।**

ଶ୍ରୀକୃଷ୍ଣ ବୋଲୁଛନ୍ତି ହେ ରାଧିକେ, ଅହଂ କରକମଳେନ ହସ୍ତପଦ୍ମେନ ଇହ ଶଯ୍ୟାୟାଂ ନିକଟେ କରେ ତବ ଚରଣସ୍ୟ ସତ୍କାରଂ ପରିଚର୍ଯ୍ୟାଯୁକ୍ତାଦିକଂ କରୋମି ।

---

୧-କ.ରେ ବନ୍ଧନୀ ଅନ୍ତର୍ଗତ ପାଠ ନାହିଁ ।
୨-କ. ତଳେତ
୩-କ. ମାମିବ

ହେ ମାନିନି, ଏ ଶଯ୍ୟା ଉପରେ ଚରଣ ଦିଅ । ମୁଁ ଆପଣାର ପଦ୍ମ ହସ୍ତେ କରି ତୁମ୍ଭ ପାଦପଦ୍ମର ଚଉପୂଜା ସେବା ମାର୍ଜନାଦି କରି ପୂଜା କରିବି । କ୍ଷମାତେଦାମି ବଦ୍ଧଂ । ତୁମ୍ଭେ ଏବେ ମୋହର ନିକଟକୁ ଆସ । ଦୂରକୁ ନ ଯାଅ । ହେ ରାଧିକେ, ଅତ ଶଯ୍ୟୋପରି ମାଂ ଶ୍ରୀକୃଷ୍ଣଂ କ୍ଷଣଂ କ୍ଷଣମାତ୍ରଂ ଉପକୁରୁ । ଉପକାରିଣୀ ଭବ । ଏ ପତ୍ର ଶଯ୍ୟା ଉପରେ ମୋତେ ତୁମ୍ଭେ କ୍ଷଣମାତ୍ର ଉପକାର କର । ଶଯ୍ୟାରେ ଆଣି ଚରଣ ଦିଅ । ତୁମ୍ଭର ଚରଣକୁ କି ଉପମା କରିବା । ନୂପୁରମନୁଗତଭୁରଂ । ସେଥିନିମନ୍ତେ ଏ ସୁବର୍ଣ୍ଣ ନିର୍ମିତ[1] ଏହି ସେ ନୂପୁର[2] ଅନୁଗତ ଗୋପାଳଙ୍କୁ ଅନୁସରଣ ହୋଇବାକୁ ସରଂ । ସମର୍ଥ ଅଟଇ ।

**ବଦନସୁଧାନିଧିଗଳିତମମୃତମିବ ରଚୟ ବଚନମନୁକୂଳମ୍ ।**
**ବିରହମିବାପନୟାମି ପୟୋଧରରୋଧକମୁରସି ଦୁକୂଳମ୍ ।। ୩ ।।**

କୃଷ୍ଣ ବୋଲୁଛନ୍ତି—ହେ ରାଧିକେ, ତୁମ୍ଭେ ଯେବେ ଏ ଶଯ୍ୟାରେ ଚରଣ ନ ଦେବ ତେବେ ଏମନ୍ତ କର । ତବ ବଦନସୁଧାନିଧିଗଳିତଂ ମୁଖଚନ୍ଦ୍ରାମୃତଂ ଅମୃତମୟବଚନଂ ରଚୟ । ତୁମ୍ଭର ମୁଖଚନ୍ଦ୍ରରୁ ଗଳନ୍ତ୍ରି ଯେ ଅମୃତମୟ ବଚନ ତଦ୍‌ରଚୟ ।[3] ସେ ବଚନ କହ । ମୋତେ ଅମୃତମୟ ବଚନ କହିବା ମାତ୍ରକେ ମୁଁ ପୁଣି ତୁମ୍ଭଙ୍କ ଉପକାର କରିବି । ତୁମ୍ଭ ହୃଦୟରେ ଅଛି ଯେ ବସ୍ତ୍ର ନିର୍ମିତ କାଞ୍ଚଳି ଏ ତୁମ୍ଭଙ୍କ ବିରହମିବ । ବଡ଼ ବିରହ ଦୁଃଖର ପ୍ରାୟେ ହୋଇଛି ଦେଖ । ତବ ଉରସି[4] ପୟୋଧର ରୋଧକଂ ତୁମ୍ଭ ହୃଦୟରେ ଦୁଇ କୁଚ ରୋଧକ ହୋଇ ଆବୋରି ଲାଗିଛି ଅଛି । ମୁଁ ଏହାକୁ ଅପନୟାମି । ମୁଁ ତୁମ୍ଭ ହୃଦୟରୁଂ ଫେଡ଼ି ପକାଇବି ।

**ପ୍ରିୟପରିରମ୍ଭଣରଭସବଳିତମିବ ପୁଲକିତମତିଦୁରବାପମ୍ ।**
**ମଦୁରସି କୁଚକଳଶଂ ବିନିବେଶୟ ଶୋଷୟ ମନସିଜତାପମ୍ ।। ୪ ।।**

କୃଷ୍ଣ ବୋଲୁଛନ୍ତି—ହେ ରାଧେ ! ତୁମ୍ଭେ ମୋତେ ନ ଭଜ । ପ୍ରତ୍ୟକ୍ଷେ ଦେଖ ତୁମ୍ଭର ଦୁଇ କୁଚକୁ । କିଂ ଭୂତଂ କୁଚକଳଶଂ । ପ୍ରିୟ ପରିରମ୍ଭଣ ରଭସ-ବଳିତମିବ ମନ୍ୟେ । ଦେଖ ତୁମ୍ଭର ପ୍ରିୟ ଯେ ମୁଁ ମୋତେ ପରିରମ୍ଭ ଆଲିଙ୍ଗନ କରିବ ବୋଲି ବଳିତଂ । ବଳୁଛି । ମୋହର ତହିଁକି ଉନ୍ମୁଖ ହୋଇ ଧାଇଁ ଆସୁଛି ପ୍ରାୟେ ମୁଁ ମଣୁଛି ।ସେଥିନିମନ୍ତେ କୁଚକଳଶ ମୋହର ମହିମା ଜାଣଇ । ତୁମ୍ଭେ ନ ଜାଣ । ମୁଁ ଅତି ଦୁରବାପଂ । ମୁଁ ବ୍ରହ୍ମାଦି ମାନଙ୍କର ବ୍ରହ୍ମାରୁଦ୍ର ଇନ୍ଦ୍ରାଦି କରି ସମସ୍ତ

---

୧-ଖ.ରେ ଅଧିକ 'ନୂପୁର' ୩-କ. ତଦ୍‌ବଚସ୍ତଃ ।
୨-ଖ. ଚରଣର ୪-କ. ଉରଜ

ଦେବୀ ମାନଙ୍କୁ ଅତିଦୂର ଅଗୋଚର ପଦକମଳଂ । ମୋତେ କେହି ନ ଜାଣନ୍ତି । ଦେଖ ମୋହର ମହିମା ଜାଣିକରି ପୁଲକିତ ରୋମାଞ୍ଚିତ ହୋଇଛନ୍ତି ଏମନ୍ତ ହର୍ଷ ଯେ ସ୍ତନ ମଣ୍ଡଳ ଏହାକୁ ଆଣି ମଦୁରସି ନିବେଶୟ । ମୋହର ହୃଦୟରେ ବସାଇଁ ମନସିଜ ତାପଂ ଶୋଷୟ । ମନସିଜ ଯେ କନ୍ଦର୍ପ ତାହାର ତାପ ନାଶ କର ।

**ଅଧରସୁଧାରସମୁପନୟ ଭାବିନି ଜୀବୟ ମୃତମିବ ଦାସମ୍ ।**
**ତ୍ୱୟି [1]ବିନିହିତମନସଂ ବିରହାନଳଦଗ୍ଧବପୁଷମବିଳାସମ୍ ।। ୫ ।।**

ହେ ଭାବିନି ! ତେ ତବ ଅଧରରସଂ ମହ୍ୟଂ ଉପନୟ । ଅଧରାମୃତପାନଂ ଦେହି । ତୁମ୍ଭର ଅଧରର ଅମୃତ ମୋତେ ଦିଅ । ଚୁମ୍ବନ କରି ପାନ କରିବି । ମୁଁ କେମନ୍ତ ହୋଇଛି । ମୃତମିବ । ମଲା ପ୍ରାଣୀର ପ୍ରାୟେ । ମୋତେ ଜୀବୟ । ମଲାପ୍ରାଣୀ ଯେମନ୍ତ ଅମୃତ ପାଇଲେ ଜୀବନ ପାଏ ସେହିମତି କରି ମୋତେ ବଞ୍ଚାଅ[2] । ଅହମେବ ତବ ଦାସଂ । ମୁଁ ତୁମ୍ଭର ଦାସ । ସେବକ ଅଟଇ । ତ୍ୱୟି ବିନିହିତ-ମନସଂ । ତୁମ୍ଭ ଦେଇଅଛି ମନକୁ । କିମ୍ଭୂତେ ବିରହାନଳଦଗ୍ଧବପୁଷଂ ତୁମ୍ଭର ବିଚ୍ଛେଦ ବିରହରୂପଂ ଜାତ ହୋଇଲା ଯେ ଅନଳ ତେଣେ ଦଗ୍ଧ ବପୁର୍ଯସ୍ୟ ସୋଽହଂ । ବିରହାନଳେ ଦଗ୍ଧ ହୋଇଛି ଦେହ ମୋହର । ଅବିଳାସଂ । ଅଧୀର ଭାବଂ । ନ ପାଇଛି ତୁମ୍ଭର ସଙ୍ଗ ବିଳାସକୁ ।

**ଶଶିମୁଖି ! ମୁଖରୟ ମଣିରସନାଗୁଣମନୁଗୁଣକଣ୍ଠନାଦମ୍ ।**
**ଶ୍ରୁତିଯୁଗଳେ ପିକରୁତବିକଳେ ମମ ଶମୟ ଚିରାଦବସାଦମ୍ ।। ୬ ।।**

ହେ ଶଶିମୁଖି ! ଚନ୍ଦ୍ରବଦନେ. ତ୍ୱଂ ମଣିରସନା ଗୁଣଂ । (ମାଣିକ୍ୟାଦି ରତ୍ନ ମାନଙ୍କରେ ନିର୍ମିତ ଯେ)[3] କଟି ମେଖଳା । ଗୁଣଂ ଶବ୍ଦଂ ମୁଖରୟ । ବାଦୟ । ମାଣିକ୍ୟାଦି ରତ୍ନମାନଙ୍କରେ ନିର୍ମିତ ଯେ କଟିମେଖଳା ତାହାର ଗୁଣ ଯେ ଶବ୍ଦ ତାହା କରାଅ । ହେ ସଖି[4] ! କଣ୍ଠ ନିନାଦଂ ଅନୁଗୁଣ ଗଣନେ ମମ ଶ୍ରୁତି ଯୁଗଳେ । ମୋହର କର୍ଣ୍ଣ ଦୁଇ । ପିକରୁତ ବିକଳେ । କୋଇଲି ମାନଙ୍କର ଶବ୍ଦେ କରି ବିକଳ ହୋଇଛନ୍ତି । ଚିରାତ୍ ଅପାର କାଳରୁଁ । ଏବେ ମେ କର୍ଣ୍ଣ ବିକଳ ଅବସାଦ ନାଶ କରୁ । ତୁମ୍ଭର କଣ୍ଠ କରି ।

---

୧-କ. ବିନିହିତ
୨-ଖ ଜୀଅ ।
୩-ଖ.ରେ ମାଣିକ୍ୟାଦି ନାହିଁ
୪-ଖ.ରେ ଅଧିକ ପାଠ—କଣ୍ଠ ନିନାଦଂ ଅନୁଗୁଣ । ସ୍ୱଭାବେଂ ପ୍ରେମ ଗଦ୍‌ଗଦ୍ ଶବ୍ଦଂ କୁରୁ ହେ ସଖି ! ପ୍ରେମ ଗଦ୍‌ଗଦ ବଚନ କହ ।

[୧]ମାମତିବିଫଳରୁଷା ବିକଳୀକୃତମବଲୋକିତମଧୁନେଦମ୍ ।
ମୀଳିତଲଜ୍ଜିତମିବ ନୟନଂ ତବ ବିରମ ବିସୃଜ ରତିଖେଦମ୍ ॥ ୭ ॥

ହେ ସଖି, ଅତିବିଫଳରୁଷା ଅତି ବିଫଳ ରୋଷ କରି ବିକଳୀକୃତ ଈଷଦ୍ କୁଞ୍ଚିତଂ ନୟନଂ ତବ ଏ ନୟନେ ଭ୍ରମର ବଡ଼ ବିକଳ ହୋଇଅଛି । ଏବେ ଭ୍ରମର ଦୁଇ ନୟନ । ଲଜ୍ଜ୍ୟ ଧନା । ତୁମ୍ଭେ ଏବେ । ମିଳିତ ବୁଜି ହୋଇଛି ଲଜ ପାଉଛି ଏମନ୍ତ ପ୍ରାୟେ ଯେ ନୟନ ତହୁଁ ରତି ଖେଦ ବିସୃଜ ତ୍ୟଜ । ଏ ମନ ଦୁଃଖ ଛାଡ଼ ।

ଶ୍ରୀଜୟଦେବଭଣିତମିଦମନୁପଦନିଗଦିତମଧୁରିପୁମୋଦମ୍ ।
ଜନୟତୁ ରସିକଜନେଷୁ ମନୋହରରତିରସଭାବବିନୋଦମ୍ ॥ ୮ ॥

ଅଥାନନ୍ତରେ ଜୟଦେବ କବି ବୋଲୁଅଛନ୍ତି—ହେ ବୈଷ୍ଣବ ଜନମାନେ ଶୁଣ । ଇଦଂ ଜୟଦେବେନ ଭଣିତଂ । ଜୟଦେବ ଭଣିଲେ ଏ ଗୀତ କିଂ ଭୂତଂ । କେମନ୍ତ ଅଟଇ । ଅନୁପଦ ନିଗଦିତ ମଧୁରିପୁ ମୋଦଂ । ପଦଂ ପଦଂ ଅନୁପଦଂ । ପଦକୁ ପଦ । ମଧୁରିପୁ ମୋଦଂ ନିଗଦିତଂ । ପଦକୁ ପଦ ମଧୁରିପୁ ଯେ ଶ୍ରୀକୃଷ୍ଣ ତାହାଙ୍କର ମୈଥୁନ ପ୍ରମୋଦଂ ରାଧା ସମେତ କ୍ରୀଡ଼ାନନ୍ଦ ବର୍ଣ୍ଣନଂ ରାଧାର ସହିତ ଶ୍ରୀକୃଷ୍ଣର କ୍ରୀଡ଼ା ଆନନ୍ଦ ବର୍ଣ୍ଣନା ଅଟଇ । ଏମନ୍ତ ଯେ ଗୀତ ସେ ରସିକ ଜନମାନଙ୍କର ମନରେ ରମଣୀୟ ଭାବ ବିନୋଦଂ । କାମ କ୍ରୀଡ଼ା ରସ ଭକ୍ତି ବିନୋଦଯୁକ୍ତ ଜାତ କରୁ ।

**ଶ୍ଲୋକ**

ପ୍ରତ୍ୟୂହଃ ପୁଲକାଙ୍କୁରେଣ ନିବିଡାଶ୍ଳେଷେ ନିମେଷେଣ ଚ
କ୍ରୀଡାକୂତବିଲୋକିତେଽଧରସୁଧାପାନେ କଥାନର୍ମଭିଃ ।
ଆନନ୍ଦାନୁଗମେନ ମନ୍ମଥକଳାଯୁଦ୍ଧେଽପି ଯସ୍ମିନ୍ନଭୂ-
ଦୁଦ୍ଭୂତଃ ସ ତୟୋର୍ବଭୂବ ଲଳିତାରମ୍ଭଃ ପ୍ରିୟଂ [୨]ସଭୃକଃ ॥ ୨ ॥

ଅହୋ ! ଆଶ୍ଚର୍ଯ୍ୟଂ । ଦେଖ ବଡ଼ କଥା । ତୟୋଃ ରାଧାମାଧବୟୋଃ । ସେ ରାଧା ମାଧବଙ୍କର କାମକଳା ଯୁଦ୍ଧରେ ପ୍ରଥମ ନିବିଡ଼ାଲିଙ୍ଗନରେ ମାତ୍ର ବିଘ୍ନ ହୋଇଲା ଆଉ ଯେତେ ସୁଖ ସମ୍ପାଦକ ଲଳିତାରମ୍ଭଃ ସେ ଉତ୍କଟ ହୋଇ ବିଘ୍ନ ହୋଇ । ପ୍ରଥମେ ନିବିଡ଼ାଲିଙ୍ଗନକୁ ଯେମନ୍ତ ବିଘ୍ନ ହୋଇଲା ତାହା କହିବା ।

---

୧-କ. ମାମପି

୨-କ. ସଭୃକ

ପୁଲକାଙ୍କୁରେଣ ରୋମାଞ୍ଚେ କର ନିମେଷେଣ ବା ଚକ୍ଷୁମିଳନେ ବା ଆନନ୍ଦେ ଚକ୍ଷୁକୁ ବୁଜିବାରେ କର କ୍ରୀଡ଼ାକୁତ[1] ବିଲୋକନେ ରତିକେଳି ଅଭିପ୍ରାୟ ଦର୍ଶନେ । ଅଧର ସୁଧା ପାନେ ଅଧରାମୃତ ପାନ ଚୁମ୍ବନେନ । କଥା ନର୍ମଭିଃ ପରିହାସ କଥାଭିଃ ପରିହାସ କଥା ମାନଙ୍କରେ କର ଆନନ୍ଦାନୁଗମନେ ଉପସ୍ଥିତ ଅନୁପ୍ରବେଶ କର ନବଡାଳଙ୍ଗନଙ୍କୁ ବନ୍ଧ ହୋଇଲ ।

**ଦୋର୍ଭ୍ୟାଂ ସଂଯମିତଃ ପୟୋଧରଭରେଣାପୀଡ଼ିତଃ ପାଣିଜୈ—**
**ରାବଦ୍ଧୋ ଦଶନୈଃ କ୍ଷତାଧରପୁଟଃ ଶ୍ରୋଣୀତଟେନାହତଃ ।**
**ହସ୍ତେନାନମିତଃ କଚେଽଧରସୁଧାସ୍ୟନ୍ଦେନ ସଂମୋହିତଃ**
**କାନ୍ତଃ କାମପି ତୃପ୍ତିମାପ ତଦହୋ କାମସ୍ୟ ବାମାଗତିଃ ॥ ୩ ॥**

ଅହୋ ! ଆଶ୍ଚର୍ଯ୍ୟଂ । କାମସ୍ୟ ବାମାଗତିଃ । କାମର ଗତି ବକ୍ର ଅଟଇ । ସ୍ୱଭାବେ ଦେଖ କାନ୍ତ ଶ୍ରୀକୃଷ୍ଣଃ କାମପି ତୃପ୍ତିପ୍ରାପ୍ତ[2] ଶ୍ରୀକୃଷ୍ଣ ଯେ ରାଧାକାନ୍ତ ସେ ରତିରସେ କିଛି ହିଁ ତୃପ୍ତି ନୋହିଲେ । କେମନ୍ତ ପ୍ରକାରେ ତୃପ୍ତି ନ ପାଇଲେ ତାହା କହିବା । ଦୋର୍ଭ୍ୟାଂ ସଂଯମିତଃ । ଆଦୌ ବାହୁବନ୍ଧନାଲିଙ୍ଗିତଃ । ସ୍ତନଭରେଣାପୀଡ଼ିତାଃ । ପାଣିଜୈ ନଖୈର୍ବା ବଦ୍ଧଃ ବଦାରିତଃ । କ୍ଷତାଧର ପୁଟେ ଦଂଶିତଃ । ଶ୍ରୋଣୀ ତଟେନାହତଃ କଟି ତଟେନ ତାଡ଼ିତଃ । କଚେ କେଶେ ହସ୍ତେନ ନାମିତଃ । କରେ କରଗ୍ରହନକୃତଃ । ଅଧର ସୁଧା ସ୍ୟନ୍ଦେନ ସଂମୋହିତ । ବନ୍ଧାମୃତ । ମଧୁରେଽପି ମୋହଂ ଗତଃ । ଏତେ ପ୍ରକାରେ କରି ନେମ କାନ୍ତ ଶ୍ରୀକୃଷ୍ଣ ନ ସୁଖଂ ଲଭେ ରତି ସୁଖେ ତୃପ୍ତି ନ ପାଇଲେ । ଏଥିନ୍ତ କରି କାମର ବେପରୀତ ଗତି ଅଟଇ ।

**ମାରାଙ୍କେ ରତିକେଳିସଂକୁଳରଣାରମ୍ଭେ ତୟା ସାହସଂ**
**ପ୍ରାୟଂ କାନ୍ତଜୟାୟ କିଞ୍ଚିଦୁପରି ପ୍ରାରମ୍ଭି ଯତ୍ ସଂଭ୍ରମାତ୍ ।**
**ନିଷ୍ପନ୍ଦା ଜଘନସ୍ଥଳୀ ଶିଥିଳତା ଦୋର୍ବଲ୍ଲୀରୁତ୍କଂପିତଂ**
**ବକ୍ଷୋ ମୀଳିତମକ୍ଷି ପୌରୁଷରସଃ ସ୍ତ୍ରୀଣାଂ କୁତଃ ସିଦ୍ଧ୍ୟତି[3] ॥ ୪ ॥**

ମାରାଙ୍କେ ରତିକେଳିସଂକୁଳରଣାରମ୍ଭେ କନ୍ଦର୍ପ ସଂଗ୍ରାମ ଆରମ୍ଭେ ମା ରାଧା କାନ୍ତଜୟାୟ କାନ୍ତ ଯେ ସ୍ୱାମୀତ ଅର୍ଥେ କୃଷ୍ଣସ୍ୟୋ ପରି ପଡ଼ିଲା ଯତ୍ କିଞ୍ଚିଦାରେଭେ । ତଦେବ କମପି ନାଭୂତ୍ । ଯତଃ ପୌରୁଷ ରସଃ ପୁରୁଷାରଃ

---

୧-ଙ. କ୍ରୀଡ଼ାକୃତ
୨-ଙ. ତୃପ୍ତି ପ୍ରାପ୍ନେ ।
୩-ଙ. ସିଦ୍ଧ୍ୟତ ।

ସ୍ତ୍ରୀଣାଂ କୃତଃ ମିଳ୍ୟନ୍ତ । ସାଦରଙ୍କେ କନ୍ଦର୍ପ ସଂଗ୍ରାମ ଆରମ୍ଭେ ସେ ରାଧା ମଧୁର ସାହସ କମନେକର କୃଷ୍ଣଙ୍କୁ ଜଣିବ ଏମନ୍ତ ବଗୁର ବଳସ୍ଥିତ ରତି କର କୃଷ୍ଣର ଉପରେ ଥିବ ସଂଭ୍ରମ ବେଗ ଶକ୍ତ ହୋଇ ଯେବେ ଆରମ୍ଭ କଲେ ସେ ଆରମ୍ଭ କରୁ ଛାଁ ହୋଇଲା । ସେଣୁ କରି ପୁରୁଷ ମାନଙ୍କର ରସ ଯେ ପୁରଷ୍ଟାର ସେ ସ୍ତ୍ରୀ ମାନଙ୍କର ସିଦ୍ଧ ହୋଇଲା । କି କି ଆରମ୍ଭ କଲେ ତାହା କହିବା । ରତି ସଂଗ୍ରାମେ ଜିଣିବ[1] ଏମନ୍ତ ବଗୁର (ରାଧା)[2] କୃଷ୍ଣର ହୃଦୟ ଉପରେ ପଡ଼ି କୃଷ୍ଣଙ୍କୁ ଛଳେ ଚାହିଁ ପୁରୁଷର ପ୍ରାୟେ ହୋଇ ଉପରେ ଥାଇଁ କୃଷ୍ଣଙ୍କୁ ମାଳାର ପ୍ରାୟେ ହୋଇଁ ଏଭିଜିବା ମାତ୍ରକେ ରାଧାର ରସଚ୍ୟୁତ ହୋଇଲା ମାତ୍ରକେ ଜଘନସ୍ଥଳୀ ଯେ ଜାନୁରେଂ କୃଷ୍ଣଙ୍କୁ ଭିଡ଼ିଥିଲେ ସେ ଜାନୁ ଦୁଇ ନିମ୍ପନ୍ଦ ନିଶ୍ଚଳ ହୋଇଲା । ଶିଥିଳତା ହୋଇଛି ଦୃଢ଼ହସ୍ତ ଉଚ୍ଛ୍ୱାସ ହୋଇଲା । ଉତ୍କମ୍ପିତଂ[3] ବକ୍ଷ । ହୃଦୟ କମ୍ପିଲା । ମିଳିତମକ୍ଷି । ଦୁଇଚକ୍ଷୁ ବୁଜିଲେ ମିଳିତ ହୋଇଲା । ଏଣୁ କରି ସ୍ତ୍ରୀ ଲୋକର ଜୟ କରିବାର ଆରମ୍ଭ କାହିଁ ସିଦ୍ଧ ହୋଇବ ।

**ତସ୍ୟାଃ ପାଟଳପାଣିଜାଙ୍କିତମୁରୋ ନିଦ୍ରାକଷାୟେ ଦୃଶୌ**
**ନିର୍ଦ୍ଧୌତୋଽଧରଶୋଣିମା ବିଲୁଳିତାଃ ସ୍ରସ୍ତସ୍ରଜୋ ମୂର୍ଦ୍ଧଜାଃ ।**
**କାଞ୍ଚୀଦାମଦରଶ୍ଳଥାଞ୍ଚଳମିତି ପ୍ରାତର୍ନିଖାତୈର୍ଦ୍ଦୃଶୋ--**
**ରେଭିଃ କାମଶରୈସ୍ତଦଦ୍ଭୁତମଭୂତ୍ ପତ୍ୟୁର୍ମନଃ କୀଳିତମ୍ ॥ ୫ ॥**

ପୁଣି ଦେଖ ଆଶ୍ଚର୍ଯ୍ୟ—ରାଧିକାର ପତି ଯେ କୃଷ୍ଣ ତାହାଙ୍କର ମନଃ କୀଳିତଂ । ଅତି ମୋହିତଂ ଅଭୂତ୍ । ମନ ଅତ୍ୟନ୍ତ ମୋହିତ ହୋଇଲେ । କଥଂ କେମନ୍ତେ ମନ ମୋହିତ ହୋଇଲେ ତାହା କହିବା । ତସ୍ୟାଃ ରାଧିକାୟାଃ ନିଖାତୈଃ କାମ-ଶରୈଃ ପିତୈଃ । କାମଚିହ୍ନ ମାନଙ୍କରେ କରି । ପ୍ରାତଃକାଳେ ରାଧାର ଦେହକୁ ଚାହିଁକରି ଶ୍ରୀକୃଷ୍ଣର ମନ ମୋହ ମାନିଲା । ସେ ରାଧାର ଦେହ କେମନ୍ତ ତାହା କହିବା । ଆଗେ ରାଧାର ହୃଦୟଂ । ପାଟଳୀ ପାଣିଜାଙ୍କିତଂ ଲୋହିତ ନଖ ବ୍ରଣ-ଚିହ୍ନିତଂ । ନଖ କ୍ଷତକର ଲୋହିତ ବର୍ଣ୍ଣ ହୋଇଛି । ଦୃଶୋଃ ନୟନେ ନିଦ୍ରା କଷାୟେ । ଉନ୍ନିଦ୍ରେ କରି କଷାୟ[4] ହୋଇଛି ନୟନ । ନିର୍ଦ୍ଧୌତାଧର ଶୋଣିମା[5] ଚୁମ୍ବନେ କରି ନିର୍ଦ୍ଧୌତ । ଧୋଇଁ ହୋଇ ଗଲା ଓଷ୍ଠରଙ୍ଗ । ସ୍ରସ୍ତସ୍ରଜୋ ମୂର୍ଦ୍ଧଜା ।

---

୧-ଖ. ଜଣିବ
୨-ଖ.ରେ ନାହିଁ
୩-କ, ଉତ୍କଣ୍ଠିତଂ
୪-ଖ.ରେ ଅଧିକ ହୋଇଂ ଲୋହିତ ବର୍ଣ୍ଣ ।
୫-କ. ଶୋଣିତା

ଯେ କେଳିବଶ ସେ ଶ୍ଳଥ ହୋଇଁ ଫିଟିକରି କୁସୁମମାଳା ପଡ଼ୁଛି । କାଞ୍ଚିଦାମଦର-ଶ୍ଳଥାଞ୍ଚଳଂ । କାଞ୍ଚିଦାମ ଯେ କଟିମେଖଳା ସେ ଅଳ୍ପ ଊଶ୍ଵାସ ହୋଇ ଅଞ୍ଚଳ ଫିଟିଛି । ଏମନ୍ତ ଚିହ୍ନମାନ ପ୍ରାତଃକାଳେ ଦେଖି କୃଷ୍ଣର ମନ ମୋହିତ ହୋଇଲା ।

## ଗୀତ

(ରାମକେଶ୍ବରେଣ ଗୀୟତେ)

**କୁରୁ ଯଦୁନନ୍ଦନ ଚନ୍ଦନଶିଶିରତରେଣ କରେଣ ପୟୋଧରେ ।**
**ମୃଗମଦପତ୍ରକମତ୍ର ମନୋଭବମଙ୍ଗଳକଳଶସହୋଦରେ ।**
**ନିଜଗାଦ ସା ଯଦୁନନ୍ଦନେ କ୍ରୀଡତି ହୃଦୟାନନ୍ଦନେ ॥ ୧ ॥**

( ଧ୍ରୁବପଦମିଦମ୍ )

ସା ରାଧା ଯଦୁ ନନ୍ଦନେ ଶ୍ରୀକୃଷ୍ଣେ ନିଜଗାଦ । ଶ୍ରୀକୃଷ୍ଣଙ୍କୁ ରାଧା ପ୍ରାତକାଳେ ଆପଣା ଦେହରେ ରତିଭୂଷଣ ଚିହ୍ନମାନ ଦେଖି ଏମନ୍ତ ବୋଲୁଛନ୍ତି । ଯଦୁନନ୍ଦନେ କିଂ-ଭୂତେ । ହେ ଯଦୁନନ୍ଦନ କେମନ୍ତ ଅଟନ୍ତି । କ୍ରୀଡତି ହୃଦୟା ନନ୍ଦନେ । ସମସ୍ତ ପ୍ରାଣୀମାନଙ୍କର ହୃଦୟରେ ଆନନ୍ଦ ବ୍ରହ୍ମ ସ୍ୱରୂପେଣ କ୍ରୀଡା କରୁଛନ୍ତି । ରାଧା ବୋଲୁଛନ୍ତି—ହେ ଯଦୁନନ୍ଦନେ ! ଯଦୁବଂଶଙ୍କୁ ଆନନ୍ଦକର ଯେ ତୁମ୍ଭେ ତୁମ୍ଭେ ଏବେ ମୋହର ମନରୁ ଲୋକଲଜ୍ୟା ଭୟ ନାଶକରି ଆନନ୍ଦ କର । ଆଗେ ଶିଶିର ତରେଣ କରେଣ ଶିଶିରରୁ ଶୀତଳ ଯେ ତୁମ୍ଭର ହସ୍ତ ସେ ହସ୍ତେ କରି ମମ ପୟୋଧରେ ସ୍ତନ ଦୁଇ ଉପରେ ମୃଗମଦ ଯେ କସ୍ତୁରୀ ତାହା ପତ୍ରାବଳୀ କୁରୁ । ପତ୍ରାବଳୀ ଲେଖନ କର । ପୟୋଧର ଦୁଇ କେମନ୍ତ ଅଟଇ । ମଙ୍ଗଳ କଳଶ ସହୋଦରେ । କାମଦେବର ଯାତ୍ରା ମଙ୍ଗଳାର୍ଥକୁ-ସହୋଦରେ ଦୁଇ ଭାଇର ପ୍ରାୟେ ହୋଇ ମଙ୍ଗଳାର୍ଥେ ସ୍ଥାପିତ ଦୁଇ ପୂର୍ଣ୍ଣକୁମ୍ଭର ପ୍ରାୟେ ପୂଜିତ ଅଟଇ ।

**ଅଳିକୁଳଗଞ୍ଜନମଞ୍ଜନକଂ ରତିନାୟକଶାୟକମୋଚନେ ।**
**ତ୍ୱଦଧରଚୁମ୍ବନଲମ୍ବିତକଜ୍ଜଳମୁଜ୍ଜ୍ୱଳୟ ପ୍ରିୟଲୋଚନେ ॥ ୨ ॥**

ରାଧା ବୋଲୁଛନ୍ତି—ହେ ପ୍ରିୟ, ମମ ଲୋଚନେ ମୋହର ନୟନରେ କଜ୍ଜଳ ଉଜ୍ଜ୍ୱଳୟ । କଜ୍ଜଳ ଦେଇ ଉଜ୍ଜ୍ୱଳ କର । ସେ କଜ୍ଜଳ କେମନ୍ତ ଅଟଇ । ଅଳିକୁଳ ଗଞ୍ଜନ ମଞ୍ଜନକଂ । ଅଳିକୁଳ ଯେ ଭ୍ରମରମାନେ ତାଙ୍କୁ ଗଞ୍ଜନ ମାଳବର୍ଣ୍ଣ ଗୁଣେ କରି ଗଞ୍ଜାଇ ଏମନ୍ତ ଯେ ଅଞ୍ଜନ ସେ ତ୍ୱଦଧର ଚୁମ୍ବନେ ତୁମ୍ଭର ଅଧର ଚୁମ୍ବନକାଳେ ଲମ୍ବିତଂ । ପୋଛି ହୋଇଁ ଯାଇଛି । ଏବେ ତୁମ୍ଭେ ସେ କଜ୍ଜଳ ଦେଇ ମୋହର ଲୋଚନ ଦୁଇ ଉଜ୍ଜ୍ୱଳ କରିଦିଅ । ପୁଣି ସେ କଜ୍ଜଳ କେମନ୍ତ ଅଟଇ । ରତିନାୟକ ଯେ କାମ ଶାୟକ ଯେ ବାଣ ତାହାର ବାନ୍ଧିବାର ଧନୁର ରୂପକୁ ନିନ୍ଦା କରଇ ସୁନ୍ଦର ଗୁଣେ ।

**ନୟନକୁରଙ୍ଗତରଙ୍ଗବିକାଶନିରାଶକରେ ଶ୍ରୁତିମଣ୍ଡଳେ ।**
**ମନସିଜପାଶବିଳାସଧରେ ଶୁଭବେଶ ନିବେଶୟ କୁଣ୍ଡଳେ ॥ ୩ ॥**

ହେ ଶୁଭବେଶ, ପରମ ମଙ୍ଗଳ ମମ ଶ୍ରୁତିମଣ୍ଡଳେ କର୍ଣ୍ଣଦ୍ୱୟେ କୁଣ୍ଡଳେ କର୍ଣ୍ଣାଳଂକୃତେ ନିବେଶୟ । ମୋହର କର୍ଣ୍ଣରେ କୁଣ୍ଡଳ ଦିଅ । ସେ କୁଣ୍ଡଳ କେମନ୍ତ ଅଟଇ । କୁରଙ୍ଗ ଯେ ମୃଗ ତାହାର ତରଙ୍ଗ ଚଞ୍ଚଳ ତାହାର ନୟନ ତାହାକୁ ନିରାଶ କରଇ । ଅଧିକ ଶୋଭଇ । ସେ କର୍ଣ୍ଣ ମୋହର କେମନ୍ତ ଅଟଇ । ମନସିଜ ଯେ କନ୍ଦର୍ପ ତାହାର ପାଶବିଳାସ ଧରନ୍ତି । କନ୍ଦର୍ପ ପାଶ, ଅଟଇ ଯେ । ସେ ପାଶ ଯେସନ କନ୍ଦର୍ପ ସଂସାରକୁ ଜିଣିଲା ।

**ଭ୍ରମରଚୟଂ ରଚୟନ୍ତମୁପରି ରୁଚିରଂ ସୁଚିରଂ ମମ ସମ୍ମୁଖେ ।**
**ଜିତକମଳେ ବିମଳେ ପରିକର୍ମୟ ନର୍ମଜନକମଳକଂ ମୁଖେ ॥ ୪ ॥**

ହେ ପ୍ରିୟ ! ମମ ସମ୍ମୁଖେ ମୋହର ସମ୍ମୁଖ ଯେ ଲଲାଟ ତହିଁର ଉପରେ ଭ୍ରମରଚୟ ଭ୍ରମରମାନଙ୍କର ସଂଘ ପ୍ରାୟେ ହୋଇ ରୁଚିରଂ ସୁନ୍ଦର ହୋଇଁ ସୁଚିରଂ ବହୁକାଳଂ ନିର୍ମିତଂ ନର୍ମଜନକଂ ଲୀଳା ସଂପତ୍ତି ହେତୁଙ୍କୁ ଜନ୍ମ କରାଇବାକୁ କାରଣ ଅଟଇ । ଯେ ଅଳକା ଷଦ୍‌ କୁନ୍ତଳ ସଂଘସ୍ଥିତଂ । ଅଳକାବେଣୀ ପରି କର୍ମୟ । ସ୍ୱାରମ୍ଭ । ସଂସ୍କାର କରି ମାର୍ଜନା କର । ତେବେ ମୋହର ମୁଖ ଯେମନ୍ତ ଦିଶିବ ତାହା ଶୁଣ । ଜିତକମଳେ ପଦ୍ମକୁ ଜିଣିଛ ସୁନ୍ଦର ଗୁଣେ ବିମଳେ ଚନ୍ଦ୍ରମଣ୍ଡଳ ପ୍ରାୟ ହୋଇ ।

**ମୃଗମଦରସବଳିତଂ ଲଳିତଂ କୁରୁ ତିଳକମଳିକରଜନୀକରେ**
**ବିହିତକଳଂକକଳଂ କମଳାନନ ବିଶ୍ରମିତଶ୍ରମଶୀକରେ ॥ ୫ ॥**

ହେ କମଳାନନ, ସ୍ମିତଂ ମନ୍ଦବକ୍ର ପ୍ରସନ୍ନ ମୁଖ ଯହିରେ ! ମମ ଅଳକ ରଜନୀକରରେ ଲଲାଟଚନ୍ଦ୍ରେ । ହେ ପଦ୍ମଲୋଚନେ ମୋହର କୁଟିଳ କୁନ୍ତଳ । ଅଳକ-ସଂଘ ମଣ୍ଡିତ ଯେ ଲଲାଟଚନ୍ଦ୍ର । ଦେଖ ସେ ଲଲାଟ କେମନ୍ତ ଦିଶୁଛି । ବିଶ୍ରମିତ ଶ୍ରମ ଶୀକରେ । ତୁମ୍ଭ ସଙ୍ଗେ ରତିଶ୍ରମେ କରି ଶ୍ରମ ଜଳ ସ୍ୱେଦକଣା ମାନେ ସେ କ୍ଷୁଦ୍ର କୁନ୍ତଳା ବାଳ ମାନଙ୍କର ଅଗ୍ରେ କ୍ଷୁଦ୍ର ମୋତି ମାନଙ୍କର ପ୍ରାୟେ ହୋଇଁ ଶୋଭା କରୁଛି । ଏମନ୍ତ ମୋହର ଲଲାଟେ ତୁମ୍ଭେ ମୃଗମଦ ଯେ କସ୍ତୁରୀ ତାହା ଲଳିତ ସୁନ୍ଦର ମନୋହର କରି ତିଳକ କର । ସେ ତିଳକ ମୋହର ଲଲାଟ ଚନ୍ଦ୍ରକୁ ବିହିତ କଳଙ୍କ କରେବ । ଚନ୍ଦ୍ରରେ କଳଙ୍କ ଯେମନ୍ତ ଦିଶଇ ସେହିମତ ଶୋଭା ପାଇବ ।

**ମମ ରୁଚିରେ ଚିକୁରେ କୁରୁ ମାନଦ ! ମାନସଜଧ୍ୱଜଚାମରେ ।**
**ରତିଗଳିତେ ଲଳିତେ କୁସୁମାନି ଶିଖଣ୍ଡିଶିଖଣ୍ଡକଡ଼ାମରେ ॥ ୭ ॥**

ହେ ମାନଦ ! ତୁମ୍ଭର ସେବକ ଯେମାନେ ସେମାନଙ୍କୁ ତୁମ୍ଭେ ମାନ ଦିଅ । ଜଗତ ଯାକେ ତାହାଙ୍କୁ ପୂଜା କରନ୍ତି । ଆପଣାର ସମକରି । ଏମନ୍ତ ତୁମ୍ଭର ମହିମା । ତୁମ୍ଭେ ଏବେ ଏମନ୍ତ କର । ମମ ରୁଚିରେ ଚିକୁରେ । ଦେଖ ମୋହର ସୁନ୍ଦର ଶୋଭାବନ୍ତ ଯେ ଚିକୁର କବରୀ ଭାର ଏଥି ତୁମ୍ଭେ ସୁଗନ୍ଧ କୁସୁମ ମାଳା ଦିଅ । ସଂସ୍କାର କରି ବେଗ'କର । ଯେମନ୍ତ ଥିଲା ସେହିମତ କର । ସେ କବରୀ କେଶ ମୋହର କେମନ୍ତ ଅଟଇ । ମାନସ ଧ୍ୱଜ ଚାମରେ । ମାନସ ଧ୍ୱଜ ଯେ କନ୍ଦର୍ପ ତାହାର ରଥ ଉପରେ ଥାଇ ଯେ ଚାମର ତାହାକୁ ନିନ୍ଦା କରୁଛି ସୁନ୍ଦର ମନେ । ଦେଖ ତୁମ୍ଭର ରତିକାଳେଂ ଗଳିତ ହୋଇ ଭାଜି ପଡୁଛି । ତେବେହେଁ ଜଗତର ମନକୁ ମୋହୁଛି । କି ଉପମା କରିବା । ଶିଖଣ୍ଡି ଯେ ମୟୂର ପୁଚ୍ଛ ତହୁଁ ଅଧିକ ଶୋଭା କରୁଛି । ଏଣୁ କରି ଡାମର ତାହାର ନାମ । ଡାମର ଯେ ଖୋଷା ଇତ୍ୟର୍ଥଃ ।

**ସରସଘନେ[୧] ଜଘନେ ମମ ଶମ୍ବରଦାରଣବାରଣକନ୍ଦରେ ।**
**ମଣିରସନାବସନାଭରଣାନି ଶୁଭାଶୟ ବାସୟ ସୁନ୍ଦରେ ॥ ୭ ॥**

ହେ ଶୁଭାଶୟ, ଶୁଭ ନିର୍ମଳ ଅଟଇ ଯେ ତୁମ୍ଭର ଅନ୍ତଃକରଣ । କାମାଦି କରିଛ । ଅଶୁଭ ତହିଁ ନାହିଁ । ଏମନ୍ତ ମହିମା ତୁମ୍ଭର ହେ ଯଦୁ ନନ୍ଦନ ! ଆନନ୍ଦ ମୂର୍ତ୍ତିପ୍ରେ, ତୁମ୍ଭେ ଏବେଂ ଏମନ୍ତ କର । ମମ ସରସ ଘନେ ଜଘନେ । ମୋହର ଶୃଙ୍ଗାର ରସଯୋଗ୍ୟ ନିବିଡ଼ ଯେ ଦୁଇ ଜଘନ ସେ ଜଘନ ଉପରେ ମଣିମଣ୍ଡିତ ଯେ କଟି-ମେଖଳା ବସନ ଯେ ଦିବ୍ୟବସ୍ତ୍ର ଆଭରଣ ଯେ ନାନା ଅଳଙ୍କାର । ଏମାନେ ଯେ ଯାହା ସ୍ଥାନରେ ବାସୟ ନିଯୋଜୟ । ନିଯୁକ୍ତ କରି ଦିଅ । ସେ ଦୁଇ ଜଘନ ମୋହର କେମନ୍ତ ଅଟଇ । ଶମ୍ବର ଦାରଣ ବାରଣ । ଶମ୍ବର ନାମେ ଦୈତ୍ୟକୁ ଯେ ଦାରଣ ଦଳନ କଲା । ଦଳିଲା ନାଶ କଲା ଯେ କନ୍ଦର୍ପ ସେହି ସେ ବାରଣ ହସ୍ତୀ ହୋଇଲା । ସେ କନ୍ଦର୍ପ ହସ୍ତୀର କନ୍ଦରେ କନ୍ଦର ଯେ ପର୍ବତ ଗୋଟ ତହିଁରେ ଯେମନ୍ତ ହସ୍ତୀ ଥାଇ ସେହିମନ୍ତ ହୋଇଁ କନ୍ଦର୍ପ ମୋହର ଦୁଇ ଜଘନର ମଧ୍ୟେ ଅଛି । ଏ ଦୁଇ ଜଘ ସ୍ୱମ୍ଭେ କରି କାମକୁ ବନ୍ଦୀ କରିଛି । ଏମନ୍ତ ଜଘନରେଂ କଟି ମେଖଳାଦି ଅଳଙ୍କାର ଦିଅ ।

---

୧-କ.ଖ. ଶରସନ ।

**ଶ୍ରୀଜୟଦେବବଚସି ଜୟଦେଽସଦୟଂ ହୃଦୟଂ କୁରୁ ମଣ୍ଡନେ ।**
**ହରିଚରଣସ୍ମରଣାମୃତକୃତକଳିକଲୁଷଜ୍ୱରଖଣ୍ଡନେ ॥ ୮ ॥**

ହେ ସଦୟ ବାସୁଦେବ, ତୁଂ ଜୟ ସର୍ବୋତ୍କୃଷ୍ଟ ଭବ । ଉତ୍କୃଷ୍ଟ-ତୟା ଜଗତ ପରିପାଳକୋ ଭବ । ହେ ପ୍ରଭୁ (ଜଗନ୍ନାଥ ତୁମ୍ଭେ)[୧] ଜଗତକୁ ପରିପାଳନ କର । ତୁମ୍ଭକୁ କି ଉପମା କରିବା । ତ୍ୱାଂ ସ୍ତୌମି । ତୁମ୍ଭଙ୍କୁ ମୁଁ ସ୍ତୁତି କରୁଛି । କହୁଛି ଶ୍ରୀ ଜୟଦେବ ମୁଁ । ମୋହର ଏ ବଚନ । ଏ ତୁମ୍ଭର ଗୁଣମାନଙ୍କର ବର୍ଣ୍ଣନା । ଅତିଶୟ ସାମର୍ଥ୍ୟ ଅଛି । ଏ ଗୀତ ଯେ ଭକ୍ତଜନମାନେ ଗାନ କରିବେ ସେମାନଙ୍କୁ ତୁମ୍ଭେ ଦୟା[୨] କରିବ । ଏ ଗୀତ କେମନ୍ତ ଅଛି । ହରି ପାଦ ସ୍ମରଣାମୃତକୁ କରନ୍ତି । କଳିଯୁଗାଚରଣ ଯେ କଲୁଷ ମହାପାତକ ତାହା ନାଶ କରନ୍ତି ।

**ଶ୍ଳୋକ**

**ରଚୟ କୁଚୟୋଃ ପତ୍ରଂ ଚିତ୍ରଂ କୁରୁଷ୍ୱ କପୋଳୟୋ—**
**ର୍ଘଟୟ ଜଘନେ କାଞ୍ଚୀମଞ୍ଚ ସ୍ରଜା କବରୀଭରମ୍ ।**
**କଳୟ ବଳୟଶ୍ରେଣୀଂ ପାଣୌ ପଦେ କୁରୁ ନୂପୁର—**
**ବିତି ନିଗଦିତଃ ପ୍ରୀତଃ ପୀତାମ୍ବରୋଽପି ତଥାକରୋତ୍ ॥ ୯ ॥**

ଅଥାନନ୍ତରେ ପ୍ରାତଃକାଳେ ପରମ ସନ୍ତୋଷ ହୋଇ ପୀତାମ୍ବରଃ ଶ୍ରୀକୃଷ୍ଣଃ ରାଧୟା ଇତି ନିଗଦିତଃ । ରାଧା ଯେମନ୍ତ ବୋଇଲେ ସେ କୃଷ୍ଣ ତଥା ଅକରୋତ୍ । ସେହିମତି କଲେ । ରାଧା ବୋଇଲେ ହେ କୃଷ୍ଣ, ମୋହର ଦୁଇ କୁଚରେ ପତ୍ରଂ ରଚୟ । କସ୍ତୁରୀ ପତ୍ରାବଳୀ କର । ମମ କପୋଳଯୋର୍ଶ୍ଚିତ୍ରଂ କୁରୁଷ୍ୱ । ମୋହର ଲଲାଟରେ ଚନ୍ଦନ ତିଳକ କର । ଜଘନେ କାଞ୍ଚୀଂ ଘଟୟ । ଜଘନ ଉପରେ ରତ୍ନ ମେଖଳା ଦିଅ । ମଞ୍ଚ ସ୍ରଜା କବରୀ ଭରଂ ପୁଷ୍ପମାନ ଦେଇ ମୁଣ୍ଡେ କବରୀ ବେଣି କର । ସେ କବରୀ ତୁମ୍ଭ ହସ୍ତରେ ପୂଜା ପାଉ । ବଳୟ ଶ୍ରେଣୀ ପାଣୌ କଳୟ । ମୋହର ହସ୍ତରେ ବଳୟମାନ ଦିଅ । ପଦେ କୁରୁ ନୂପୁର । ପାଦେ ଦୁଇ ନୂପୁର ଦିଅ । ଏମନ୍ତ କରି ରାଧା ଯେମନ୍ତ ବୋଇଲେ ସେ ଶ୍ରୀକୃଷ୍ଣ ସେହିମତି[୩] ଯଥାସ୍ଥାନେ ନିଯୋଜ୍ୟ ରାଧାର ଦେହରେ ଯଥାଯୋଗ୍ୟ ସ୍ଥାନରେ ଅଳଂକରଣ କଲେ ।

**ଇତି ଶ୍ରୀଗୀତଗୋବିନ୍ଦମହାକାବ୍ୟେ କବିରାଜଜୟଦେବକୃତୌ ସ୍ୱାଧୀନଭର୍ତ୍ତୃକାବର୍ଣ୍ଣନେ ସୁପ୍ରୀତପୀତାମ୍ବରୋ ନାମ ଦ୍ୱାଦଶଃ ସର୍ଗଃ ।**

---

୧-ଖ. ତୁମ୍ଭେ ଜଗନ୍ନାଥ
୨ ଖ. ସଦୟ
୩-ଖ. ଯଥା

**ଯଦ୍ ଗାନ୍ଧର୍ବକଳାସୁ କୌଶଳମନୁଧ୍ୟାନଞ୍ଚ ଯଦ୍‌ବୈଷ୍ଣବଂ**
**ଯତ୍‌ଶୃଙ୍ଗାରବିବେକତତ୍ତ୍ୱମପି ଯତ୍ କାବ୍ୟେଷୁ ଲୀଳାୟିତମ୍ ।**
**ତତ୍ସର୍ବଂ ଜୟଦେବପଣ୍ଡିତକବେଃ କୃଷ୍ଣୈକତାନାତ୍ମନଃ**
**ସାନନ୍ଦାଃ ପରିଶୋଧୟନ୍ତୁ ସୁଧିୟଃ ଶ୍ରୀଗୀତଗୋବିନ୍ଦତଃ ॥**

ଜୟଦେବ କବି ବୋଲୁଛନ୍ତି— ହେ ବୈଷ୍ଣବଜନମାନେ ଶୁଣ । ତୁମ୍ଭେମାନେ ଯେବେ ଗନ୍ଧର୍ବ କଳ୍ପ ଗୀତଗାନ କଳାରେ କରି କୁଶଳ ହୋଇବାକୁ ବିଗୁଣିବ ତ ଏ ଗୀତଗୋବିନ୍ଦରେ ଅଭ୍ୟାସ କରି ପାଇବଟି । ନତୁ ଯେବେ ନିରନ୍ତରେ ଧ୍ୟାନ ଯୋଗେ ଭଜିବ ତ ହେଉଁବ ଏଥେଁ ପାଇବ । ଯେବେ ବୈଷ୍ଣବ ହୋଇବ ତ ଏଥେଁ ପାଇବ । ଯେବେ ଶୃଙ୍ଗାର ରସ ଜାଣିବ ତ ଏ ଅଭ୍ୟାସ କର । ଯେବେ କାବ୍ୟରସ ଜାଣି ସ୍ୱଳୀଳା କରିବ ତ ଏଥେଂ ମନ । ଏମନ୍ତ ବାଞ୍ଛା ଜୟଦେବ ଯେ ପଣ୍ଡିତ କବି ତାହାଙ୍କର ବଚନରେ ଅଛି । ସେ ଜୟଦେବ କୃଷ୍ଣର ଏକ ଆତ୍ମା ଅଟନ୍ତି । ତାହାଙ୍କର ଗୀତରେ ସୁବୁଦ୍ଧି ଯେ ଲୋକମାନେ ସେ ସାନନ୍ଦ ହୋଇ ପରିଶୋଧନା କରି ପାରିବେ ।

**ସାଧ୍ୱୀ ମାଧ୍ୱୀକଚିନ୍ତା ନ ଭବତି ଭବତଃ ଶର୍କରେ କର୍କଶାସି**
**ଦ୍ରାକ୍ଷେ ଦ୍ରକ୍ଷ୍ୟନ୍ତି କେ ତ୍ୱାମମୃତମୃତମସି କ୍ଷୀରନୀରଂ ରସସ୍ତେ ।**
**ମାକନ୍ଦ କ୍ରନ୍ଦ କାନ୍ତାଧରଧରଣୀତଳଂ ଗଚ୍ଛ ଯଚ୍ଛନ୍ତି ଯାବଦ୍—**
**ଭାବଂ ଶୃଙ୍ଗାରସାରସ୍ୱତମିହ ଜୟଦେବସ୍ୟ ବିଷ୍ୱଗ୍‌ବଚାଂସି ॥**

ଜୟଦେବ ବୋଲୁଛନ୍ତି—ହେ ସାଧ୍ୱୀ ମାଧ୍ୱୀକମଧୁ, ତୁ ମଧୁରତା ଛାଡ଼ । ତୋହର ମଧୁ ଗୁଣ ଗଲା । ହେ ଶର୍କରେ ହେ ସାକର ତୁ କର୍କଶି । ତୁ ବାଲିଗୋଡ଼ି ହୋଇଲୁ । ହେ ଦ୍ରାକ୍ଷେ ଦ୍ରାକ୍ଷାଫଳଂ ତ୍ୱାଂ ଅନ୍ୟକେ କେ ଦ୍ରକ୍ଷ୍ୟନ୍ତି । ତୋତେ ନିକଟେ ଥିଲେ ହେଁ କେ ଦେଖୁଛନ୍ତି । ହେ ଅମୃତ ତ୍ୱଂ ମୃତମସି । ହେ ଅମୃତ ତୁ ମଲୁ । ହେ କ୍ଷୀର ତ୍ୱଂ ନୀରମସି । ହେ ଦୁଗ୍ଧ ତୁ ପାଣିରସ ହୋଇଲୁ । ହେ ମାକନ୍ଦ ହେ ପାଚିଲା ଆମ୍ର ତ୍ୱଂ କ୍ରନ୍ଦ ତୁ କାନ୍ଦ । ହେ କାନ୍ତାଧର, ଦିବ୍ୟ ସ୍ତ୍ରୀ ବିମ୍ବୋଷ୍ଠ ତୁ ଧରଣୀ ତଳଂ ଗଚ୍ଛ । ତୁ ପାତାଳକୁ ଯା । ଯାବତ୍ ଭାବ ଶୃଙ୍ଗାର ସାରସ୍ୱତ ହୋଇ ଜୟଦେବ ସମସ୍ତ ବଚନମୟ ଯେ ଗୀତଗୋବିନ୍ଦ ହୋଇଲା ତାବତ୍ ତୁମ୍ଭର କି ପୁରସ୍କାର !

ଭୋଜଦେବସ୍ୟ ରାମଦେବାତ୍ମଜଶ୍ରୀଜୟଦେବସ୍ୟ ଗୀତଗୋବିନ୍ଦସ୍ୟ
ଗୀତଗୋବିନ୍ଦକବିତ୍ୱମସ୍ତୁ ।

ଶାକେ ବାଣେ ମହୀମୃଗେନ୍ଦ୍ରେ ମାସେ ଶୀତେ ଭାନୁତିଥୀନ୍ଦୁଗ୍ରସ୍ତେ ।
ଟୀକାକୃତଂ ଗୀତଗୋବିନ୍ଦଗୀତଂ ଜଗନ୍ନିବାସେନ ବିଲେଖିତଂ ନ୍ୱ ॥

ଇତି ଶ୍ରୀଜଗନ୍ନାଥମିଶ୍ରବିରଚିତା ଶ୍ରୀଗୀତଗୋବିନ୍ଦଟୀକା ସମାପ୍ତା ।

ମାୟାବିଭୂତବିଗ୍ରହେଣ ହରିଣା ବୃନ୍ଦାବନେ ରାଧୟା
ଯା ଲୀଳା ପରିଭାବିତାସିତନଦୀକୁଞ୍ଜେଽନ୍ତରମ୍ୟେ ତତଃ ।
ଧାତାନିର୍ମିତଦୁଃଖସିନ୍ଧୁସକଳସ୍ୟୋଦ୍ଧାରଣାର୍ଥଂ ଝଟିତ୍
ଭୂୟାତ୍ ସା କମଳାବନାଶୁ ମଳିନାଂ ସଂସାରିଣାଂ ଶ୍ରେୟସେ ॥

---